# ସମ୍ବର୍ଦ୍ଧିତ ଶିଳ୍ପୀ ପରିଚୟ

( Life Sketch of the
Awarded Artistes )

ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ
ଭୁବନେଶ୍ୱର

# ସମ୍ବର୍ଦ୍ଧିତ ଶିଳ୍ପୀ ପରିଚୟ

( **Life Sketch of the Awarded Artistes** )

ସମ୍ପାଦନା : ଡାଃ ଶୈଳେଶ୍ୱର ନନ୍ଦ

ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ
ଭୁବନେଶ୍ୱର

# ସମ୍ବର୍ଦ୍ଧିତ ଶିଳ୍ପୀ ପରିଚୟ

ପ୍ରକାଶକ :
**ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ**
ଭୁବନେଶ୍ୱର

ସମ୍ପାଦନା :
**ଡା. ଶୈଳେଶ୍ୱର ନନ୍ଦ**
ସମ୍ପାଦକ : ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ



ମୁଦ୍ରଣ : ସଂସାର ପ୍ରେସ, କଟକ-୯

ପ୍ରଥମ ପ୍ରକାଶ : ୧୯୯୨

**ମୂଲ୍ୟ : ଟ ୪୦-୦୦**

*Life Sketch of the*
*Awarded Artistes*

***Published by*** :
Orissa Sangeeta Nataka Akademi
Bhubaneswar

***Edited by*** :
Dr. Saileswar Nanda
Secretary, Orissa Sangeeta Nataka Akademi



***Printer*** :
Sansar Press, Cuttack-9

1st Edition : 1992

**Price : Rs. 40-00**



## ଶୁଭେଚ୍ଛା ବାର୍ତ୍ତା

ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ପ୍ରକାଶ ପାଉଥିବା "ସମ୍ବର୍ଦ୍ଧିତ ଶିଳ୍ପୀ ପରିଚୟ" ପୁସ୍ତକ ପାଇଁ ମୋର ଶୁଭେଚ୍ଛା ଜଣାଉଛି । ଓଡ଼ିଶାର ପୁରସ୍କାର ଓ ସମ୍ମାନପ୍ରାପ୍ତ ପ୍ରବୀଣ କଳାକାରମାନଙ୍କ ସାଧନାର ପରିଚୟ ସଂକ୍ଷିପ୍ତ ହେଲେ ମଧ୍ୟ ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ଲିପିବଦ୍ଧ କରାଯାଉଥିବା ପଦକ୍ଷେପ ପ୍ରଶଂସନୀୟ ।

# ଅଭିମତ

ସଙ୍ଗୀତ, ନାଟକ, ନୃତ୍ୟକଳା ଓ ସ୍ଥାପତ୍ୟ ପାଇଁ ଓଡ଼ିଶା ବିଶ୍ୱବନ୍ଦିତ । ସ୍ରଷ୍ଟାର ଅପୂର୍ବ ସର୍ଜନାରେ କଳା ହୁଏ ମହନୀୟ । ସ୍ରଷ୍ଟା ଓ ତାର ସୃଷ୍ଟିକୁ ସମ୍ବର୍ଦ୍ଧିତ କରିବା ଜାତିର କର୍ତ୍ତବ୍ୟ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପ୍ରତିବର୍ଷ ସଙ୍ଗୀତ, ନାଟକ, ନୃତ୍ୟ, ଲୋକସଙ୍ଗୀତ ଓ ଲୋକନୃତ୍ୟ ଆଦି କ୍ଷେତ୍ରରେ କୃତୀ କଳାକାରମାନଙ୍କୁ ସମ୍ବର୍ଦ୍ଧିତ କରି-ଆସୁଅଛି । କିନ୍ତୁ ସେହି ମହାନ୍ କଳାକାରମାନଙ୍କର ଶିଳ୍ପସାଧନା ଦିଗରେ ରହିଥିବା ଅଦମ୍ୟ ଉଦ୍ୟମର ଇତିହାସ ଲୋକଲୋଚନର ଅଗୋଚରରେ ଧୀରେ ଧୀରେ ହଜିଯାଉଛି । ଏକାଡେମୀ ଏ ବର୍ଷ ସେହି ସମ୍ବର୍ଦ୍ଧିତ କଳାକାରମାନଙ୍କର ସଂକ୍ଷିପ୍ତ ପରିଚୟ ସନ୍ନିବେଶିତ କରି ଏହି ପୁସ୍ତକ ସଂକଳନ କରିଅଛି । ଏହା ନିଶ୍ଚିତ ଭାବେ ଏକ ସାଧୁ ଉଦ୍ୟମ । ପ୍ରତ୍ୟେକ ସମ୍ବର୍ଦ୍ଧିତ କଳାକାରଙ୍କର କୃତି ଓ ଜୀବନୀ ଲେଖି ବସିଲେ ଗୋଟିଏ ଗୋଟିଏ ଗ୍ରନ୍ଥ ହେବ । କିନ୍ତୁ ଏଠାରେ ଏକ ସଂକ୍ଷିପ୍ତ ପରିସରରେ ତାହା ପ୍ରକାଶ କରାଯାଇ ଭବିଷ୍ୟତ ପାଇଁ ଲିପିବଦ୍ଧ କରାଗଲା । ଗବେଷକ ତଥା ସଙ୍ଗୀତ, ନୃତ୍ୟ ଓ ନାଟକପ୍ରେମୀମାନେ ତାକୁ ପରବର୍ତ୍ତୀ ସମୟରେ ପରିବର୍ଦ୍ଧିତ ଓ ବିସ୍ତାରିତ କରନ୍ତୁ । ଓଡ଼ିଶାରେ ପୂଜ୍ୟପୂଜାର ଏ ମଧୁର ବାତାବରଣକୁ ପ୍ରସାରିତ କରନ୍ତୁ, ଏତିକି ନିବେଦନ ।

ଏହି ପୁସ୍ତକ 'ସମ୍ବର୍ଦ୍ଧିତ ଶିଳ୍ପୀ ପରିଚୟ'ର ପ୍ରକାଶନ କ୍ଷେତ୍ରରେ ଏକାଡେମୀ ସମ୍ପାଦକ ଡାକ୍ତର ନନ୍ଦ ଓ ତାଙ୍କର ସହାୟକ ବନ୍ଧୁଗଣଙ୍କ ଶ୍ରମ ଓ ପ୍ରଚେଷ୍ଟା ପ୍ରଶଂସନୀୟ । ମୁଁ ସେମାନଙ୍କୁ ଓ ଓଡ଼ିଶାର ବରେଣ୍ୟ କଳାକାରମାନଙ୍କୁ ଏ ଅବସରରେ ଅଭିନନ୍ଦନ ଜଣାଉଛି ।

ସଭାପତି, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ,
ସଂସ୍କୃତି ମନ୍ତ୍ରୀ, ଓଡ଼ିଶା

# ସଂପାଦକୀୟ

ସମଗ୍ର ବିଶ୍ୱରେ କଳା ଓ ସଂସ୍କୃତି କ୍ଷେତ୍ରରେ ଓଡ଼ିଶାର ଅବଦାନ ଅତୁଳନୀୟ । ସହସ୍ରାଧିକ ବର୍ଷର ପରମ୍ପରା ଉପରେ ପ୍ରତିଷ୍ଠିତ ଏ ସଂସ୍କୃତିର ମଙ୍ଗଧରମାନେ ଆମର ନମସ୍ୟ । କଳାକାରର ସର୍ଜନା ଭିତରେ, ନାଟ୍ୟକାରର ନାଟ୍ୟସୃଷ୍ଟି ଭିତରେ, ଅଭିନେତାର ନିଖୁଣ ଅଭିନୟରେ, ନର୍ତ୍ତକୀର ନୂପୁର ନିକ୍ୱଣ ମଧ୍ୟରେ, ସଙ୍ଗୀତଜ୍ଞର ଲଳିତ ମଧୁର ସଙ୍ଗୀତ ମୂର୍ଚ୍ଛନା ଭିତରେ ଜାତି ଜୀବନ୍ତ ଓ ପୁଲକିତ ହୁଏ । ବର୍ଷ ବର୍ଷ ଧରି ଏହି ଓଡ଼ିଶୀ, କଳା, ସଂସ୍କୃତି, ସଙ୍ଗୀତ, ନୃତ୍ୟ ଓ ନାଟକକୁ ଯେଉଁମାନେ ନିଜସ୍ୱ ପ୍ରଚେଷ୍ଟାରେ ଆଗେଇ ନେଇ ପାରିଛନ୍ତି, ସେମାନଙ୍କୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ସମ୍ବର୍ଦ୍ଧିତ କରି ଆସିଛି । ସେମାନଙ୍କର ଜୀବନୀ ଓ କଳାକୃତିକୁ ଲୋକଲୋଚନକୁ ଆଣିବାକୁ ଆଜିର ଏହି ସଂକଳନ 'ସମ୍ବର୍ଦ୍ଧିତ ଶିଳ୍ପୀ ଜୀବନୀ ପରିଚୟ'ରେ କିଞ୍ଚିତ୍ ଚେଷ୍ଟା କରାଯାଇଛି ।

ଏକାଡେମୀର ସାଧାରଣ ପରିଷଦଦ୍ୱାରା ଏ ଦାୟିତ୍ୱ ମୋତେ ଦିଆଯାଇଥିବାରୁ ମୁଁ କୃତଜ୍ଞ । ଓଡ଼ିଶାର ବରେଣ୍ୟ କୃତୀ ସ୍ରଷ୍ଟାମାନଙ୍କର ସୃଷ୍ଟି ଓ ଜୀବନର ସଂକ୍ଷିପ୍ତ ଆଭାସ ଦେବାର ପ୍ରୟାସ ମାତ୍ର କରାଯାଇଛି ଏ ପୁସ୍ତକରେ । ପ୍ରତ୍ୟେକ ସମ୍ବର୍ଦ୍ଧିତ କଳାକାର ନିଜ ନିଜ ଗୁଣରେ ମହୀୟାନ୍ ଓ ସେମାନଙ୍କ ବିଷୟରେ ଲେଖି ବସିଲେ ବିରାଟ ଗ୍ରନ୍ଥମାନ ହେବ ।

ଏଣୁ ସୀମିତ ସମ୍ବଳ ଓ ସଂକ୍ଷିପ୍ତ ପରିସରରେ ଏହି ପୁସ୍ତକ ପ୍ରକାଶ କରାଯିବାର ସିଦ୍ଧାନ୍ତ ନିଆଯାଇଛି । ଏଥିପାଇଁ କଳାକାରମାନେ ଆମକୁ ଭୁଲ ବୁଝିବେ ନାହିଁ ବୋଲି ଆଶା । ଏ ପୁସ୍ତକ ପ୍ରକାଶନ ପାଇଁ ଓ ଜୀବନ ଲିପି ସଂଗ୍ରହରେ ଶ୍ରୀ ଦେବଦତ୍ତ ସାମନ୍ତ ସିଂହାର, ଶ୍ରୀ ବିଜୟ ଚୌଧୁରୀ ଓ ଶ୍ରୀ ଅର୍ମାୟ ଚନ୍ଦ୍ର ମହାପାତ୍ର ତଥା ଏକାଡେମୀର ସହାୟକ ବନ୍ଧୁମାନଙ୍କ ସାହାଯ୍ୟ ସହଯୋଗ ସ୍ୱୀକାର୍ଯ୍ୟ । ମୁଁ ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି । ପରମ ସମ୍ମାନନୀୟ ଶ୍ରୀ ପ୍ରାଣବନ୍ଧୁ କର ଓ ଶ୍ରୀ ନଟବର ସେଣ ମଧ୍ୟ କେତେକ କଳାକାରଙ୍କ ଜୀବନବୃତ୍ତାନ୍ତ ଯୋଗାଇଥିବାରୁ ମୁଁ ସେମାନଙ୍କୁ ଏକାଡେମୀ ତରଫରୁ ଧନ୍ୟବାଦ ଜଣାଉଛି । 'ସଂଘାର ପ୍ରେସ'ର କର୍ମକର୍ତ୍ତାମାନେ ଏହି ପୁସ୍ତକଟି ସ୍ୱଳ୍ପସମୟ ଭିତରେ ପ୍ରକାଶ କରିବାର ଦାୟିତ୍ୱ ନେଇଥିବାରୁ ସେମାନେ ଧନ୍ୟବାଦାର୍ହ ।

୧୯୯୧-୯୨ର ଶିଳ୍ପୀ ସମ୍ବର୍ଦ୍ଧନା ଉତ୍ସବ ଅବକାଶରେ ଏହା ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଉନ୍ମୋଚିତ ହେବାକୁ ଯାଉଛି । ଏହା ଆମର ଗର୍ବ ଓ ଗୌରବ । ଏ ସମସ୍ତ କାର୍ଯ୍ୟ ପାଇଁ ଏକାଡେମୀର ସଭାପତି ତଥା ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ପ୍ରେରଣା, ଉତ୍ସାହ ଓ ଉପଦେଶ ଆମକୁ ପଥ ପ୍ରଦର୍ଶନ କରିଛି । ଏକାଡେମୀ ତାଙ୍କ ନିକଟରେ କୃତଜ୍ଞ । ଅଗଣିତ ପାଠକ ଓ କଳାକାର ତଥା କଳା-ପ୍ରେମୀ ଜନସାଧାରଣ ଏ ଗ୍ରନ୍ଥର ଉପଯୁକ୍ତ ମୂଲ୍ୟାୟନ କରିବେ । ଜୟ ଜଗନ୍ନାଥ ।

**ଶୈଳେଶ୍ୱର ନନ୍ଦ**

ସମ୍ପାଦକ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ

# ଅଭିମତ

ସଙ୍ଗୀତ, ନାଟକ, ନୃତ୍ୟକଳା ଓ ସ୍ଥାପତ୍ୟ ପାଇଁ ଓଡ଼ିଶା ବିଶ୍ୱବିଦିତ । ସ୍ରଷ୍ଟାର ଅପୂର୍ବ ସର୍ଜନାରେ କଳା ହୁଏ ମହନୀୟ । ସ୍ରଷ୍ଟା ଓ ତାର ସୃଷ୍ଟିକୁ ସମ୍ବର୍ଦ୍ଧିତ କରିବା ଜାତିର କର୍ତ୍ତବ୍ୟ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପ୍ରତିବର୍ଷ ସଙ୍ଗୀତ, ନାଟକ, ନୃତ୍ୟ, ଲୋକସଙ୍ଗୀତ ଓ ଲୋକନୃତ୍ୟ ଆଦି କ୍ଷେତ୍ରରେ କୃତୀ କଳାକାରମାନଙ୍କୁ ସମ୍ବର୍ଦ୍ଧିତ କରିଆସୁଅଛି । କିନ୍ତୁ ସେହି ମହାନ୍ କଳାକାରମାନଙ୍କର ଶିଳ୍ପସାଧନା ତଳେ ରହିଥିବା ଅଦମ୍ୟ ଉଦ୍ୟମର ଇତିହାସ ଲୋକଲୋଚନର ଅଗୋଚରରେ ଧୀରେ ଧୀରେ ହଜିଯାଉଛି । ଏକାଡେମୀ ଏ ବର୍ଷ ସେହି ସମ୍ବର୍ଦ୍ଧିତ କଳାକାରମାନଙ୍କର ସଂକ୍ଷିପ୍ତ ପରିଚୟ ସନ୍ନିବେଶିତ କରି ଏହି ପୁସ୍ତକ ସଂକଳନ କରିଅଛି । ଏହା ନିଶ୍ଚିତ ଭାବେ ଏକ ସାଧୁ ଉଦ୍ୟମ । ପ୍ରତ୍ୟେକ ସମ୍ବର୍ଦ୍ଧିତ କଳାକାରଙ୍କର କୃତି ଓ ଜୀବନୀ ଲେଖି ବସିଲେ ଗୋଟିଏ ଗୋଟିଏ ଗ୍ରନ୍ଥ ହେବ । କିନ୍ତୁ ଏଠାରେ ଏକ ସଂକ୍ଷିପ୍ତ ପରିସରରେ ତାହା ପ୍ରକାଶ କରାଯାଇ ଭବିଷ୍ୟତ ପାଇଁ ଲିପିବଦ୍ଧ କରାଗଲା । ଗବେଷକ ତଥା ସଙ୍ଗୀତ, ନୃତ୍ୟ ଓ ନାଟକପ୍ରେମୀମାନେ ତାକୁ ପରବର୍ତ୍ତୀ ସମୟରେ ପରିବର୍ଦ୍ଧିତ ଓ ବିସ୍ତାରିତ କରନ୍ତୁ । ଓଡ଼ିଶାରେ ପୂଜ୍ୟପୂଜାର ଏ ମଧୁର ବାତାବରଣକୁ ପ୍ରସାରିତ କରନ୍ତୁ, ଏତିକି ନିବେଦନ ।

ଏହି ପୁସ୍ତକ 'ସମ୍ବର୍ଦ୍ଧିତ ଶିଳ୍ପୀ ପରିଚୟ'ର ପ୍ରକାଶନ କ୍ଷେତ୍ରରେ ଏକାଡେମୀ ସମ୍ପାଦକ ଡାକ୍ତର ନନ୍ଦ ଓ ତାଙ୍କର ସହାୟକ ବନ୍ଧୁଗଣଙ୍କ ଶ୍ରମ ଓ ପ୍ରଚେଷ୍ଟା ପ୍ରଶଂସନୀୟ । ମୁଁ ସେମାନଙ୍କୁ ଓ ଓଡ଼ିଶାର ବରେଣ୍ୟ କଳାକାରମାନଙ୍କୁ ଏ ଅବସରରେ ଅଭିନନ୍ଦନ ଜଣାଉଛି ।

ସଭାପତି, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ,
ସଂସ୍କୃତି ମନ୍ତ୍ରୀ, ଓଡ଼ିଶା

# ସଂପାଦକୀୟ

ସମଗ୍ର ବିଶ୍ୱରେ କଳା ଓ ସଂସ୍କୃତି କ୍ଷେତ୍ରରେ ଓଡ଼ିଶାର ଅବଦାନ ଅତୁଳନୀୟ । ସହସ୍ରାଧିକ ବର୍ଷର ପରମ୍ପରା ଉପରେ ପ୍ରତିଷ୍ଠିତ ଏ ସଂସ୍କୃତିର ମଙ୍ଗଧରମାନେ ଆମର ନମସ୍ୟ । କଳାକାରର ସର୍ଜନା ଭିତରେ, ନାଟ୍ୟକାରର ନାଟ୍ୟମୂର୍ତ୍ତି ଭିତରେ, ଅଭିନେତାର ନିଖୁଣ ଅଭିନୟରେ, ନର୍ତ୍ତକୀର ନୂପୁର ନିକ୍ୱଣ ମଧ୍ୟରେ, ସଙ୍ଗୀତଜ୍ଞର ଲଳିତ ମଧୁର ସଙ୍ଗୀତ ମୂର୍ଚ୍ଛନା ଭିତରେ ଜାତି ଜୀବନ୍ତ ଓ ପୁଲକିତ ହୁଏ । ବର୍ଷ ବର୍ଷ ଧରି ଏହି ଓଡ଼ିଶୀ, କଳା, ସଂସ୍କୃତି, ସଙ୍ଗୀତ, ନୃତ୍ୟ ଓ ନାଟକକୁ ଯେଉଁମାନେ ନିଜସ୍ୱ ପ୍ରଚେଷ୍ଟାରେ ଆଗେଇ ନେଇ ପାରିଛନ୍ତି, ସେମାନଙ୍କୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ସମ୍ବର୍ଦ୍ଧିତ କରି ଆସିଛି । ସେମାନଙ୍କର ଜୀବନୀ ଓ କଳାକୃତିକୁ ଲୋକଲୋଚନକୁ ଆଣିବାକୁ ଆଜିର ଏହି ସଂକଳନ 'ସମ୍ବର୍ଦ୍ଧିତ ଶିଳ୍ପୀ ଜୀବନୀ ପରିଚୟ'ରେ କିଞ୍ଚିତ୍ ଚେଷ୍ଟା କରାଯାଇଛି ।

ଏକାଡେମୀର ସାଧାରଣ ପରିଷଦଦ୍ୱାରା ଏ ଦାୟିତ୍ୱ ମୋତେ ଦିଆଯାଇଥିବାରୁ ମୁଁ କୃତଜ୍ଞ । ଓଡ଼ିଶାର ବରେଣ୍ୟ କୃତୀ ସ୍ରଷ୍ଟାମାନଙ୍କର ସୃଷ୍ଟି ଓ ଜୀବନର ସଂକ୍ଷିପ୍ତ ଆଭାସ ଦେବାର ପ୍ରୟାସ ମାତ୍ର କରାଯାଇଛି ଏ ପୁସ୍ତକରେ । ପ୍ରତ୍ୟେକ ସମ୍ବର୍ଦ୍ଧିତ କଳାକାର ନିଜ ନିଜ ଗୁଣରେ ମହୀୟାନ୍ ଓ ସେମାନଙ୍କ ବିଷୟରେ ଲେଖି ବସିଲେ ବିରାଟ ଗ୍ରନ୍ଥମାନ ହେବ ।

ଏଣୁ ସୀମିତ ସମ୍ବଳ ଓ ସଂକ୍ଷିପ୍ତ ପରିସରରେ ଏହି ପୁସ୍ତକ ପ୍ରକାଶ କରାଯିବାର ସିଦ୍ଧାନ୍ତ ନିଆଯାଇଛି । ଏଥିପାଇଁ କଳାକାରମାନେ ଆମକୁ ଭୁଲ ବୁଝିବେ ନାହିଁ ବୋଲି ଆଶା । ଏ ପୁସ୍ତକ ପ୍ରକାଶନ ପାଇଁ ଓ ଜୀବନ ଲିପି ସଂଗ୍ରହରେ ଶ୍ରୀ ଦେବଦତ୍ତ ସାମନ୍ତସିଂହାର, ଶ୍ରୀ ବିଜୟ ଚୌଧୁରୀ ଓ ଶ୍ରୀ ଅର୍ମାଶୁ ଚନ୍ଦ୍ର ମହାପାତ୍ର ତଥା ଏକାଡେମୀର ସହାୟକ ବନ୍ଧୁମାନଙ୍କ ସାହାଯ୍ୟ ସହଯୋଗ ସ୍ୱୀକାର୍ଯ୍ୟ । ମୁଁ ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି । ପରମ ସମ୍ମାନନୀୟ ଶ୍ରୀ ପ୍ରାଣବନ୍ଧୁ କର ଓ ଶ୍ରୀ ନଟବର ସେଣ ମଧ୍ୟ କେତେକ କଳାକାରଙ୍କ ଜୀବନବୃତ୍ତାନ୍ତ ଯୋଗାଇଥିବାରୁ ମୁଁ ସେମାନଙ୍କୁ ଏକାଡେମୀ ତରଫରୁ ଧନ୍ୟବାଦ ଜଣାଉଛି । 'ସଂସାର ପ୍ରେସ'ର କର୍ମକର୍ତ୍ତାମାନେ ଏହି ପୁସ୍ତକଟି ସ୍ୱଳ୍ପସମୟ ଭିତରେ ପ୍ରକାଶ କରିବାର ଦାୟିତ୍ୱ ନେଇଥିବାରୁ ସେମାନେ ଧନ୍ୟବାଦାର୍ହ ।

୧୯୯୧-୯୨ର ଶିଳ୍ପୀ ସମ୍ବର୍ଦ୍ଧନା ଉତ୍ସବ ଅବକାଶରେ ଏହା ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଉନ୍ମୋଚିତ ହେବାକୁ ଯାଉଛି । ଏହା ଆମର ଗର୍ବ ଓ ଗୌରବ । ଏ ସମସ୍ତ କାର୍ଯ୍ୟ ପାଇଁ ଏକାଡେମୀର ସଭାପତି ତଥା ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ପ୍ରେରଣା, ଉତ୍ସାହ ଓ ଉପଦେଶ ଆମକୁ ପଥ ପ୍ରଦର୍ଶନ କରିଛି । ଏକାଡେମୀ ତାଙ୍କ ନିକଟରେ କୃତଜ୍ଞ । ଅଗଣିତ ପାଠକ ଓ କଳାକାର ତଥା କଳା-ପ୍ରେମୀ ଜନସାଧାରଣ ଏ ଗ୍ରନ୍ଥର ଉପଯୁକ୍ତ ମୂଲ୍ୟାୟନ କରିବେ । ଜୟ ଜଗନ୍ନାଥ ।

**ଶୈଳେଶ୍ୱର ନନ୍ଦ**

ସମ୍ପାଦକ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ

# ସମ୍ମାନିତ ଶିଳ୍ପୀଗଣ

**୧୯୭୦-୭୧**

ସୁନନ୍ଦା ପଟ୍ଟନାୟକ
(ଓଡ଼ିଶୀ କଣ୍ଠ ସଙ୍ଗୀତ)

ସାମୁଏଲ ସାହୁ (ଅଭିନୟ)

ପଙ୍କଜ ଚରଣ ଦାସ (ଓଡ଼ିଶୀ ନୃତ୍ୟ)

**୧୯୭୧-୭୨**

ତାରଣୀ ଚରଣ ପାତ୍ର (କଣ୍ଠ ସଙ୍ଗୀତ)

ରାମଚନ୍ଦ୍ର ମାଣିଆ (ଅଭିନେତା)

ଗୁରୁ କେଳୁଚରଣ ମହାପାତ୍ର (ଓଡ଼ିଶୀ ନୃତ୍ୟ)

କାଳଚରଣ ପଟ୍ଟନାୟକ (ନାଟ୍ୟ ରଚନା)

**୧୯୭୨-୭୩**

ସିଂହାରୀ ଶ୍ୟାମସୁନ୍ଦର କର
(ଓଡ଼ିଶୀ କଣ୍ଠସଙ୍ଗୀତ)

ଚନ୍ଦ୍ରଶେଖର ଭଞ୍ଜ (ଲୋକନୃତ୍ୟ, ଛଉ)

ରାମଚନ୍ଦ୍ର ମିଶ୍ର (ନାଟ୍ୟ ରଚନା)

**୧୯୭୩-୭୪**

ପୂର୍ଣ୍ଣଚନ୍ଦ୍ର ସିଂହ (ଅଭିନେତା/ନିର୍ଦ୍ଦେଶକ)

କ୍ଷେତ୍ରମୋହନ କର
(ଯନ୍ତ୍ର ସଙ୍ଗୀତ, ତବଲା)

ଦେବପ୍ରସାଦ ଦାସ (ଓଡ଼ିଶୀ ନୃତ୍ୟ)

ଅଦ୍ୱୈତ ଚରଣ ମହାନ୍ତି
(ନାଟ୍ୟ ରଚନା)

**୧୯୭୪-୭୫**

ଶ୍ୟାମସୁନ୍ଦର ଧୀର୍ (କଣ୍ଠ ସଙ୍ଗୀତ)

ଗଗନ ଦାସ (ଅଭିନେତା/ନିର୍ଦ୍ଦେଶକ)

ମିନତି ମିଶ୍ର (ଓଡ଼ିଶୀ ନୃତ୍ୟ)

କାର୍ତ୍ତିକ କୁମାର ଘୋଷ (ନାଟ୍ୟ ରଚନା)

**୧୯୭୫-୭୬**

ବାଳକୃଷ୍ଣ ଦାଶ (ଓଡ଼ିଶୀ କଣ୍ଠସଙ୍ଗୀତ)

ଦୁର୍ଲ୍ଲଭ ସିଂହ (ଅଭିନେତା/ନିର୍ଦ୍ଦେଶକ)

ସଞ୍ଜୁକ୍ତା ପାଣିଗ୍ରାହୀ (ଓଡ଼ିଶୀ ନୃତ୍ୟ)

ଗୋପାଳ ଛୋଟରାୟ (ନାଟ୍ୟ ରଚନା)

**୧୯୭୬-୭୭**

କାଶୀନାଥ ପୂଜାପଣ୍ଡା
(ଓଡ଼ିଶୀ କଣ୍ଠ ସଙ୍ଗୀତ)

ପ୍ରିୟନାଥ ମିଶ୍ର (ଅଭିନେତା/ନିର୍ଦ୍ଦେଶକ)

ଶ୍ରୀହରି ନାଏକ (ଲୋକନୃତ୍ୟ, ଛଉ)

ଭଞ୍ଜକିଶୋର ପଟ୍ଟନାୟକ (ନାଟ୍ୟ ରଚନା)

**୧୯୭୭-୭୮**

ନୃସିଂହ ନାଥ ଖୁଣ୍ଟିଆ (କଣ୍ଠ ସଙ୍ଗୀତ)

କାଶୀନାଥ ସାହୁ (ଅଭିନେତା/ନିର୍ଦ୍ଦେଶକ)

ଭୁବନେଶ୍ୱର ମିଶ୍ର
(ଯନ୍ତ୍ର ସଙ୍ଗୀତ, ବେହେଲା)

ମାୟାଧର ରାଉତ (ଓଡ଼ିଶୀ ନୃତ୍ୟ)

ପ୍ରାଣବନ୍ଧୁ କର (ନାଟ୍ୟ ରଚନା)

ଭଗବାନ ସାହୁ (ଲୋକନୃତ୍ୟ, ରଣପା)

**୧୯୭୮-୭୯**

ନିମାଇଁ ଚ. ହରିଚନ୍ଦନ (କଣ୍ଠ ସଙ୍ଗୀତ)

ରାଧାରାଣୀ ଦେବୀ (ଅଭିନୟ)

ଅନନ୍ତ ପାତ୍ର (ଯନ୍ତ୍ର ସଙ୍ଗୀତ, ବୀଣା)

ମଦନମୋହନ ଲେଙ୍କା (ଲୋକନୃତ୍ୟ, ଛଉ)

ମନୋରଞ୍ଜନ ଦାସ (ନାଟ୍ୟ ରଚନା)

ବୈଦ୍ୟନାଥ ଶର୍ମା
(ଲୋକନୃତ୍ୟ, ଦାସକାଠିଆ)

**୧୯୭୯-୮୦**

କ୍ଷିତୀଶ ଚନ୍ଦ୍ର ମୈତ୍ର
(କଣ୍ଠ ସଙ୍ଗୀତ, ଶାସ୍ତ୍ରୀୟ)

ଲକ୍ଷ୍ମୀନାରାୟଣ ପାତ୍ର (ଅଭିନୟ/ନିର୍ଦ୍ଦେଶନା)

ଜଗବନ୍ଧୁ ସାହୁ (ଯନ୍ତ୍ର ସଙ୍ଗୀତ)

ଅର୍ଜ୍ଜୁନ ପଣ୍ଡା (ଗୋଟିପୁଅ ନୃତ୍ୟ)

ମହାଦେବ ରାଉତ (ଓଡ଼ିଶୀ ନୃତ୍ୟ)

ବ୍ୟୋମକେଶ ତ୍ରିପାଠୀ
(ଅଭିନୟ/ନିର୍ଦ୍ଦେଶନା)

ନିରଞ୍ଜନ କର (ଲୋକନୃତ୍ୟ ପାଲା)

୧୯୮୦-୮୧

ମାର୍କଣ୍ଡେୟ ମହାପାତ୍ର
(କଣ୍ଠ ସଙ୍ଗୀତ, ଓଡ଼ିଶୀ)

ଉପେନ୍ଦ୍ର ତ୍ରିପାଠୀ (ଯନ୍ତ୍ର ସଙ୍ଗୀତ)

ପ୍ରିୟମ୍ବଦା ମହାନ୍ତି (ଓଡ଼ିଶୀ ନୃତ୍ୟ)

କମଳଲୋଚନ ମହାନ୍ତି (ନାଟ୍ୟ ରଚନା)

ଦୟାସାଗର ପାଢ଼ୀ
(ଲୋକନୃତ୍ୟ, ସଞ୍ଚାର)

ଶ୍ୟାମସୁନ୍ଦର ମହାପାତ୍ର (କଣ୍ଠ ସଙ୍ଗୀତ)

୧୯୮୧-୮୨

ସୁକୁମାର ସାହୁ (କଣ୍ଠ ସଙ୍ଗୀତ)

ନିତାଇ ପାଲିତ୍ (ଅଭିନୟ/ନିର୍ଦ୍ଦେଶନା)

ଧ୍ରୁବ ଚରଣ ରଥ (ଯନ୍ତ୍ର ସଙ୍ଗୀତ, ତବଲା)

ଲାଲମୋହନ ପାତ୍ର (ଲୋକନୃତ୍ୟ, ଛଉ)

ବିଶ୍ୱଜିତ୍ ଦାସ
(ନାଟ୍ୟ ରଚନା/ନିର୍ଦ୍ଦେଶନା)

ରଘୁନାଥ ପଣ୍ଡା
(ଯାତ୍ରାନାଟ୍ୟକାର ଓ ନିର୍ଦ୍ଦେଶନା)

ଆନନ୍ଦଶଙ୍କର ଦାସ୍ (ନାଟ୍ୟ ରଚନା)

୧୯୮୨-୮୩

ବୀଣାପାଣି ମିଶ୍ର (ଶାସ୍ତ୍ରୀୟ କଣ୍ଠ ସଙ୍ଗୀତ)

ନଟବର ସେଣ (ଅଭିନେତା ନିର୍ଦ୍ଦେଶକ)

ପଦ୍ମନାଭ ପଣ୍ଡା (ଯନ୍ତ୍ର ସଙ୍ଗୀତ, ପଖାଉଜ)

ହରେକୃଷ୍ଣ ବେହେରା (ଓଡ଼ିଶୀ ନୃତ୍ୟ)

ଭୁବନେଶ୍ୱର ମହାପାତ୍ର (ନାଟ୍ୟରଚନା)

ବାଞ୍ଛାନିଧି ଶତପଥି (ଏକକ ଅଭିନୟ)

ପ୍ରଫୁଲ୍ଲ କୁମାର ଦେଓ (ଲୋକଗୀତ ଝୁମର)

୧୯୮୩-୮୪

ଲୋକନାଥ ରଥ (ଓଡ଼ିଶୀ କଣ୍ଠ ସଙ୍ଗୀତ)

ଭାନୁମତୀ ଦେବୀ (ଅଭିନୟ)

ଭୋଳାନାଥ ଦାସ (ମଞ୍ଚ ଅଭିନେତା)

ରାଧାଗୋବିନ୍ଦ ଘୋଷ
(ଯନ୍ତ୍ର ସଙ୍ଗୀତ, ତବଲା)

ରଘୁନାଥ ଦତ୍ତ (ଓଡ଼ିଶୀ ନୃତ୍ୟ)

ପ୍ରଫୁଲ୍ଲ କୁମାର ରଥ (ନାଟ୍ୟ ରଚନା)

ମାଗୁଣି ଚରଣ କୁଅଁର (କୁଣ୍ଢେଇ ନୃତ୍ୟ)

୧୯୮୪-୮୫

ବିଷ୍ଣୁପ୍ରିୟା ସାମନ୍ତସିଂହାର
(ଓଡ଼ିଶୀ କଣ୍ଠସଙ୍ଗୀତ)

ଦୁଃଖିରାମ ସ୍ୱାଇଁ (ଅଭିନେତା)

ବୀଣାପାଣି ମହାନ୍ତି (ଯନ୍ତ୍ରସଙ୍ଗୀତ, ସିତାର୍)

ଯଦୁନାଥ ଦାଶ ମହାପାତ୍ର (ନାଟ୍ୟ ରଚନା)

ଅନନ୍ତ ଚରଣ ସାଏ (ଲୋକନୃତ୍ୟ, ଛଉ)

କାଶୀନାଥ ପଣ୍ଡା
(ଲୋକନୃତ୍ୟ, ଦାସକାଠିଆ)

୧୯୮୫-୮୬

ରାଧାରାଣି ମହାପାତ୍ର
(ଓଡ଼ିଶୀ କଣ୍ଠ ସଙ୍ଗୀତ)

ମଣିମାଳା ଦେବୀ (ଅଭିନେତ୍ରୀ)

ଅର୍ଜୁନ କୁମାର ସେଠ
ଯନ୍ତ୍ରସଂଗୀତ (ସେତାର୍)

ରମଣୀ ରଞ୍ଜନ ଜେନା (ଓଡ଼ିଶୀନୃତ୍ୟ)

ନରସିଂହ ମହାପାତ୍ର (ନାଟ୍ୟରଚନା)

୧୯୮୬-୮୭

ବୀଣାଦେବୀ (ଓଡ଼ିଶୀ କଣ୍ଠସଂଗୀତ)

ଲକ୍ଷ୍ମୀ ଦେବୀ (ଅଭିନେତ୍ରୀ)

ଗୋବିନ୍ଦ ତେଜ (ଅଭିନୟ/ନିର୍ଦ୍ଦେଶନା)

ରାଜକିଶୋର ରାୟ (ଅଭିନେତା)

ସୁରେନ୍ଦ୍ର ଧଡ଼ା (ଯନ୍ତ୍ର ସଂଗୀତ, ଢୋଲ)

ସତ୍ୟନାରାୟଣ ପଣ୍ଡା (ନାଟ୍ୟରଚନା)

ଦୟାସାଗର ପଣ୍ଡା (ଲୋକନୃତ୍ୟ)

ବଟକୃଷ୍ଣ ସେନ (ଓଡ଼ିଶୀନୃତ୍ୟ)

**୧୯୮୮-୮୯**

ଦୀନବନ୍ଧୁ ଦାସ (ଅଭିନୟ)
ଚନ୍ଦ୍ରଧର ସାହୁ (ଯନ୍ତ୍ରସଂଗୀତ, ପଖାଓଜ)
ସତ୍ୟାନନ୍ଦ ବଣୋଇ (ଲୋକନୃତ୍ୟ, କଣ୍ଢେଇ)
ଗଜେନ୍ଦ୍ର ଦାସ (ଲୋକନୃତ୍ୟ, କଣ୍ଢେଇ)
ଲୋକନାଥ ପାଲ (ଓଡ଼ିଶୀ କଣ୍ଠସଂଗୀତ)
ବିଜୟ ମିଶ୍ର (ନାଟ୍ୟରଚନା)

**୧୯୮୯-୯୦**

ଆର୍ତ୍ତବନ୍ଧୁ ରାଉତରାୟ (ଯାତ୍ରା ଅଭିନୟ ନିର୍ଦ୍ଦେଶନା)
ବସନ୍ତ କୁମାର ମହାପାତ୍ର (ନାଟ୍ୟ ରଚନା)
ଭକ୍ତବତ୍ସଳ ପାତ୍ର (ନାଟ୍ୟରଚନା)
ଶୁକଦେବ ପତି (ଓଡ଼ିଶୀ କଣ୍ଠସଂଗୀତ)
ବୃନ୍ଦାବନ ପାତ୍ର (ବୁଲ୍‌ବୁଲ୍) (ଅଭିନୟ ହାସ୍ୟ)
ଶ୍ରୀକାନ୍ତ ସେନ୍ (ଲୋକନୃତ୍ୟ, ଛଉ)
ପ୍ରସନ୍ନ ଚୌଧୁରୀ (ଲୋକନୃତ୍ୟ, ଛଉ)
ରାଧାକୃଷ୍ଣ ଭକ୍ତ (ଲୋକସଂଗୀତ)
ମାଧବାନନ୍ଦ କର (ଅଭିନୟ)
କୃଷ୍ଣଚନ୍ଦ୍ର ରଥ (ମଞ୍ଚକଳା)

**୧୯୯୦-୯୧**

ରାମଚନ୍ଦ୍ର ମହାପାତ୍ର (ଓଡ଼ିଶୀ କଣ୍ଠସଙ୍ଗୀତ)
ନାରାୟଣ ବେହେରା (ଓଡ଼ିଶୀ ସଂଗୀତ)
ସୋମନାଥ ଦାସ (ଓଡ଼ିଶୀ କଣ୍ଠସଂଗୀତ)
ଗୋପିନାଥ ବେହେରା (ମର୍ଦ୍ଦଳ ବାଦକ)
ଗୋପିନାଥ ବେହେରା (ନୃତ୍ୟ)
ମାଗୁଣି ଚରଣ ଦାସ (ଗୋଟିପୁଅ)
ବୈଷ୍ଣବ ଚରଣ ପ୍ରଧାନ (ଲୋକନୃତ୍ୟ, ପାଲା)
ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ (ନାଟ୍ୟ ରଚନା)
ଲକ୍ଷ୍ମୀଧର ନାୟକ (ନାଟ୍ୟ ରଚନା)
ଲକ୍ଷ୍ମୀନାରାୟଣ ଆଗ୍ରୱାଲ (ମଞ୍ଚକଳା)
ନିରଞ୍ଜନ ଶତପଥୀ (ଅଭିନୟ)
କାନନବାଳା ଦେବୀ (ଅଭିନୟ)
ଭାଗବତ ସ୍ୱାଇଁ (ବାଦ୍ୟକାର)

**୧୯୯୧-୯୨**

**ସଂସ୍କୃତି ସମ୍ମାନ ବିଜେତା**

ଧୀରେନ ଦାଶ

**ସମ୍ବର୍ଦ୍ଧିତ କଳାକାର**

ଯଦୁମଣି କାନୁନ୍‌ଗୋ
ନୀଳକଣ୍ଠ ମିଶ୍ର (ନାଟ୍ୟ ରଚନା)
ଜ୍ୟୋତ୍ସ୍ନା ମହାନ୍ତି (ଅଭିନୟ)
ଈଶ୍ୱର ଚନ୍ଦ୍ର ମହାନ୍ତି
ଦୟାନିଧି ତ୍ରିପାଠୀ (କ୍ଲାରିଓନେଟ୍, ଯନ୍ତ୍ର ସଙ୍ଗୀତ)
ପଦ୍ମଚରଣ ବେହେରା (ଲୋକନୃତ୍ୟ)
ନିତାଇଚରଣ ସିହ୍ନା (କଣ୍ଠ ସଙ୍ଗୀତ)
ସୁଧାକର ସାହୁ (ନୃତ୍ୟ)

**ଉପାୟନପ୍ରାପ୍ତ କଳାକାରବୃନ୍ଦ**

ଶ୍ୟାମାମଣି ଦେବୀ (କଣ୍ଠ ସଙ୍ଗୀତ)
ଲୀଳା ଦୁଲାଲି (ଅଭିନୟ)
ଗଣେଶ୍ୱର ରଥ (ଅଭିନୟ)
ରାମଚନ୍ଦ୍ର ଦୀକ୍ଷିତ (ସାହିଯାତ୍ରା)
ରଘୁନାଥ ନନ୍ଦ (କଣ୍ଠଶିଳ୍ପୀ)

# କୁମାରୀ ସୁନନ୍ଦା ପଟ୍ଟନାୟକ

## କଟକ ସହର



ସୁନନ୍ଦା ପଟ୍ଟନାୟକ । ଓଡ଼ିଶାର ଗର୍ବ ସେ । ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତ କ୍ଷେତ୍ରରେ ଏକ ଅବିସମ୍ବାଦୀ ପ୍ରତିଭା । ଏବେ ଦୀର୍ଘଦିନ ଧରି କଲିକତା ମହାନଗରୀର ବାସିନ୍ଦା ହେଲେହେଁ ତାଙ୍କ ଜନ୍ମ ଓଡ଼ିଶାର କଟକ ସହରରେ । ତାଙ୍କର ପିତା ' ବୈକୁଣ୍ଠନାଥ ପଟ୍ଟନାୟକ ଜଣେ ବରିଷ୍ଠ ଶିକ୍ଷାବିତ୍, କବି ଏବଂ ସାହିତ୍ୟପ୍ରେମୀ ଥିଲେ । " ପଟ୍ଟନାୟକଙ୍କର ଏକ ସିତାର୍ ଥିଲା ଏବଂ ସେ ସମସ୍ତ ସମୟରେ ତାକୁ ବାଦନ କରୁଥିଲେ । ସଙ୍ଗୀତ ପ୍ରତି ଶିଶୁ ସୁନନ୍ଦାଙ୍କର ଏକ ଜନ୍ମଗତ ଅହେତୁକ ଆକର୍ଷଣ ଥିଲା । ତାଙ୍କ ମାତା ଠାକୁରଙ୍କ ଗୃହରେ ପୂଜାବେଳେ ଗାୟନ କରୁଥିବା ଗୀତ ଗୋବିନ୍ଦର ପଂକ୍ତି ସବୁକୁ ସେ ଆଶ୍ଚର୍ଯ୍ୟଭାବେ ମନେରଖି ଅବିକଳ ନକଲ କରିପାରୁଥିଲେ । ମାତ୍ର ସେ ସମୟରେ ସେ ସଙ୍ଗୀତ ଶିକ୍ଷା କରିବାର କୌଣସି ସୁଯୋଗ ପାଇ ନ ଥିଲେ । ସେ ମଧ୍ୟଇଂରାଜୀ ଶିକ୍ଷା ଲାଭ କରୁଥିବା ସମୟରେ ଆକାଶବାଣୀ କଟକ କେନ୍ଦ୍ର କାର୍ଯ୍ୟ କରିବା ଆରମ୍ଭ କଲା । ସବୁ ଲୁଚ ପଳାଇଯାଇ କଟକ ଆକାଶବାଣୀରେ ସ୍ୱର ପରୀକ୍ଷା ଦେଇ ସେ କୃତକାର୍ଯ୍ୟ ହୋଇଥିଲେ । ଏକ କଥାରେ କହିବାକୁ ଗଲେ ପ୍ରଥମେ କଣ୍ଠ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ପଛରେ ବିଧିବଦ୍ଧ ସଙ୍ଗୀତ ଶିକ୍ଷା କରିଥିଲେ ।

ଏହି ସମୟରେ ତତ୍କାଳୀନ ଓଡ଼ିଶା ରାଜ୍ୟପାଳ " ଆସଫ ଅଲ୍ଲୀଙ୍କ ରାଜଭବନରେ ତାଙ୍କୁ ସଙ୍ଗୀତ ଶୁଣାଇ ମୁଗ୍ଧ କରି ଦେଇଥିଲେ ଏବଂ ରାଜ୍ୟପାଳ ତାଙ୍କୁ ସରକାରୀ ସାହାଯ୍ୟରେ ସଙ୍ଗୀତ ଶିକ୍ଷା କରିବାକୁ ପ୍ରତିଶ୍ରୁତି ଦେଇଥିଲେ । ପ୍ରକୃତ ସରକାରୀ ସାହାଯ୍ୟ ତାଙ୍କୁ ମିଳିଲା ପୂର୍ବତନ ରାଷ୍ଟ୍ରପତି " ଡ଼ଃ ରାଜେନ୍ଦ୍ର ପ୍ରସାଦଙ୍କର ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଶ୍ରୀକ୍ଷେତ୍ରକୁ ଆସିବା ସମୟରେ । ସୁନନ୍ଦା ପଟ୍ଟନାୟକ ତାଙ୍କ ସଭାରେ ଗୀତ ଗାଇ ତାଙ୍କୁ ପ୍ରଭାବିତ କରିପାରିଥିଲେ । ଫଳରେ ସଙ୍ଗୀତ ଶିକ୍ଷା ପାଇଁ ତାଙ୍କୁ ରାଷ୍ଟ୍ରପତିଙ୍କ ପାଣ୍ଠିରୁ ମାସିକ ୫୦ ଟଙ୍କା ଅନୁଦାନ ସହ ରାଜ୍ୟପାଳଙ୍କ ପାଣ୍ଠିରୁ ମାସିକ ୨୫ ଟଙ୍କା ଅନୁଦାନ ମିଳିଥିଲା । ଏହାପରେ ସେ ୧୯୫୨ ଖ୍ରୀ.ରେ ସଙ୍ଗୀତ ଶିକ୍ଷା ନିମନ୍ତେ ଶାନ୍ତିନିକେତନ ଯାଇ ସେଠାରେ ପ୍ରଖ୍ୟାତ ଶାସ୍ତ୍ରୀୟ ସଙ୍ଗୀତ ଶିଳ୍ପୀ ଶ୍ରୀ ବିନାୟକରାଓ ପଟ୍ଟବର୍ଦ୍ଧନଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଅବଶ୍ୟ ପୂର୍ବରୁ କଟକଠାରେ ହିନ୍ଦୁସ୍ତାନୀ

ଶାସ୍ତ୍ରୀୟ କଣ୍ଠଶିଳ୍ପୀ ୬ କୁଣ୍ଡଳାଦ୍ଦ ନାରାୟଣ ରାଓଙ୍କ ନିକଟରୁ ଶାସ୍ତ୍ରୀୟ ଗାୟନର ମାର୍ଗ-ଦର୍ଶନ ଲଭ କରିପାରିଥିଲେ ।

ଗୁରୁ ଶ୍ରୀ ପଟ୍ଟବର୍ଦ୍ଧନଙ୍କ ନିକଟରେ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିବା ପରେ ୧୯୫୭ ରେ ସେ ପ୍ରଥମେ 'ସଦାରଙ୍ଗ ସଙ୍ଗୀତ ସମ୍ମିଳନୀ'ରେ ପ୍ରଥମ ସଙ୍ଗୀତ ପରି-ବେଷଣ କରି ରାଗ 'ଜୟନ୍ତ ମହ୍ଲାର' ଗାୟନ କରି ସମସ୍ତ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲେ ଏବଂ ଶାସ୍ତ୍ରୀୟ ସଙ୍ଗୀତ ରାଜ୍ୟରେ ନିଜକୁ ସ୍ୱତନ୍ତ୍ର ଭାବରେ ଚିହ୍ନିତ କରି ପାରିଥିଲେ ।

ଶାସ୍ତ୍ରୀୟ ସଙ୍ଗୀତ ପରିବେଷଣ କ୍ଷେତ୍ରରେ ସୁନନ୍ଦା ପଟ୍ଟନାୟକଙ୍କର ଏକ ସ୍ୱାତନ୍ତ୍ର୍ୟ ରହିଛି । ତାଙ୍କର ରାଗାଳାପ ଧ୍ରୁପଦ୍ ଶୈଳୀର ହେଲେ ମଧ୍ୟ ପାରମ୍ପରିକ ଢଙ୍ଗରୁ କିଛିଟା ଭିନ୍ନ । ଏଥିନେଇ ସେ କହନ୍ତି ଯେ ଗାୟକର ଏକ ନିଜସ୍ୱ ଗାୟନଶୈଳୀ ରହିବା ଉଚିତ । ମାତ୍ର ସେ ପରମ୍ପରାର ବାହାରକୁ ଯିବାକୁ ସ୍ୱାଧୀନ ହେବା ଅନୁଚିତ ।

ଶାସ୍ତ୍ରୀୟ ସଙ୍ଗୀତ ବ୍ୟତୀତ କୁମାରୀ ପଟ୍ଟନାୟକ ଖୁବ୍ ସୁନ୍ଦର 'ଭଜନ' ଏବଂ 'ତରାନା' ଗାଇପାରନ୍ତି । ସମସ୍ତ ଭଜନର ସ୍ୱର ସେ ନିଜେ ପ୍ରସ୍ତୁତ କରି ଗାୟନ କରନ୍ତି । ତାଙ୍କ ମତରେ 'ତରାନା'ର ଗତି ଓ ଛନ୍ଦ ଯେତେ ଶୀଘ୍ର ଦର୍ଶକ ମନ ମଧ୍ୟରେ ରେଖାପାତ କରେ, ଅନ୍ୟ ଗାୟନର ପ୍ରଭାବ ସେତେଟା ଶ୍ରୋତାର ପ୍ରାଣତନ୍ତ୍ରୀକୁ ଆନ୍ଦୋଳିତ କରି-ପାରେନା ।

ଶାସ୍ତ୍ରୀୟ ସଙ୍ଗୀତର ଏହି ଅନନ୍ୟ ସାଧିକା ନିଜ ଜୀବନକାଳ ମଧ୍ୟରେ ସୁବର୍ଣ୍ଣମୁଖୀ, ବିନାୟକ ଦୁର୍ଗା, ବିଷ୍ଣୁ ବେହାଗ, ଗୁର୍ଜରୀ ବିଲାସ ଇତ୍ୟାଦି ସାତୋଟି ନୂତନ ରାଗର ସ୍ରଷ୍ଟା ଭାବରେ ଚିରଦିନ ଅମର ହୋଇ ରହିବେ । ସଙ୍ଗୀତଗତପ୍ରାଣା ଏହି ଶିଳ୍ପୀ ଆଜି ବି ସଂସାରରେ ଏକା । ସଙ୍ଗୀତ ହିଁ ତାଙ୍କର ସବୁ କିଛି ଓ ସବୁ କେହି । ନିଜ ଜୀବନରେ ସେ ଅନେକ ସଙ୍ଗୀତାନୁଷ୍ଠାନରୁ ବହୁ ଭାବରେ ସମ୍ମାନିତ ହୋଇଥିଲେ ମଧ୍ୟ ୧୯୭୯ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି । ଓଡ଼ିଶା ସଙ୍ଗୀତ ଜଗତକୁ ତାଙ୍କର ବିଶେଷ ଅବଦାନ ନିମନ୍ତେ ସେ ଓଡ଼ିଶାର ପ୍ରତ୍ୟେକ କଣ୍ଠଶିଳ୍ପୀଙ୍କର ମାର୍ଗଦର୍ଶିକା ତଥା ଆଦର୍ଶ ରୂପେ ଚିରଦିନ ରହିଥିବେ ।

ଚଳିତ ବର୍ଷ ୧୯୯୨ ରେ ସୁନନ୍ଦା ଦେବୀ ନିଜର କଳାମୟ ସାଙ୍ଗୀତିକ ଜୀବନର ଅନବଦ୍ୟ ଅବଦାନ ପାଇଁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ସର୍ବୋଚ୍ଚ ସମ୍ମାନ ଉପେନ୍ଦ୍ରଭଞ୍ଜ ପୁରସ୍କାର ପାଇଅଛନ୍ତି । ଏହି ସର୍ବୋଚ୍ଚ ସମ୍ମାନ ପାଇବାରେ ସେ ଦ୍ୱିତୀୟ କଳାକାର । କାରଣ ଉପେନ୍ଦ୍ରଭଞ୍ଜ ପୁରସ୍କାରର ପ୍ରଚଳନ ୧୯୯୧ରୁ ହିଁ କରାଯାଇଅଛି ।

ପ୍ରତିଭାବାନ କଳାକାର ସମ୍ମାନ ବା ପୁରସ୍କାରକୁ ଅପେକ୍ଷା ନ କଲେ ମଧ୍ୟ ଏକାଡେମୀ ସେହି ମହୀୟସୀ ସ୍ରଷ୍ଟାଙ୍କୁ ସମ୍ବର୍ଦ୍ଧିତ କରି ଗୌରବାନ୍ୱିତ ।

●



# ସାମୁଏଲ ସାହୁ (ବାବୁ)

କଟକ ଚଣ୍ଡୀ, କଟକ ୧

ଜନ୍ମ—୧୯୧୮ ମାର୍ଚ୍ଚ ୨୨ ତାରିଖ

ଓଡ଼ିଶା ନାଟ୍ୟ ଜଗତର ଅମ୍ଳାନ ଶିଳ୍ପୀ ଶ୍ରୀ ସାମୁଏଲ ସାହୁ (ବାବୁ) କଟକସ୍ଥ କଟକଚଣ୍ଡୀ ବଜାରରେ ଏକ ରକ୍ଷଣଶୀଳ ଖ୍ରୀଷ୍ଟିୟାନ୍ ପରିବାରରେ ଜନ୍ମଗ୍ରହଣ କରନ୍ତି ଇଂରାଜୀ ୧୯୧୮ ମସିହା ମାର୍ଚ୍ଚ ମାସ ୨୨ ତାରିଖରେ । ପିତାଙ୍କ ନାମ ୰ ପ୍ରବୋଧ ଚନ୍ଦ୍ର ସାହୁ ଏବଂ ମାତାଙ୍କ ନାମ ୰ ଧନକେଶୀ ସାହୁ । ଶୈଶବରୁ ପିତୃମାତୃହୀନ ହୋଇ ଶ୍ରୀଯୁକ୍ତ ସାହୁ ନିଜର ଅବିବାହିତ ପିଉସୀଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ ।

ତାଙ୍କର ପ୍ରାରମ୍ଭିକ ଶିକ୍ଷା କଟକର ମିଶନ୍ ସ୍କୁଲ (ଏବେକାର ଖ୍ରୀଷ୍ଟ କଲେଜିଏଟ୍)ରେ ସମାପ୍ତ କରି ସେ କଟକର ସ୍କୁଲ ଅଫ୍ ଇଞ୍ଜିନିୟରିଂରେ ପାଞ୍ଚବର୍ଷ ଅଧ୍ୟୟନ କରି ୧୯୩୦ ମସିହାରେ ସେଠାରୁ ଇଣ୍ଡଷ୍ଟ୍ରିୟାଲ୍ ଡିପ୍ଲୋମା ଲାଭ କରନ୍ତି । ତତ୍ପରେ ଚକ୍ରଧରପୁରସ୍ଥ ଗ୍ରେଟନାଗପୁର ଇଣ୍ଡଷ୍ଟ୍ରିରେ ଯୋଗଦାନ କରିବାର ଅଳ୍ପ କେତେମାସ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା କାରଣରୁ ଉକ୍ତ ସଂସ୍ଥା ବନ୍ଦ ହୋଇଗଲା । ତତ୍ପରେ ସେ କଟକ ପ୍ରତ୍ୟାବର୍ତ୍ତନ କରି, ସେହି ସମୟରେ ସ୍ୱର୍ଗତ କାଳୀଚରଣ ପଟ୍ଟନାୟକଙ୍କ ଦ୍ୱାରା ଆରମ୍ଭ ହୋଇଥିବା 'ଓଡ଼ିଶା ଥିଏଟର'ରେ ଯୋଗଦାନ କରିଥିଲେ ମାସିକ ଆଠ ଟଙ୍କା ବେତନରେ । ୧୯୪୪ ମସିହାରେ ଗୁରୁ ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ ସହ ମନାନ୍ତର ହେବାରୁ ସେ ତାଙ୍କର ଅନ୍ୟାନ୍ୟ ବନ୍ଧୁମାନଙ୍କ ସହ ମିଶି ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ଥିଏଟର୍ କମ୍ପାନୀ ଗଠନ କଲେ ଏବଂ ନୂତନ ନାଟ୍ୟକାରମାନଙ୍କୁ ଉତ୍ସାହିତ କରି ୧୯୬୦ ମସିହା ପର୍ଯ୍ୟନ୍ତ ଅନେକ ନାଟକ ନିଜସ୍ୱ ନିର୍ଦ୍ଦେଶନାରେ ମଞ୍ଚସ୍ଥ କରାଇବାର ଗୌରବ ଲାଭ କରିଥିଲେ । ଆଧୁନିକ ପରିବେଷଣ ଶୈଳୀର ଅଭାବ ହେତୁ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍ ଥିଏଟର୍ କମ୍ପାନୀ ସବୁଦିନ ପାଇଁ ବନ୍ଦ ହୋଇଗଲା ।

ତତ୍ପରେ ୧୯୬୦ ମସିହାଠାରୁ ୧୯୮୫ ମସିହା ପର୍ଯ୍ୟନ୍ତ ସ୍ୱାଧୀନ ଭାବରେ ସେ ଅନେକ ନାଟକ ନିଜସ୍ୱ ନିର୍ଦ୍ଦେଶନାରେ ବିଭିନ୍ନ ଅପେରା ପାର୍ଟି ଜରିଆରେ ମହାସ୍ଥଳ

ଏବଂ ଗ୍ରାମାଞ୍ଚଳରେ ଅଭିନୟ କରାଇ ଅଜସ୍ର ପ୍ରଶଂସାର ଅଧିକାରୀ ହୋଇଥିଲେ । ଏତଦ୍‌ବ୍ୟତୀତ ୧୯୬୯ ମସିହାଠାରୁ ଅଦ୍ୟାବଧି ଅନେକ ଚଳଚ୍ଚିତ୍ର, ବେତାର ନାଟକ ଏବଂ ଅଧୁନା ଦୂରଦର୍ଶନ ନାଟକରେ ଅଂଶ ଗ୍ରହଣ କରିଆସୁଛନ୍ତି ।

ଏହି ଅନନ୍ୟ ପ୍ରତିଭାସମ୍ପନ୍ନ କଳାକାର ନିଜ ଜୀବନର ବିଭିନ୍ନ ସମୟରେ ଅନେକ ଭାବରେ ନିଜର କୃତିତ୍ୱ ପାଇଁ ସମ୍ମାନିତ ତଥା ପୁରସ୍କୃତ । ସେମଧ୍ୟରୁ ୧୯୫୮ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ବିଷୁବ ମିଳନରେ ପୁରସ୍କୃତ । ୧୯୬୨ ମସିହାରେ ଭାରତର ପ୍ରଥମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ଓଡ଼ିଶାର ସର୍ବଶ୍ରେଷ୍ଠ ଅଭିନେତା ଭାବରେ ପୁରସ୍କୃତ । ୧୯୭୧ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଲାଭ ସଙ୍ଗେ ସଙ୍ଗେ ୧୯୭୩ ମସିହାରେ ଓଡ଼ିଶା ସରକାରଙ୍କଠାରୁ ସାଂସ୍କୃତିକ ବିଭାଗ ପୁରସ୍କାର ଏବଂ ୧୯୭୮ ମସିହାରେ ରଙ୍ଗମଞ୍ଚରେ ନୂତନ ଶୈଳୀର ପ୍ରବର୍ତ୍ତକ ଭାବରେ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ସମ୍ମାନ ଏବଂ ତାମ୍ରଫଳକ ଲାଭ କରିଥିଲେ । ଏହାପରେ ସେ ୧୯୮୨ ମସିହାରେ ଓଡ଼ିଶା ଚଳଚ୍ଚିତ୍ର ସାମ୍ବାଦିକ ସଂଘ ପକ୍ଷରୁ ମୋହନ ସୁନ୍ଦରଦେବ ଗୋସ୍ୱାମୀ ପୁରସ୍କାର ଲାଭ କରିବା ସହ ୧୯୮୪ ମସିହାରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କଠାରୁ 'ଜୟଦେବ ପୁରସ୍କାର' ପ୍ରାପ୍ତ ହୋଇଥିଲେ । ଏଥିସହ ୧୯୮୭ ମସିହାରେ ଓଡ଼ିଶାର ବୃହତ୍ତ ସାଂସ୍କୃତିକ ଅନୁଷ୍ଠାନ 'ନୀଳଶୈଳ' ପକ୍ଷରୁ ପ୍ରଶଂସାପତ୍ର ଲାଭ କରିଥିଲେ । ୧୯୯୦ ମସିହାରେ ଓଡ଼ିଶା ସିନେ ଟେକ୍ନିସିଆନ ଆସୋସିଏସନ୍ ପକ୍ଷରୁ ଓଡ଼ିଆ ଚଳଚ୍ଚିତ୍ରରେ ସ୍ଥାୟୀ ଅବଦାନ ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କଠାରୁ ପ୍ରଶଂସାପତ୍ର ଏବଂ ଉପହାର ଲାଭ କରିବା ସହ ୧୯୯୧ ମସିହାରେ ଓଡ଼ିଶାର ସଙ୍ଗୀତ ଏବଂ ନାଟ୍ୟକଳା କ୍ଷେତ୍ରରେ ଅନବଦ୍ୟ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ଶ୍ରେଷ୍ଠ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ପୁରସ୍କାର ପାଇଅଛନ୍ତି ।

୧୯୯୦ ମସିହାରେ ଅଭିନୟ ଜୀବନରେ ଅର୍ଦ୍ଧଶତାବ୍ଦୀ ପୂର୍ତ୍ତି ହେବା ପରେ ମଧ୍ୟ ଏହି ଅଦ୍ୱିତୀୟ କଳାର ପୂଜାରୀ ଅଦ୍ୟାବଧି କଳା ସେବାରେ ନିଜକୁ ଉତ୍ସର୍ଗ କରି ଚାଲିଛନ୍ତି ।

ଅଧୁନା ଓଡ଼ିଶା ସଂସ୍କୃତି ବିଭାଗ ତରଫରୁ ଅର୍ଣ୍ଣପୂର୍ଣ୍ଣା ବି' ଗ୍ରୁପ୍‌ର ପୁନରୁଦ୍ଧାର କରାଯାଇ କଟକ କଳା ବିକାଶ କେନ୍ଦ୍ରଠାରେ ଆରମ୍ଭ ହୋଇଥିବା ନାଟକ ପ୍ରଦର୍ଶନର ସେ ଉପଦେଷ୍ଟା । ଅଭିନୟକୁ ସାମାଜିକ ଜୀବନ ସହିତ ଜଡ଼ିତ କରିବାର ସଙ୍କଳ୍ପ ନେଇ କଳାକାରକୁ ନିପୁଣ ବାସ୍ତବ ଅଭିନୟ କରିବାର ଦିଗ୍‌ଦର୍ଶନ ତାଙ୍କୁ ଓଡ଼ିଶାର ଅଭିନୟ ଜଗତରେ ସଦା ଅମର କରି ରଖିବ ।

●

# ଗୁରୁ ଶ୍ରୀ ପଙ୍କଜ ଚରଣ ଦାସ

## ପୁରୀ



**ଜନ୍ମ—୧୯୨୫ ମାର୍ଚ୍ଚ ୧୭ ତାରିଖ**

ଓଡ଼ିଶୀ ନୃତ୍ୟଶୈଳୀର ପ୍ରଧାନ ପ୍ରବର୍ତ୍ତକ, ଗୁରୁମାନଙ୍କର ଗୁରୁ, ଗୁରୁ ଶ୍ରୀ ପଙ୍କଜ ଚରଣ ଦାସ ୧୯୨୫ ମସିହାରେ ପୁରୀ ସହରରେ ଏକ ମାହାରୀ (ଶ୍ରୀମନ୍ଦିରର ପାରମ୍ପରିକ ନୃତ୍ୟକାରୀ) ପରିବାରରେ ଜନ୍ମଗ୍ରହଣ କରିଥିଲେ । ନିଜ ଜୀବନର ପ୍ରାରମ୍ଭିକ ନୃତ୍ୟ ଶିକ୍ଷା ସେ ନିଜର ଖୁଡ଼ୀ ଶ୍ରୀମତୀ ରତ୍ନପ୍ରଭା ମାହାରୀଙ୍କ ନିକଟରୁ ଆରମ୍ଭ କରି ପରେ ଓଡ଼ିଶାରେ ରାସଲୀଳା ଆନ୍ଦୋଳନର ଦୁଇ ପୁରୋଧା ସ୍ୱର୍ଗତ ରଙ୍ଗନାଥ ଦେବ ଗୋସ୍ୱାମୀ ଏବଂ ସ୍ୱର୍ଗତ ଭିକାରୀ ଚରଣ ଦଳାଇଙ୍କ ନିକଟରେ ଶିକ୍ଷାଲାଭ କରି ନୃତ୍ୟରେ ପ୍ରବୀଣତା ଲାଭ କରିଥିଲେ । ୧୯୭୨ ମସିହାରେ ସେ ଆହ୍ଲାବାଦର 'ପ୍ରୟାଗ ସଙ୍ଗୀତ ସମିତି' ନିକଟରୁ "ସଙ୍ଗୀତ ପ୍ରଭାକର" ଡିଗ୍ରୀ ଲାଭ କରିଥିଲେ ।

୧୯୪୨ ମସିହାଠାରୁ ୧୯୪୮ ମସିହା ପର୍ଯ୍ୟନ୍ତ ସେ ଅନ୍ନପୂର୍ଣ୍ଣା ଥିଏଟର, କଟକଠାରେ ନୃତ୍ୟ ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରିଥିଲେ । ଏହି ସମୟରେ ଗୁରୁ କେଳୁ ଚରଣ ମହାପାତ୍ର, ଶ୍ରୀମତୀ ଲକ୍ଷ୍ମୀପ୍ରିୟା ଦେବୀ ଏବଂ ଶ୍ରୀ ଭଗବାନ ସାହୁ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଆଜିର ସମସ୍ତ ପ୍ରସିଦ୍ଧ ଓଡ଼ିଶୀ ନୃତ୍ୟ ଗୁରୁମାନେ ଏକ ସମୟରେ ତାଙ୍କର ଶିଷ୍ୟ ଥିଲେ । ସୁପ୍ରସିଦ୍ଧ ନୃତ୍ୟାଙ୍ଗନା ଯାମିନୀ କୃଷ୍ଣମୂର୍ତ୍ତି, ଶୋଭା ଦେବୀ, ସୁମତି କୌଶଲ୍, ସବିତା ମେହେଣ୍ଟା, ସଂଯୁକ୍ତା ପାଣିଗ୍ରାହୀ, ଡଃ ପ୍ରିୟମ୍ବଦା ମହାନ୍ତି, ଝୁମ୍‌ଝୁମ୍ ମହାନ୍ତି ଏବଂ ଡଃ ମିନତି ମିଶ୍ର ଏମାନେ ସମସ୍ତେ ଗୁରୁ ପଙ୍କଜ ଚରଣ ଦାସଙ୍କର କୃତୀ ଶିଷ୍ୟା ।

ଦୀର୍ଘ କୋଡ଼ିଏ ବର୍ଷକାଳ ସେ ବରିଷ୍ଠ ପ୍ରାଧ୍ୟାପକ ଭାବରେ ଓଡ଼ିଶା ସରକାରଙ୍କର "ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ"ରେ କାର୍ଯ୍ୟ କରିଥିଲେ ଏବଂ ପରେ ଉକ୍ତ ଅନୁଷ୍ଠାନର ପ୍ରଧାନ ପ୍ରାଧ୍ୟାପକ ଭାବରେ କାର୍ଯ୍ୟ କରିଥିଲେ । ସେଠାରୁ ୧୯୮୪ ମସିହାରେ ଅବସର ଗ୍ରହଣ କରିବା ପରେ ସେ ନିଜେ ନିଜସ୍ୱ ଅନୁଷ୍ଠାନ "ଉଡ୍ର ନୃତ୍ୟ ପଙ୍କଜ" ପୁରୀଠାରେ ସ୍ଥାପନ କରି ତାହାର ଶାଖା କଟକ ଏବଂ ଭୁବନେଶ୍ୱରଠାରେ ଖୋଲିଥିଲେ । ଅନେକ-ବାର ସେ ବିଦେଶ ଭ୍ରମଣ କରି ଜାପାନ, ଶ୍ରୀଲଙ୍କା, ଲେବାନନ୍ ଏବଂ ଇଉରୋପର ଅନେକ ଦେଶ ଭ୍ରମଣ କରିଥିଲେ ।

ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ନିଜର ଅସାମାନ୍ୟ କୃତିତ୍ୱ ପାଇଁ ସେ ୧୯୭୯ ମସିହାରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଲାଭ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ମଧ୍ୟ ପୁରସ୍କୃତ ହୋଇଥିଲେ ।

ଅଧୁନା ସେ ଶ୍ରୀମନ୍ଦିରରେ ପ୍ରଚଳିତ ମାହାରୀ ନୃତ୍ୟଶୈଳୀର ଗବେଷଣା ଆରମ୍ଭ କରି ଏହି ନୃତ୍ୟଶୈଳୀ କିଭଳି ସହଜ ଭାବରେ ସାଧାରଣ ଦର୍ଶକମାନଙ୍କ ସମ୍ମୁଖରେ ଉପସ୍ଥାପନ କରାଯାଇପାରିବ ତହିଁରେ ଚେଷ୍ଟାରତ ।

୧୯୭୬ ମସିହାଠାରୁ ୧୯୮୯ ମସିହା ପର୍ଯ୍ୟନ୍ତ ସେ ବିହାରର ଏକମାତ୍ର ଶାସ୍ତ୍ରୀୟ ନୃତ୍ୟ ଶିକ୍ଷା ଦେଉଥିବା ଅନୁଷ୍ଠାନ "ଭାରତୀୟ ନୃତ୍ୟ କଳା ମନ୍ଦିର" ପାଟନାର ଓଡ଼ିଶୀ ନୃତ୍ୟ ବିଭାଗର ପରିଚାଳନା ମୁଖ୍ୟ ଏବଂ ପ୍ରାଧ୍ୟାପକ ରୂପେ କାର୍ଯ୍ୟ କରିଥିଲେ ।

ଶ୍ରୀ ଦାସ ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀ ଜଗନ୍ନାଥ' ଏବଂ 'କବିସମ୍ରାଟ ଉପେନ୍ଦ୍ର ଭଞ୍ଜ'ର ନୃତ୍ୟ ନିର୍ଦ୍ଦେଶକ ଏବଂ ଭାରତ ସରକାରଙ୍କ ସାଂସ୍କୃତିକ ଅନୁଦାନ ମଣ୍ଡଳୀର ନିଯୁକ୍ତି ସଦସ୍ୟ । ୧୯୮୬ ମସିହାରେ ନୃତ୍ୟ କ୍ଷେତ୍ରରେ ବିଶେଷ ଅବଦାନ ନିମନ୍ତେ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରନ୍ତି ଏବଂ ୧୯୮୪ ମସିହାରେ ଲାଭ କରନ୍ତି "ସୁର ସିଙ୍ଗାର ପରିଷଦ" ବମ୍ବେ କର୍ତ୍ତୃକ ପ୍ରଦତ୍ତ "ସାରଙ୍ଗଦେବ ଫେଲୋସିପ୍" । ଏତଦ୍‌ବ୍ୟତୀତ କଟକର ସ୍ୱନାମଧନ୍ୟ ସାଂସ୍କୃତିକ ଅନୁଷ୍ଠାନ "କଳିଙ୍ଗ ଭାରତୀ" ତରଫରୁ ଲାଭ କରନ୍ତି "ଉତ୍କଳ ନାଟ୍ୟ ଭୂଷଣ" ପଦବୀ ।

ଅତ୍ୟନ୍ତ ପ୍ରତିଭାସମ୍ପନ୍ନ ଏହି କଳାକାର ଅଧୁନା ଉତ୍କଳ ବିଶ୍ୱବିଦ୍ୟାଳୟର ପରୀକ୍ଷକ ମଣ୍ଡଳୀର ଜଣେ ସଦସ୍ୟ ହେବା ସହ 'ପ୍ରୟାଗ ସଙ୍ଗୀତ ସମିତି' ଆଲ୍ଲାହାବାଦର ଜଣେ ପରୀକ୍ଷକ ତଥା 'ଅଖିଳ ଭାରତ ଗାନ୍ଧର୍ବ ମହାବିଦ୍ୟାଳୟ' ବମ୍ବେର ଅନ୍ୟତମ ସଦସ୍ୟ ଓ ଓଡ଼ିଶା ଶିକ୍ଷାବୋର୍ଡର ଜଣେ ପରୀକ୍ଷକ ସଦସ୍ୟ ରୂପେ କାର୍ଯ୍ୟରତ ।

ନିଜର ଅସାମାନ୍ୟ କୃତିତ୍ୱ ପାଇଁ ଶ୍ରୀ ଦାସ ୧୯୮୭-୮୮ ଏବଂ ୧୯୮୮-୮୯ ବର୍ଷ ନିମନ୍ତେ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଦ୍ୱାରା ଫେଲୋସିପ୍ ପ୍ରାପ୍ତ ହୋଇଅଛନ୍ତି । ନୃତ୍ୟ କ୍ଷେତ୍ରରେ ତାଙ୍କ ସୃଷ୍ଟ ନୂତନ ପ୍ରକାଶଭଙ୍ଗୀ ଏବେ ତାଙ୍କର ଅନ୍ୟ ଶିଷ୍ୟମାନଙ୍କ ଦ୍ୱାରା ଆଦୃତ ଓ ଅନୁସୃତ । ବିଭିନ୍ନ ନୃତ୍ୟନାଟିକାର ଏକ ସଫଳ କୋରିଓଗ୍ରାଫର୍ ହିସାବରେ ସେ ବିଶେଷ ଜଣାଶୁଣା ।

ସମ୍ପ୍ରତି ଓଡ଼ିଶା ସରକାରଙ୍କର ସଂସ୍କୃତି ପରିଷଦ ଦ୍ୱାରା ୧୯୯୧ ମସିହା ନିମନ୍ତେ ଗୁରୁ ଶ୍ରୀ ଦାସ ରାଜ୍ୟପାଳଙ୍କ ତାମ୍ରଫଳକ ପାଇବା ନିମନ୍ତେ ଯୋଗ୍ୟ ବିବେଚିତ ହୋଇଅଛନ୍ତି ।

## ⸰ ତାରିଣୀ ଚରଣ ପାତ୍ର
### ପିତ୍ତଳ, ଗଞ୍ଜାମ

(୧୯୦୧—୧୯୭୯)



ଦକ୍ଷିଣ ଓଡ଼ିଶାର ବରେଣ୍ୟ ସଙ୍ଗୀତାଚାର୍ଯ୍ୟ ସ୍ୱର୍ଗତ ତାରିଣୀ ଚରଣ ପାତ୍ର ୧୯୦୧ ମସିହାରେ ଗଞ୍ଜାମ ଜିଲ୍ଲାର ପିତ୍ତଳ ଗ୍ରାମଠାରେ ଏକ ଅତ୍ୟନ୍ତ ସ୍ୱଚ୍ଛଳ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ୰ କମାଲ ଗୋରେଣ୍ଣା ଏବଂ ମାତାଙ୍କ ନାମ ଥିଲା କମାଲା ପାର୍ବତୀ (ପାଣ୍ଟମ୍ମା) । ତାଙ୍କର ସାଧାରଣ ଶିକ୍ଷା ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ହୋଇଥିଲେ ମଧ୍ୟ ସ୍ୱୀୟ ଚେଷ୍ଟା ବଳରେ ସେ ହିନ୍ଦୀ, ଇଂରାଜୀ ଏବଂ ବଙ୍ଗଳା ପ୍ରଭୃତି ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ନିଜ ପୁତ୍ରର ସଙ୍ଗୀତ ପ୍ରତି ଅତ୍ୟଧିକ ମମତା ଦେଖି ତାଙ୍କ ପିତା ସେ ଦିଗରେ ଉନ୍ନତି ନିମନ୍ତେ ତାଙ୍କୁ ସବୁ ପ୍ରକାରର ସୁଯୋଗ ଯୋଗାଇ ଦେଇଥିଲେ । ସେ ପ୍ରଥମେ ହାରମୋନିୟମ୍ ଏବଂ ଶାସ୍ତ୍ରୀୟ ସଙ୍ଗୀତର ଶିକ୍ଷା ନିଜ ଅଗ୍ରଜ ୰ କମାଲ ଆଡ଼ିକା ପାତ୍ରଙ୍କ ନିକଟରୁ ପ୍ରାପ୍ତ ହୋଇଥିଲେ । ଏଥିମଧ୍ୟରେ ସେ ନିଜର ବନ୍ଧୁମାନଙ୍କ ସହାୟତାରେ ଏକ ନାଟକଦଳ ଗଠନ କରି ଅନେକ ନାଟକ ମଞ୍ଚସ୍ଥ କରାଇଥିଲେ । ତନ୍ମଧ୍ୟରେ ସ୍ୱରଚିତ "ପାଦୁକା ପଟ୍ଟାଭିଷେକ" ନାଟକର ମଞ୍ଚସ୍ଥ ବିଶେଷ ପ୍ରଣିଧାନଯୋଗ୍ୟ । ସୂକ୍ଷ୍ମ ଏବଂ କଳାପୂର୍ଣ୍ଣ ଜୀବନ ନେଇ ସେ କର୍ଣ୍ଣାଟକ ସଙ୍ଗୀତ ଶୈଳୀ ଶିକ୍ଷା କରିବା ନିମନ୍ତେ ବିଜୟନଗରମ୍ ଏବଂ ରାଜମହେନ୍ଦ୍ରୀଠାରେ ଦୀର୍ଘକାଳ ଅବସ୍ଥାନ କରିଥିଲେ । ଏହି ସମୟରେ ସେ ବୀଣା, ପଖଉଜ, ତାନ୍ ଓ ବଂଶୀ ସହ ବେହେଲା ବାଦନ ମଧ୍ୟ ଶିକ୍ଷା କରିଥିଲେ । ଏତଦ୍‌ବ୍ୟତୀତ ହିନ୍ଦୁସ୍ଥାନୀ ପଦ୍ଧତିର ସଙ୍ଗୀତ ଶିକ୍ଷା ଉଦ୍ଦେଶ୍ୟରେ ସେ ଆଲହାବାଦ ଏବଂ ଲକ୍ଷ୍ନୌଠାରେ କିଛି ସମୟ ବ୍ୟତୀତ କରିଥିଲେ ।

ପରବର୍ତ୍ତୀ ଜୀବନରେ ସେ ବୈଷ୍ଣବ ଧର୍ମ ପ୍ରତି ଆକୃଷ୍ଟ ହୋଇ ୧୯୨୯ ମସିହାରେ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ ଏବଂ ପିତ୍ତଳ ତଥା ନିକଟବର୍ତ୍ତୀ ଗ୍ରାମମାନଙ୍କରେ କୀର୍ତ୍ତନ ଦଳମାନ ଗଠନ କରିଥିଲେ । ନବୀୟା କୀର୍ତ୍ତନର ପ୍ରବର୍ତ୍ତକ ଭାବରେ ସେ ଦକ୍ଷିଣ ଓଡ଼ିଶାରେ ଅଦ୍ୟାବଧି ପ୍ରାତଃସ୍ମରଣୀୟ । ଏହି ସମୟରେ ⸰ ଧରାକୋଟ ରାଜା ଏବଂ ଅନ୍ୟମାନଙ୍କ ସହଯୋଗରେ ସେ "କିଶୋର ଚନ୍ଦ୍ର ନାଟ୍ୟସଂଘ" ପ୍ରତିଷ୍ଠା କରାଇଥିଲେ । ୧୯୩୬ ଖ୍ରୀଷ୍ଟାବ୍ଦରେ ସେ ବ୍ରହ୍ମଦେଶ (ମିଆଁମାର୍)କୁ ଯାଇ ସେଠାରେ ନାମ ସଂକୀର୍ତ୍ତନ ଏବଂ ବୀଣା ବଜାଇ ଶ୍ରୋତାମାନଙ୍କୁ ମୁଗ୍ଧ କରିଥିଲେ ।

ଶେଷରେ ୧୯୪୦ ମସିହାରେ ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରି ସ୍ୱର୍ଗୀୟ ରାମଚନ୍ଦ୍ର ଦୋରା, ମୋହନ ମହାପାତ୍ର, ସୋମନାଥ ମିଶ୍ର, ଦାମୋଦର ମିଶ୍ର, ଗଙ୍ଗାଧର ଦାସ ଏବଂ ସଙ୍ଗୀତ ଶିକ୍ଷକ ୰ କଣ୍ଡପଲ୍ଲୀ କାମେସ୍ୱା ଆଚାର୍ଯ୍ୟ, ସୁମୁନାଥ ସାହୁ ଏବଂ ପୂର୍ବତନ ବିଧାନସଭା ସଦସ୍ୟ ୰ ଜଗନ୍ନାଥ ମିଶ୍ରଙ୍କର ପ୍ରେରଣା ତଥା ଅଧ୍ୟକ୍ଷତାରେ "ଗାନ୍ଧିଜୀ ସଙ୍ଗୀତ କଳାମନ୍ଦିର" ପ୍ରତିଷ୍ଠା କରିଥିଲେ, ଯାହା ଅଦ୍ୟାବଧି ଦକ୍ଷିଣ ଓଡ଼ିଶାରେ ଓଡ଼ିଶୀ ସଙ୍ଗୀତର ପ୍ରଚାର ଓ ପ୍ରସାରରେ ବ୍ୟସ୍ତ ରହିଛି । ଏହି ଦିଗରେ ସେ ୰ ଲିଙ୍ଗରାଜ ପାଣିଗ୍ରାହି, ୰ ରାଜା ସାହେବ ଖଲ୍ଲିକୋଟ ରାମଚନ୍ଦ୍ର ମର୍ଦ୍ଦରାଜ ଏବଂ ପୂର୍ବତନ ମୁଖ୍ୟମନ୍ତ୍ରୀ ୰ ସଦାଶିବ ତ୍ରିପାଠୀଙ୍କ ନିକଟରୁ ଅନେକ ଅନୁକମ୍ପା ପ୍ରାପ୍ତ ହୋଇଥିଲେ । ୧୯୩୬ ମସିହାଠାରୁ ଗାନ୍ଧିଜୀ ଆନ୍ଦୋଳନରେ ଯୋଗ ଦେଇ ସେ ଖଦଡ଼ ପିନ୍ଧିବା ଆରମ୍ଭ କରିଥିଲେ ।

କବି ଭାବରେ ଶ୍ରୀ ରାଧାକୃଷ୍ଣଙ୍କର ଭକ୍ତିସଙ୍ଗୀତ ରଚନାରେ ଗୋପାଳକୃଷ୍ଣ, ବେଣୁଧର ଏବଂ ବନମାଳୀଙ୍କ ପରେ ତାଙ୍କର ସ୍ଥାନ । ଚମ୍ପୂ ସ୍ୱରଲିପି ପ୍ରଣୟନରେ ସେ ଅନ୍ୟତମ ଅଗ୍ରଣୀ ଥିଲେ । ହିନ୍ଦୁସ୍ଥାନୀ ଏବଂ କର୍ଣ୍ଣାଟକୀ ପଦ୍ଧତିର ସମନ୍ୱୟରେ ନୂତନ ଓଡ଼ିଶୀ ରାଗର ସ୍ରଷ୍ଟା ଭାବରେ ମଧ୍ୟ ସେ ସୁପରିଚିତ । ଅସୀମ ଜ୍ଞାନର ଗନ୍ତାଘର ୰ ପାତ୍ର ତାଙ୍କର ଶିଷ୍ୟମାନଙ୍କ ମଧ୍ୟରେ "ଅଷ୍ଟାବଧାନୀ ଗୁରୁ" ଭାବରେ ସୁବିଖ୍ୟାତ ।

୰ ତାରିଣୀ ଚରଣ ଦୀର୍ଘଦିନ ଆକାଶବାଣୀ କଟକରେ କଳାକାର ଏବଂ ପରୀକ୍ଷକ ଭାବରେ କାର୍ଯ୍ୟ କରିଥିଲେ । ୧୯୪୭ ସାଲରେ କଲିକତା ନଗରର ଟିଟାଗଡ଼ଠାରେ ଶାସ୍ତ୍ରୀୟ ରାଗ ମେଘମଲ୍ଲାର ଗାନ କରି ବର୍ଷା କରାଇ ପାରିଥିବା ବିଷୟ ଅଦ୍ୟାବଧି ଜନଶ୍ରୁତିରେ ରହିଅଛି । ଏତଦ୍‌ବ୍ୟତୀତ ସେ ମାନ୍ଦ୍ରାଜରେ ଅବସ୍ଥାନ କାଳରେ "ନାରଦ ସଂସାରମ୍" ତାମିଲ୍ ଚଳଚ୍ଚିତ୍ରରେ ଅଭିନୟ ମଧ୍ୟ କରିଥିଲେ । ଶେଷରେ ୧୯୭୨ ମସିହାରେ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ତରଫରୁ ଶ୍ରେଷ୍ଠ ସଂଗୀତଜ୍ଞ ଭାବରେ ପୁରସ୍କୃତ ହୋଇଅଛନ୍ତି । ତାଙ୍କ ରଚିତ ସଙ୍ଗୀତ ଗ୍ରନ୍ଥମାନଙ୍କ ମଧ୍ୟରେ ଓଡ଼ିଶୀ ସଙ୍ଗୀତ ପ୍ରକାଶ, ଗୀତ ଗୋବିନ୍ଦର ସ୍ୱରଲିପି, ରାଗ-ଧ୍ୟାନମାଳିକା, ସଙ୍ଗୀତ ନିବନ୍ଧମାଳା, ଉତ୍କଳ ସଙ୍ଗୀତ ଇତିହାସ, ଭାରତ ସଙ୍ଗୀତ ଇତିହାସ ଇତ୍ୟାଦି ପ୍ରଣିଧାନଯୋଗ୍ୟ । ଏଥିସହି ଓଡ଼ିଶୀ ସଂଗୀତ ପ୍ରଥମ ବର୍ଷଠାରୁ ଷଷ୍ଠବର୍ଷ ପର୍ଯ୍ୟନ୍ତ "ଆମ ସଂଗୀତ ଶିକ୍ଷା" ଏବଂ ସ୍ୱରଲିପି ସହ ପାଠ୍ୟକ୍ରମ ପ୍ରସ୍ତୁତ କରି 'ସଙ୍ଗୀତ ଆଲୋକ', 'ସଂଗୀତ କଳାଭୂଷଣ', 'ସଙ୍ଗୀତ କଳା ପ୍ରବୀଣ' ଇତ୍ୟାଦି ଉପାଧିମାନ ମଧ୍ୟ ସୃଷ୍ଟି କରିଥିଲେ । ଏହି ମହାନ୍ କଳାକାରଙ୍କର ଅନେକ ଭଜନ, ଜଣାଣ ଓ ପଲ୍ଲୀସ୍ୱରର ଅନେକ ଗୀତ ପାଣ୍ଡୁଲିପି ଅବସ୍ଥାରେ ଏବେ ବି ଅପ୍ରକାଶିତ ହୋଇ ରହିଛି ।

୧୯୭୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚମାସ ୪ ତାରିଖରେ ଓଡ଼ିଶୀ ସଙ୍ଗୀତ ଜଗତର ଏହି ଅନିର୍ବାଣ ଜ୍ୟୋତିଷ୍କ ମର ଦେହ ତ୍ୟାଗ କରି ସେହି ସଙ୍ଗୀତ ଆକାଶରେ ମିଳାଇଗଲେ । ତାଙ୍କର ଅମର ଆତ୍ମା ପରବର୍ତ୍ତୀ କାଳର ସଙ୍ଗୀତଜ୍ଞମାନଙ୍କୁ ଅକୁଣ୍ଠ ପ୍ରେରଣା ଦେଇ ଚାଲିଥିବ ଏହା ହିଁ ଆଶା ଓ ବିଶ୍ୱାସ ।

●



## ରାମଚନ୍ଦ୍ର ମାଣିଆ

ରେଙ୍ଗାଳ, ପୁରୀ

(୧୯୦୬—୧୯୬୮)

ଓଡ଼ିଆ ନାଟ୍ୟକଳା ଓ ରଙ୍ଗମଞ୍ଚର କ୍ରମବିକାଶ ଦିଗରେ ଯେଉଁମାନେ ଜୀବନକୁ ଉତ୍ସର୍ଗ କରିଥିଲେ, ସ୍ୱର୍ଗତ 'ମାଷ୍ଟର ମାଣିଆ' ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଏକାଧାରରେ ଜଣେ ନାଟ୍ୟ ଶିକ୍ଷକ, ଗାୟକ, ବାଦକ ଓ ନୃତ୍ୟବିତ୍ତ ଥିଲେ । 'ରାଧାକୃଷ୍ଣ ଥିଏଟର', 'ଆର୍ଟ ଥିଏଟରସ୍' ଓ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଥିଏଟରରେ ଦୀର୍ଘ ପଚିଶ ବର୍ଷ ସେ ନିରବଚ୍ଛିନ୍ନ ଭାବରେ କାର୍ଯ୍ୟ କରିଥିଲେ ।

ସେ ପୁରୀଜିଲ୍ଲା ଡେଲଙ୍ଗ ଥାନା ଅନ୍ତର୍ଗତ ରେଙ୍ଗାଲ ଗ୍ରାମରେ ୧୯୦୬ ମସିହା ଅଗଷ୍ଟ ମାସରେ ଜନ୍ମଗ୍ରହଣ କରିଥିଲେ । ପିତାମାତାଙ୍କର ଆଠଟି ସନ୍ତାନଙ୍କ ମଧ୍ୟରେ ସର୍ବକନିଷ୍ଠ ଏବଂ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିବାରୁ ତାଙ୍କର ଶିକ୍ଷା ମାତ୍ର ଚାଟଶାଳୀସ୍ତରରୁ ହିଁ ସମାପ୍ତ ହୋଇଯାଇଥିଲା । ମାତ୍ର ସାତବର୍ଷ ବୟସରେ କଳା ଜଗତରେ ପଦାର୍ପଣ କରି ସେ ପ୍ରଥମେ ଗୋଟିଏ ଗୋଟିପୁଅ ଦଳରେ ଏବଂ ପରେ ପରେ ଏକ ଯାତ୍ରାଦଳରେ ଯୋଗ ଦେଇଥିଲେ । ଏହି ସମୟରେ ୰ ବନମାଳୀ ପତିଙ୍କ ପୃଷ୍ଠପୋଷକତାରେ 'ରାଧାକୃଷ୍ଣ ଥିଏଟରସ୍', ବଲଙ୍ଗା ଗଢ଼ାହେଲା । ସେଥିରେ ସେ ଜଣେ ଅଭିନେତା ଭାବରେ ଯୋଗ ଦେଲେ । ତାଙ୍କର ନଟ ଜୀବନର ପ୍ରଥମ ଗୁରୁ ସ୍ୱର୍ଗତ ବୃନ୍ଦାବନ ବିହାରୀ ଦାଶଙ୍କ ନିକଟରୁ ସେ ଅଭିନୟ, ସଙ୍ଗୀତ, ନୃତ୍ୟ ଓ ବାଦ୍ୟ ଆଦି ଶିକ୍ଷା କରିଥିଲେ । ସେତେବେଳେ ମୌଳିକ ଓଡ଼ିଆ ନାଟକର ଅଭାବ ଯୋଗୁ ବଙ୍ଗଳା ଭାଷାରୁ ଅନୂଦିତ 'ଜୟଦେବ', 'ଆନ୍ଧିବାବା' ଓ 'ହରିଶ୍ଚନ୍ଦ୍ର' ଆଦି ନାଟକରେ ନାରୀ ଭୂମିକାରେ ଅଭିନୟ କରିଥିଲେ । ପରବର୍ତ୍ତୀ କାଳରେ ନାଟ୍ୟକାର ସ୍ୱର୍ଗତ ଅଶ୍ୱିନୀ କୁମାର ଘୋଷଙ୍କ ରଚିତ ଓଡ଼ିଆ ନାଟକମାନଙ୍କରେ ମୁଖ୍ୟ ନାରୀ ଚରିତ୍ରରେ ଅଭିନୟ କରିଥିଲେ । ସ୍ୱର୍ଗତ ମହେଶ ଚନ୍ଦ୍ର ଗୁପ୍ତ, ଫଣୀନ୍ଦ୍ର ନାଥ ମୁଖାର୍ଜି ଓ ବଳାଇଚନ୍ଦ୍ର ବାନାର୍ଜି ପ୍ରମୁଖ ତାଙ୍କର ସମସାମୟିକ କଳାକାର ।

୧୯୬୩ ମସିହାରେ ବନମାଳୀ ପଣ୍ଡାଙ୍କର ଦେହାନ୍ତ ପରେ 'ରାଧାକୃଷ୍ଣ ଥିଏଟର'ର ଦାୟିତ୍ୱ ଶ୍ରୀ ଅଶ୍ୱିନୀ କୁମାର ଘୋଷ ଗ୍ରହଣ କରି ତାହାର ନାମ ପରିବର୍ତ୍ତନ କରି "ବନମାଳୀ ଆର୍ଟ ଥିଏଟରସ୍" ରଖିଥିଲେ । ୧୯୬୮ ମସିହା ପର୍ଯ୍ୟନ୍ତ ସେହି ନାଟ୍ୟସଂସ୍ଥାର ପତନ ପର୍ଯ୍ୟନ୍ତ ଶ୍ରୀ ରାମଚନ୍ଦ୍ର ମାଣିଆ ବହୁ କଷ୍ଟ ଓ ଅସୁବିଧା ମଧ୍ୟରେ ତହିଁରେ କାର୍ଯ୍ୟ କରିଥିଲେ । ଉପରେ ନିଜର ଏକକ ପ୍ରଚେଷ୍ଟାରେ ଜନ୍ମଭୂମି ନୂଆଗାଁଠାରେ 'ଭକ୍ତିରାୟଣୀ କ୍ଲବ୍' ପ୍ରତିଷ୍ଠା କରି ପ୍ରତ୍ୟେକ ବର୍ଷ ଦଶହରାରେ ସ୍ଥାନୀୟ ଯୁବକମାନଙ୍କ ସହାୟତାରେ ନାଟକ ପ୍ରଦର୍ଶନ କରାଉଥିଲେ । ୧୯୬୭ ମସିହାରେ ସେ 'ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଥିଏଟର'ରେ ଯୋଗଦାନ କରି ୧୯୭୦ ମସିହା ପର୍ଯ୍ୟନ୍ତ ତହିଁରେ କର୍ମରତ ଥିଲେ । ତାଙ୍କର ଦୀର୍ଘ କର୍ମମୟ ଜୀବନ ମଧ୍ୟରେ ସେ ବହୁ ଅଭିନେତା ଏବଂ ଅଭିନେତ୍ରୀ ସୃଷ୍ଟି କରିଥିଲେ ।

ଓଡ଼ିଆ ଚଳଚ୍ଚିତ୍ର ପ୍ରତିଷ୍ଠାନ "ରୂପଶ୍ରୀରଙ୍ଗ"ର ଓଡ଼ିଆ ଛବି 'ଶ୍ରୀଜଗନ୍ନାଥ'ରେ ଶବରରାଜା ବିଶ୍ୱାବସୁ ଭୂମିକାରେ ସେ ସଫଳ ଅଭିନୟ କରି ଚଳଚ୍ଚିତ୍ର ଜଗତକୁ ପ୍ରବେଶ କରିଥିଲେ ଏବଂ ପରେ ପରେ 'ଯାଯାବର' ଓ 'ମମତା' ଆଦି ଚଳଚ୍ଚିତ୍ରରେ ଅଭିନୟ କରି ବହୁ ପ୍ରଶଂସା ଲାଭ କରିଥିଲେ ।

ଓଡ଼ିଆ ନାଟକ ଶତବାର୍ଷିକୀ ଉତ୍ସବର ଉଦ୍‌ଯାପନ ପୂର୍ବରୁ ଓଡ଼ିଆ ନାଟକର ନିର୍ମବିକାଶ ଦିଗରେ ଦୀର୍ଘ ପଚାଶ ବର୍ଷ କାଳ ସଂଗ୍ରାମ କରିଥିବା ଏହି ମହାନ୍ କଳା ସାଧକ ୧୯୭୮ ମସିହା ଫେବୃୟାରୀ ମାସ ୫ ତାରିଖରେ, ମାଘମାସ କୃଷ୍ଣପଞ୍ଚମୀ (ବସନ୍ତ ପଞ୍ଚମୀ) ତିଥିରେ ତେଷ୍ଠିନବେ ବର୍ଷ ବୟସରେ ନିଜ ଜନ୍ମସ୍ଥାନ ରେଙ୍ଗାଳ ଗ୍ରାମରେ ଦୁନିଆର ରଙ୍ଗମଞ୍ଚରୁ ସବୁଦିନ ପାଇଁ ବିଦାୟ ନେଇଥିଲେ । ଏହି ମହାନ୍ କଳାକାରଙ୍କର ଅମର ଆତ୍ମା ଆଜିର କଳାକାରମାନଙ୍କୁ ନିଜର ଗନ୍ତବ୍ୟ ପଥରେ ଆଗେଇ ଯିବାକୁ ପ୍ରେରଣା ଦେବ, ଏ ଆଶା ଓ ବିଶ୍ୱାସ ଆମର ଅଛି ।

●

# ଗୁରୁ କେଳୁଚରଣ ମହାପାତ୍ର

ରଘୁରାଜପୁର, ପୁରୀ

ଜନ୍ମ—୧୯୨୬ ମସିହା



ଗୁରୁ କେଳୁଚରଣ ମହାପାତ୍ର ନିଃସନ୍ଦେହରେ ଆଜି ଓଡ଼ିଶୀ ନୃତ୍ୟଜଗତର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିତ୍ୱ । ଏହି ମହାନ୍ ନୃତ୍ୟଶିଳ୍ପୀ ୧୯୨୬ ମସିହାରେ ପୁରୀ ଜିଲ୍ଲାର ରଘୁରାଜପୁର ଗ୍ରାମରେ ଏକ ପଟ୍ଟଚିତ୍ର ଶିଳ୍ପୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଜଣେ ପଟ୍ଟଚିତ୍ରଶିଳ୍ପୀ ହେବା ସଙ୍ଗେ ସଙ୍ଗେ ଉତ୍ତମ ଖୋଳ (ମୃଦଙ୍ଗ) ବାଦକ ଥିଲେ । କେଳୁଚରଣଙ୍କ ତାଙ୍କ ପିତାଙ୍କ ନିକଟରୁ ପ୍ରଥମେ ଖୋଳ ବାଦନ ଶିକ୍ଷା କରିଥିଲେ ।

ମାତ୍ର ନଅବର୍ଷ ବୟସରେ ସେ ଗୁରୁ ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସଲୀଳା ଦଳରେ ଯୋଗଦାନ କରି ସୁଦୀର୍ଘ ବାରବର୍ଷକାଳ ତହିଁରେ ରହିଥିଲେ । ଏହି ସମୟରେ ସେ ଅଭିନୟ, ମୂକାଭିନୟ, ନୃତ୍ୟ ଏବଂ ସଙ୍ଗୀତ ଶିକ୍ଷା ଲାଭ କରିଥିଲେ । ଏଥିସହ ରୂପସଜ୍ଜା, ମଞ୍ଚ ପ୍ରସ୍ତୁତି ଏବଂ କୋରିଓଗ୍ରାଫି ଶିକ୍ଷା କରିଥିଲେ । ତତ୍ପରେ ସେ ସ୍ୱ. କାଳୀଚରଣଙ୍କ ଥିଏଟର ଦଳରେ ଯୋଗଦାନ କରି ମଞ୍ଚସଜ୍ଜା ଏବଂ ବାଦ୍ୟଯନ୍ତ୍ର ବାଦନର ଦାୟିତ୍ୱ ତୁଲାଇଥିଲେ । ଗୁରୁଜୀ ସ୍ୱ. ଅଗାଧୁ ମହାରଣାଙ୍କ ନିକଟରୁ ମୃଦଙ୍ଗ ଏବଂ ସ୍ୱ. କ୍ଷେତ୍ରମୋହନ କରଙ୍କ ନିକଟରୁ ତାବଲା ଶିକ୍ଷା ଲାଭ କରିଥିଲେ ।

ଅନ୍ନପୂର୍ଣ୍ଣା ଥିଏଟରରେ ତାଙ୍କର ପାଞ୍ଚବର୍ଷ ରହଣିକାଳ ମଧ୍ୟରେ ସେ "ଦେବୀ ଭସ୍ମାସୁର" ନୃତ୍ୟନାଟିକାରେ 'ନଟରାଜ' ନୃତ୍ୟରେ ବିଶେଷ ପାରଦର୍ଶିତା ପ୍ରଦର୍ଶନ କରିଥିଲେ । ଏହି ସମୟରେ ସେ ଗୁରୁ ପଙ୍କଜ ଚରଣ ଦାସଙ୍କ ତତ୍ତ୍ୱାବଧାନରେ ନୃତ୍ୟ ଶିକ୍ଷା କରିଥିଲେ । ଗୁରୁଜୀ [illegible] ବର୍ଷ ବୟସରେ ପୁରୀକୁ ଫେରିଯାଇ "ମାହାରୀ ନୃତ୍ୟ" ଶୈଳୀ ଓ "ଗୋଟିପୁଅ" ପରମ୍ପରା ଉପରେ ଦୀର୍ଘଦିନ ଗବେଷଣାରେ ବ୍ୟସ୍ତ ରହିଥିଲେ । ତିରିଶି ବର୍ଷ ବୟସରେ ସେ କଟକର କଳାବିକାଶ କେନ୍ଦ୍ରରେ ଓଡ଼ିଶୀ ନୃତ୍ୟ ଶିକ୍ଷକ

ଘରରେ ଯୋଗଦାନ କରି ଦୀର୍ଘ ପନ୍ଦରବର୍ଷ କାଳ ସେଠାରେ କଟାଇଥିଲେ । ଏହି ସମୟରେ ସେ ଅନେକ ନୃତ୍ୟନାଟ୍ୟର କୋରିଓଗ୍ରାଫି ପ୍ରସ୍ତୁତ କରିଥିଲେ । ତନ୍ମଧ୍ୟରେ 'ଶକୁନ୍ତଳା', 'କୃଷ୍ଣଗାଥା', 'ଗୀତ ଗୋବିନ୍ଦ', 'ମେଘଦୂତ', 'ଉର୍ବଶୀ' ଏବଂ 'ଚମ୍ପୂ' ସମୂହର ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ଏକନିଷ୍ଠ ସାଧନା ତାଙ୍କୁ ଅନେକ ସମ୍ମାନର ଅଧିକାରୀ କରିଛି । ୧୯୬୬ ମସିହାରେ ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ପାଇବା ସହ ୧୯୭୨ ମସିହାରେ ସେ "ପଦ୍ମଶ୍ରୀ" ଉପାଧିରେ ଭୂଷିତ ହେଲେ । ୧୯୮୧ ମେ ମାସରେ "ଅଖିଳ ଭାରତ ଗାନ୍ଧର୍ବ ମହାବିଦ୍ୟାଳୟ" ତାଙ୍କୁ ସମ୍ମାନସୂଚକ 'ଡକ୍ଟରେଟ୍' ଉପାଧିରେ ଭୂଷିତ କରିବା ସହ ୧୯୮୨ ମସିହାରେ କଲିକତାର 'ସଙ୍ଗୀତ ରିସର୍ଚ୍ଚ ଏକାଡେମୀ' ତାଙ୍କୁ ଆଇ. ଟି ସି. ସମ୍ମାନରେ ସମ୍ମାନିତ କଲେ । ପୁନଶ୍ଚ ୧୯୮୩ ମସିହା ନଭେମ୍ବର ମାସରେ ପୁରୀର 'ଶ୍ରୀକ୍ଷେତ୍ର କଳା ପ୍ରକାଶିକା' ତାଙ୍କୁ ସମ୍ମାନନୀୟ, "ନୀଳାଦ୍ରି ନଟରାଜ ପୁରସ୍କାର"ରେ ସମ୍ମାନିତ କଲେ । ଏତଦ୍‌ବ୍ୟତୀତ ଫେବୃୟାରୀ ୧୯୮୯ ମସିହାରେ ମଧ୍ୟପ୍ରଦେଶ ସରକାର ଗୁରୁଜୀଙ୍କୁ "କାଳୀଦାସ ପୁରସ୍କାର" ପ୍ରଦାନ କରିବା ସହ ସେହି ବର୍ଷ ଭାରତ ସରକାର ତାଙ୍କୁ 'ପଦ୍ମଭୂଷଣ' ସମ୍ମାନରେ ଭୂଷିତ କଲେ ।

ଅଧୁନା ଏହି ନୃତ୍ୟଗୁରୁ, ଦେଶର ବିଭିନ୍ନ ସ୍ଥାନ ଭ୍ରମଣ କରି ଓଡ଼ିଶୀ ନୃତ୍ୟ ଶିକ୍ଷା ଦେବାରେ ବ୍ୟସ୍ତ । ତାଙ୍କର ଶତଶତ ଶିଷ୍ୟମାନେ ମଧ୍ୟ ଦେଶ ବିଦେଶର ବିଭିନ୍ନ ସ୍ଥାନରେ ରହି ଓଡ଼ିଶୀ ନୃତ୍ୟର ପ୍ରଚାର ଏବଂ ପ୍ରସାରରେ ବ୍ୟସ୍ତ । ସମ୍ପ୍ରତି ନୃତ୍ୟ ଜଗତରେ ଏହି ବିରଳ ବ୍ୟକ୍ତିତ୍ୱ ଦିଲ୍ଲୀର 'ଗାନ୍ଧର୍ବ ମହାବିଦ୍ୟାଳୟ', କଲିକତାର 'ପଦାତିକ ଡାନ୍‌ସ ସେଣ୍ଟର' ସହ ସଂପୃକ୍ତ ରହି ନିଜ କର୍ମମୟ ଜୀବନକୁ ଆଗକୁ ବଢ଼ାଇ ଚାଲିଛନ୍ତି ।

ଗୁରୁ କେଳୁଚରଣ ନିଜେ ଆଜି ଏକ ଅନୁଷ୍ଠାନରେ ପରିଣତ ହୋଇଛନ୍ତି । ଆଜି ଏହି ପରିଣତ ବୟସରେ ମଧ୍ୟ ଘଣ୍ଟା ଘଣ୍ଟା ଧରି ନୃତ୍ୟ ପ୍ରଦର୍ଶନ କରି ସେ ସମସ୍ତଙ୍କ ନିକଟରେ ଏକ ଆଶ୍ଚର୍ଯ୍ୟ ବ୍ୟକ୍ତିତ୍ୱ ଭାବରେ ପ୍ରତିପାଦିତ । ତାଙ୍କର ଦୀର୍ଘ ନୀରୋଗ ଜୀବନ ଆମ ସମସ୍ତଙ୍କର କାମ୍ୟ । ଆଜି ଓଡ଼ିଶୀ ଗବେଷଣା ପରିଷଦର ଜଣେ ପ୍ରାଧ୍ୟାପକ ଭାବେ ଅଧିଷ୍ଠିତ ହୋଇ ଓଡ଼ିଶୀ ନୃତ୍ୟର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ପ୍ରଚେଷ୍ଟାରତ । ତାଙ୍କର ଜୀବନୀ ନୃତ୍ୟବିତ୍ ଓ କଳାକାରମାନଙ୍କ ପାଇଁ ପ୍ରେରଣାର ଅଫୁରନ୍ତ ଉତ୍ସ ହୋଇ ରହିଥିବ ।

●



## କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ

### ଜନ୍ମ—୧୮୯୭ ମସିହା, ବଡ଼ାମ୍ବା, କଟକ

୧୩୦୫ ସାଲ ୧୮୯୭ ମସିହା [illegible] ଅମାବାସ୍ୟା ଦିନ କବିଚନ୍ଦ୍ର କାଳିଚରଣ ବଡ଼ାମ୍ବାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାପାଙ୍କ ନାମ ଥିଲା ଦୁର୍ଗାଚରଣ ପଟ୍ଟନାୟକ ଓ ଜେଜେବାପାଙ୍କ ନାମ ଥିଲା ଜନାର୍ଦ୍ଦନ ଚରଣ ପଟ୍ଟନାୟକ । ଜେଜେବାପା ଜଣେ ସଂସ୍କୃତ ପଣ୍ଡିତ ଓ ଗ୍ରନ୍ଥ ରସିକ ଥିଲେ । ତାଙ୍କର ପ୍ରେରଣାରେ ଆଲାଳରୁ ଗ୍ରନ୍ଥ, ଗୀତ, ନାଟ୍ୟ ଇତ୍ୟାଦି ପ୍ରତି କାଳିଚରଣଙ୍କ ଯଥେଷ୍ଟ ଆଗ୍ରହ ଜନ୍ମିଥିଲା । ସଙ୍ଗୀତଗୁରୁ ବାସୁଦେବ ମହାପାତ୍ରଙ୍କଠାରୁ ଗୀତ ଶିଖି କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳୀ ପ୍ରମୁଖଙ୍କ ଗୀତକୁ ଆବୃତ୍ତି କରି ମଧୁର ଲଳିତ କଣ୍ଠରେ ସେ ଗାୟନ କରୁଥିଲେ । ପାରମ୍ପରିକ କବିତା ପ୍ରତି ଆଗ୍ରହ ଯୋଗୁ ସ୍କୁଲ ଜୀବନରୁ ସେ କବିତା ରଚନା କରିବା ଆରମ୍ଭ କରିଦେଇଥିଲେ ।।

ରାଜାମାନଙ୍କ ନାମରେ ଭଣିତା କରି ସେ କବିତା ଲେଖୁଥିଲେ । ଏଥିନିମନ୍ତେ ସେ ପୁରୀର ଗଜପତି ମହାରାଜା ରାମଚନ୍ଦ୍ର ଦେବଙ୍କର ପ୍ରିୟପାତ୍ର ଥିଲେ । ୧୯୨୭ ମସିହାର ପୁନିଆ ଦିନ ତାଙ୍କୁ ପୁରୀର ଗଜପତିଙ୍କଠାରୁ 'କବିଚନ୍ଦ୍ର' ଉପାଧି ମିଳିଥିଲା ବୋଲି ସେ ନିଜ ଆତ୍ମଜୀବନୀ 'କୁମ୍ଭାରଚକ'ରେ ଲେଖିଛନ୍ତି । କଟକରେ ଥିବା ଉତ୍କଳ ଥିଏଟରରେ ସେ ଅଭିନେତା ଭୂମିକାରେ ଅଭିନୟ କରି ପ୍ରଶଂସିତ ହୋଇଥିଲେ ।

୧୯୨୮-୨୯ ମସିହାରେ କାଳିବାବୁ ପ୍ରଥମ କରି ବ୍ୟବସାୟିକ ରାସଦଳ ଗଢ଼ିଥିଲେ । ସେଥିରେ ରାଧାକୃଷ୍ଣ ମିଳନ, ମାନଭଞ୍ଜନ ଆଦି ବହୁ ବୈଷ୍ଣବୀୟ ଚର୍ଚ୍ଚା ଓ ଚେତନା ପ୍ରଦର୍ଶିତ ତଥା ପ୍ରସାରିତ ହେଲା । ସେସବୁରେ ଓଡ଼ିଶୀ ସଙ୍ଗୀତର ମଧୁର ମୂର୍ଚ୍ଛନା ସନ୍ନିବେଶିତ କରିଥିଲେ ସଙ୍ଗୀତଜ୍ଞ ଓ କବି କାଳିଚରଣ । କିନ୍ତୁ ପ୍ରଗତିବାଦୀ କାଳିବାବୁଙ୍କର ତୃଷା ମେଣ୍ଟିଲା ନାହିଁ ରାସଦଳରେ । ସେ ଆରମ୍ଭ କଲେ ନାଟକ । ନାଟକ, କଣାଣ, ଭଜନ ଓ ସଙ୍ଗୀତୀତ ରଚନା । ପ୍ରକାଶିତ ହେଲା ବହୁ ପୁସ୍ତକ—'ସମୁଦ୍ର ପାରି' 'କହଲ-ବେଣୀ', ଭଜନ, ଜଣାଣ ଓ କବିଚନ୍ଦ୍ର ଗୀତାବଳୀ ।

କାଳିବାବୁଙ୍କ ଜୀବନର ଏକ ଉଜ୍ଜ୍ୱଳ ଅଧ୍ୟାୟ ଆରମ୍ଭ ହୁଏ ୧୯୩୯ରେ । ତାଙ୍କର ପ୍ରଚେଷ୍ଟାରେ କଟକର ବାଙ୍କାବଜାରଠାରେ ଆରମ୍ଭ ହୁଏ ଓଡ଼ିଶା ଥିଏଟର । ବହୁ ପ୍ରସିଦ୍ଧ

ଓ ନବୀନ କଳାକାରମାନଙ୍କୁ ଏକାଠି କରି ନିଜେ ନାଟକ ଲେଖି, ଅଭିନୟ କରି, ନିର୍ଦ୍ଦେଶନା ଦେଇ, ୧୯୪୯ ପର୍ଯ୍ୟନ୍ତ ଓଡ଼ିଶା ଥିଏଟର ଜରିଆରେ ଓଡ଼ିଶାର ନାଟ୍ୟ ସାହିତ୍ୟକୁ ସେ ସମୃଦ୍ଧ କରିଯାଇଛନ୍ତି । ସର୍ବହରାର ଆର୍ତ୍ତନାଦକୁ ଉପଜୀବ୍ୟ କରି ରଚିତ ନାଟକ 'ଭାତ', 'ମୂଳିଆ' ଇତ୍ୟାଦି ପରିବେଷିତ ହୋଇ ବହୁ ଜନାଦୃତ ହୋଇପାରିଥିଲା । ସେ ସମୟରେ କାଳିବାବୁଙ୍କୁ ସହଯୋଗ କରିଥିଲେ ବଙ୍କିମ ଚନ୍ଦ୍ର ସରକାର, ହାରୁ ସରକାର, ସୁଧୀର ସେନ ଓ ଆହୁରି ଅନେକ ଉଦୀୟମାନ ଯୁବକ ।

୧୯୬୦ ମସିହା ମାର୍ଚ୍ଚ ୧୮, ୧୯ ଓ ୨୦ ତାରିଖରେ ଦିଲ୍ଲୀ ସଙ୍ଗୀତ ନାଟକ ଏକାଡେମୀ ଏକ ଆଲୋଚନାଚକ୍ରର ଆୟୋଜନ କରିଥିଲେ । 'ଭାରତୀୟ ସଂଗୀତକୁ ଜୟଦେବଙ୍କ ଦାନ' ଓ 'ଭାରତୀୟ ନୃତ୍ୟରେ ଗୀତଗୋବିନ୍ଦର ସ୍ଥାନ' ଶୀର୍ଷକ ଥିଲା ଆଲୋଚନାର ବିଷୟବସ୍ତୁ । ସେଦିନ କବିଚନ୍ଦ୍ର କାଳିଚରଣ ବଜ୍ରନିର୍ଘୋଷ କଣ୍ଠରେ କହିଥିଲେ—କବି ଜୟଦେବ ଓଡ଼ିଶାର । 'ଗୀତ ଗୋବିନ୍ଦ'ରେ ସୂଚିତ ରାଗ ଦେଶ ବରାଡ଼ି ଓ ତାଳ ଅଷ୍ଟତାଳ କେବଳ ଓଡ଼ିଶୀ ସଙ୍ଗୀତ ଭିନ୍ନ ଅନ୍ୟତ୍ର କୁତ୍ରାପି ମିଳେ ନାହିଁ ବୋଲି ସେ କହିଥିଲେ । ଏକଥା ଅନୁମୋଦନ କରିଥିଲେ ଶ୍ରୀମତୀ ରୁକ୍ମିଣୀ ଦେବୀ ଅରୁଣ୍ଡେଲ ଓ ଶ୍ରୀ ବନ୍ଧାକନକ ଲକ୍ଷ୍ମେଶ୍ୱର ରାଓ ପ୍ରମୁଖ । କବି ଜୟଦେବ ଓଡ଼ିଶାର ବୋଲି କବିଚନ୍ଦ୍ରଙ୍କ ଯୁକ୍ତିକୁ ବହୁ ପ୍ରମାଣ ସହ ପ୍ରତିପାଦିତ କରିଥିଲେ ଗୁରୁଦେବ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । ଆଜିବନ ଏହି ବିତର୍କର ଶେଷ ହୋଇନାହିଁ ।

କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା କବିଚନ୍ଦ୍ର ପ୍ରଥମ ଓଡ଼ିଆ ଭାବରେ ଫେଲୋସିପ୍ ପାଇଥିଲେ ୧୯୬୯ ମସିହା ଫେବୃୟାରୀ ୨୫ ତାରିଖରେ । ତତ୍କାଳୀନ ଉପରାଷ୍ଟ୍ରପତି ଶ୍ରୀ ଭି. ଭି. ଗିରି ତାଙ୍କୁ ଏହି ସମ୍ମାନସୂଚକ ଉପାଧି ପ୍ରଦାନ କରିଥିଲେ । ସଙ୍ଗୀତ, ନୃତ୍ୟ ଓ ନାଟକ କ୍ଷେତ୍ରକୁ ତାଙ୍କର ଅତୁଳନୀୟ ଅବଦାନ ପାଇଁ ଏହି ଫେଲୋସିପ୍ ତାଙ୍କୁ ଦିଆଯାଇଥିଲା ।

୧୯୭୪ରେ ଭାରତ ସରକାରଙ୍କଠାରୁ ସେ 'ପଦ୍ମଶ୍ରୀ' ଓ ୧୯୭୫ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଡିଲିଟ ଉପାଧି ଲାଭ କରିଥିଲେ । ଓଡ଼ିଶାର ସଙ୍ଗୀତ ଓ ନାଟ୍ୟଜଗତ ପ୍ରତି ତାଙ୍କର ଅବଦାନକୁ ସମ୍ମାନ ଜଣାଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ସ୍ୱର୍ଗତ ଶ୍ରୀ ପଟ୍ଟନାୟକଙ୍କୁ ୧୯୭୧-୭୨ ବର୍ଷରେ ସମ୍ବର୍ଦ୍ଧିତ କରିଛନ୍ତି । କବି କାଳିଚରଣଙ୍କ ଜୀବନ ଏକ ସଂଗ୍ରାମ ଓ ସାଧନାର ଜୀବନ ଥିଲା । ଏବେ ବି ତାଙ୍କ ସଂଗୃହୀତ ବହୁ ଉପାଦେୟ ପୋଥି ଓ ସଙ୍ଗୀତ ଉତ୍କଳୀୟ ପାରମ୍ପରିକ ଇତିହାସ ଏବଂ ସଂସ୍କୃତିର ସ୍ୱାକ୍ଷର ବହନ କରେ ।

## ସ୍ୱର୍ଗତ ସିଂହାରୀ ଶ୍ୟାମସୁନ୍ଦର କର

ମଣିକର୍ଣ୍ଣିକା ସାହି, ପୁରୀ

(୧୯୦୮ ୧୯୭୫)



ପ୍ରାକ୍ ସ୍ୱାଧୀନତା ତଥା ସ୍ୱାଧୀନତୋତ୍ତର ଓଡ଼ିଶାରେ ଯେଉଁ କୃତୀ ପୁରୁଷମାନେ ଓଡ଼ିଶୀ ସଙ୍ଗୀତ ସଂସ୍କୃତିର ପୁନରୁଦ୍ଧାର ତଥା ବିକାଶ ଦିଗରେ ପ୍ରୟାସୀ ହୋଇଥିଲେ, ସେମାନଙ୍କ ମଧ୍ୟରେ ସୁଗାୟକ ଓ ଶ୍ରେଷ୍ଠ ମର୍ଦ୍ଦଳ ବାଦକ ଭାବରେ ସ୍ୱର୍ଗତ ସିଂହାରୀ ଶ୍ୟାମସୁନ୍ଦର କରଙ୍କର ନାମ ବିଶେଷ ପ୍ରଣିଧାନଯୋଗ୍ୟ । ସେ ୧୯୦୮ ମସିହା ମାର୍ଚ୍ଚ ମାସ ୪ ତାରିଖ ଦିନ ପୁରୀ ସହରର ମଣିକର୍ଣ୍ଣିକା ସାହିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଥିଲେ ସ୍ୱର୍ଗତ ଗୋବିନ୍ଦ ଚନ୍ଦ୍ର କର ଏବଂ ମାତାଙ୍କ ନାମ ଥିଲା ସ୍ୱର୍ଗତା ପଦ୍ମାବତୀ ଦେବୀ । ସେ ବାଲ୍ୟକାଳରୁ ସଙ୍ଗୀତ ପ୍ରତି ଏତେ ଆକୃଷ୍ଟ ଥିଲେ ଯେ ପିତାମାତାଙ୍କ ବାରଣ ସତ୍ତ୍ୱେ ରାତି ରାତି ଅନିଦ୍ରା ରହି ବିଭିନ୍ନ ସୁଆଙ୍ଗ, ଥିଏଟର ଏବଂ ଲୀଳା ଆଦି ଦେଖୁଥିଲେ । ସିଂହାରୀଙ୍କର ସାଧାରଣ ଶିକ୍ଷା ସଂସ୍କୃତ ଟୋଲ୍‌ରେ ହିଁ ସମାପ୍ତ ହୋଇଥିଲା । ସେ ଗାୟକ ଜଗନ୍ନାଥ ପ୍ରତିହାରୀ, କାଳିଚରଣ ନାୟକ, ମାନଗୋବିନ୍ଦ ମହାନ୍ତି, ଚିନ୍ତାମଣି ମିଶ୍ର ଓ ହରିହର ରାୟଗୁରୁ ଆଦି ଗୁରୁମାନଙ୍କ ନିକଟରୁ ଓଡ଼ିଶୀ ସଙ୍ଗୀତ ଓ ମର୍ଦ୍ଦଳ ବାଦନ ଶିକ୍ଷା କରିଥିଲେ । ଓଡ଼ିଶୀ ସଙ୍ଗୀତ ସଙ୍ଗେ ସେ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତରେ ମଧ୍ୟ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ପୁରୀକୁ ସଙ୍ଗୀତ ପରିବେଷଣ କରିବାକୁ ଆସୁଥିବା ପ୍ରସିଦ୍ଧ ଗାୟକ ବଲବନ୍ତ ରାଓ, ବ୍ରହ୍ମାନନ୍ଦ ଗୋସ୍ୱାମୀ, ପଣ୍ଡିତ ରାମଚନ୍ଦ୍ର ପଣୋବିକର୍ ମ୍ହଲେ ଆଦିଙ୍କ ଠାରୁ ସେ ଧ୍ରୁପଦ, ଖେୟାଲ ଆଦି ଶିକ୍ଷା କରିଥିଲେ । ନିଜର ଅଦମ୍ୟ ଆଗ୍ରହ ହେତୁ ବିଭିନ୍ନ ଗୁଣୀ ଓ ବିଦ୍ୱାନ୍ ସଙ୍ଗୀତଜ୍ଞଙ୍କ ସଂସ୍ପର୍ଶରେ ଆସି ନିଜର ଜ୍ଞାନର ସୀମାକୁ ସମ୍ପ୍ରସାରିତ କରିଥିଲେ । ସେହି ସମୟରେ କଟକ ଏବଂ ବାଲେଶ୍ୱରଠାରେ ଅନୁଷ୍ଠିତ ହେଉଥିବା ସଙ୍ଗୀତ ସମ୍ମିଳନୀରେ ଯୋଗ ଦେଇ ସେ ନିଜର କୃତିତ୍ୱ ପ୍ରଦର୍ଶନ କରିଥିଲେ ।

କଟକରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠା ହେବାର ବହୁ ପୂର୍ବରୁ ସେ କଲିକତା ଆକାଶବାଣୀ କେନ୍ଦ୍ରରୁ ଓଡ଼ିଶୀ ସଙ୍ଗୀତ ପରିବେଷଣ କରୁଥିଲେ । ୧୯୫୪ ମସିହା ମାର୍ଚ୍ଚ ୧୭ ତାରିଖରେ ଦିଲ୍ଲୀର ତାଲକଟୋରାଠାରେ ଆୟୋଜିତ ସଙ୍ଗୀତ ସମ୍ମିଳନୀରେ ଓଡ଼ିଶୀ ସଙ୍ଗୀତ ଗାନ ଏବଂ ମର୍ଦ୍ଦଳ ବାଦନ କରି ସେ ସମଗ୍ର ଭାରତରେ ଓଡ଼ିଶୀ ସଙ୍ଗୀତର ବାର୍ତ୍ତା ଖେଳାଇ ଦେଇଥିଲେ ।

ଜଣେ ଉଚ୍ଚକୋଟୀର ଗାୟକ ଏବଂ ବାଦକ ହେବା ସହ ସେ ମଧ୍ୟ ଜଣେ ଉତ୍ତମ ଶିକ୍ଷକ ଥିଲେ । ଆଜି ଓଡ଼ିଶାର ବହୁ ପ୍ରତିଷ୍ଠିତ ସଙ୍ଗୀତଜ୍ଞ ଉପାଧ୍ୟାୟଙ୍କ ତାଙ୍କର ଶିଷ୍ୟ । ନିଜ ଜୀବନରେ ସେ ବହୁ ସଙ୍ଗୀତ ଅନୁଷ୍ଠାନ ସହ ସଂଶ୍ଳିଷ୍ଟ ଥିଲେ ମଧ୍ୟ ପୁରୀର କାଳିକାକୋଟ ଥିଲା ତାଙ୍କ ସଙ୍ଗୀତ ସାଧନା ଏବଂ ଅଧ୍ୟାପନାର କ୍ଷେତ୍ର । ସେ ମଧ୍ୟ ଧାରାବାହିକ ଭାବେ ଆକାଶବାଣୀ କଟକ କେନ୍ଦ୍ରରୁ ଓଡ଼ିଶୀ ସଙ୍ଗୀତ ଶିକ୍ଷା କାର୍ଯ୍ୟକ୍ରମ ପରିଚାଳନା କରି ଆସୁଥିଲେ । ଓଡ଼ିଶୀ ସଙ୍ଗୀତକୁ ତାଙ୍କର ବିଶେଷ ଦାନ ହେଲା ତାଙ୍କର ନିଜ ଗୃହରେ ପ୍ରତିଷ୍ଠିତ ଶ୍ୟାମସୁନ୍ଦର ସଙ୍ଗୀତ ମହାବିଦ୍ୟାଳୟ । ସଙ୍ଗୀତ ସହ ସେ ମଧ୍ୟ ଜଣେ ଓଡ଼ିଶୀ ନୃତ୍ୟଗୁରୁ ଥିଲେ । ପ୍ରସିଦ୍ଧ ନୃତ୍ୟାଙ୍ଗନା ଶ୍ରୀମତୀ ପ୍ରିୟମ୍ବଦା ମହାନ୍ତି ପ୍ରଥମ ଓଡ଼ିଶୀ ନୃତ୍ୟ ଶିକ୍ଷା ସିଂହାରୀଙ୍କ ନିକଟରୁ ହିଁ ଲାଭ କରିଥିଲେ ।

ତାଙ୍କର ସାଧନାର ପ୍ରତିଦାନ ସ୍ୱରୂପ ବହୁ କଳାନୁଷ୍ଠାନ ତରଫରୁ ସେ ସମ୍ମାନିତ । ଉତ୍କଳ ସଙ୍ଗୀତ ସମାଜ, ଉତ୍କଳ ସାହିତ୍ୟ ସମାଜ (୧୯୪୪), ପ୍ରଜାତନ୍ତ୍ର ପ୍ରଚାର ସମିତି (୧୯୬୧), ଭକ୍ତ ସାହିତ୍ୟ ସମିତି (୧୯୬୯) ଏବଂ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୭୩ରେ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ସମ୍ମାନିତ କରି ନିଜେ ଗୌରବମଣ୍ଡିତ ହୋଇ ପାରିଛନ୍ତି । ସେ ଗାୟକରତ୍ନ, ସଙ୍ଗୀତବିଶାରଦ, ଗୁଣ୍ଡିଚାକାନନର ପିକବର, ସଙ୍ଗୀତାଚାର୍ଯ୍ୟ ଓ ଶ୍ରୀକ୍ଷେତ୍ରରତ୍ନ ଆଦି ବହୁ ଉପାଧିରେ ଭୂଷିତ । ତାଙ୍କ ରଚିତ ଶ୍ରୀକ୍ଷେତ୍ର ଭଜନମାଳା ଓ ରାଗନାମାମୃତ ପୁସ୍ତକ ଦୁଇଟି ଓଡ଼ିଆ ସଙ୍ଗୀତ ରାଜ୍ୟର ଅମୂଲ୍ୟ ରତ୍ନ । ଓଡ଼ିଶୀ ସଙ୍ଗୀତକୁ ନିଜର ଏକନିଷ୍ଠ ସାଧନା ବଳରେ ଋଦ୍ଧିମନ୍ତ କରିଥିବା ଏହି ମହାସାଧକଙ୍କର ମହାପ୍ରୟାଣ ୧୯୭୫ ମସିହା ମାର୍ଚ୍ଚ ୧୬ ତାରିଖରେ ଘଟିଥିଲା ।

## ଶ୍ରୀ ଚନ୍ଦ୍ରଶେଖର ଭଞ୍ଜ
**ବାରିପଦା, ମୟୂରଭଞ୍ଜ**

**ଜନ୍ମ — ୧୯୧୦ ଫେବୃଆରୀ ୪ ତାରିଖ**



ଓଡ଼ିଶାର ଅନ୍ୟତମ ଲୋକନୃତ୍ୟ ଛଉନୃତ୍ୟର ଶିଳ୍ପୀ ଶ୍ରୀ ଚନ୍ଦ୍ରଶେଖର ଭଞ୍ଜ ମୟୂରଭଞ୍ଜ ଜିଲ୍ଲାର ବାରିପଦାର ଦାବୁସାହିଠାରେ ୧୯୧୦ ମସିହା ଫେବୃୟାରୀ ମାସ ୪ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବିଶ୍ୱେଶ୍ୱର ଭଞ୍ଜ । ମାତ୍ର ଦଶବର୍ଷ ବୟସରୁ ସେ ରାଜ ଦରବାରରେ ନୃତ୍ୟ ପ୍ରଦର୍ଶନ ପାଇଁ ଛଉନୃତ୍ୟ ଶିକ୍ଷା ନିମନ୍ତେ ଦକ୍ଷିଣସାହି ଶିକ୍ଷାକେନ୍ଦ୍ରରେ ଯୋଗଦାନ କରି ଛଉନୃତ୍ୟ ଶିକ୍ଷା କରିଥିଲେ । ତାଙ୍କର ଗୁରୁମାନେ ହେଲେ ଶ୍ରୀ ରଘୁନାଥ ସିଂ ଚୌହାନ୍, ଭବାନୀ ଜେନ୍ତ୍, ଓ ମହମ୍ମଦ୍ ଦଗାଲ୍ ଖାଁ । ଏମାନେ ସମସ୍ତେ ପ୍ରଖ୍ୟାତ ଛଉନୃତ୍ୟ ଶିଳ୍ପୀ ଥିଲେ ।

ନୃତ୍ୟଶିକ୍ଷାପରେ ଶ୍ରୀଯୁକ୍ତ ଭଞ୍ଜ ରାଜଦରବାରରେ ନିଜର କଳା ପ୍ରଦର୍ଶନ କରି ଅନେକ ପୁରସ୍କାର ଏବଂ ସମ୍ମାନ ଲାଭ କରିଥିଲେ । ଛଉନାଚର ବିଶେଷ ଶୈଳୀ ଫୁଟନାଚ, ଜମ୍ପେଇ ଓ ରଙ୍ଗପଣ୍ଡା ନୃତ୍ୟ ପାଇଁ ସେ ଚିରଦିନ ଅମର ହୋଇ ରହିବେ । ସମ୍ପ୍ରତି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ବାରିପଦାଠାରେ ପ୍ରତିଷ୍ଠିତ ଛଉନାଚ ଶିକ୍ଷାକେନ୍ଦ୍ରରେ ସେ ନୃତ୍ୟଗୁରୁ ଭାବରେ ଅବସ୍ଥାପିତ ।

ଛଉନୃତ୍ୟ କ୍ଷେତ୍ରରେ ତାଙ୍କର ଅନନ୍ୟସାଧାରଣ ଅବଦାନ ନିମନ୍ତେ ତାଙ୍କୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ୧୯୭୨-୭୩ ମସିହାନିମନ୍ତେ ସମ୍ମାନିତ କରାଯାଇଅଛି । ଏତଦ୍‌ବ୍ୟତୀତ ଛଉନୃତ୍ୟ ନିମନ୍ତେ ତାଙ୍କର ଅନବଦ୍ୟ କୃତିପାଇଁ ତାଙ୍କୁ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ୧୯୯୧ ମସିହା ନିମନ୍ତେ ପୁରସ୍କୃତ କରାଯାଇଛି । ଏହି କଳାର ବର୍ଷୀୟାନ କଳା ପୂଜାରୀଙ୍କର କର୍ମମୟ ଜୀବନ ଅଧିକ ବିସ୍ତୃତ ହେଉ ଏହାହିଁ କାମନା ।

●

## ଶ୍ରୀ ରାମଚନ୍ଦ୍ର ମିଶ୍ର

ଦଶପଲ୍ଲା, ପୁରୀ

ଜନ୍ମ—୧୯୨୦, ଅକ୍ଟୋବର ୧୨



ରାମଚନ୍ଦ୍ର ମିଶ୍ର ଅଙ୍ଗୀକାରବଦ୍ଧ ନାଟ୍ୟଶିଳ୍ପୀ । ସେ ୧୯୨୦ ମସିହା ଅକ୍ଟୋବର ୧୨ ତାରିଖରେ ଦଶପଲ୍ଲାଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଶ୍ରୀ ବିଦ୍ୟାଧର ମିଶ୍ର ଏବଂ ମାତାଙ୍କ ନାମ ଶ୍ରୀମତୀ ରାଧାଦେବୀ । ସେ ଦଶପଲ୍ଲା ସ୍କୁଲରେ ବାଲ୍ୟଶିକ୍ଷା ଶେଷକରି କଟକ ମିଶନସ୍କୁଲରେ ଅଧ୍ୟୟନ କରିଥିଲେ ଏବଂ ୧୯୩୯ ମସିହାରେ ବାଣପୁର ହାଇସ୍କୁଲରୁ ମାଟ୍ରିକ ପାସ କରି କଟକ ରେଭେନ୍‌ସା କଲେଜରେ ଅଧ୍ୟୟନ କଲେ । ୧୯୪୩ ମସିହାରେ ସେ ବି. ଏ. ପାସକରି ୧୯୪୫ ମସିହାରେ ଏଲ୍. ଏଲ୍ ବି. ପାଶ୍ କରିଥିଲେ । ତାପରେ ସେ ନାଟକ ଲେଖାରେ ମନ ଦେଇଥିଲେ । ତାଙ୍କ ନାଟକର ଜୀବନସୂତ୍ର ସମାଜ । ସମାଜର ଆଦର୍ଶାନ୍ୱିତ ରୂପଦାନରେ ସେ ଶତଜିହ୍ୱ । ଭାରତୀୟ ଜୀବନବୋଧ ଶ୍ରୀ ମିଶ୍ରଙ୍କ ନାଟକର ମୁଖ୍ୟ ଉପଜୀବ୍ୟ । ଏହି ସବୁକୁ ରୂପ ଦେଲା-ବେଳେ ସେ କେତେବେଳେ ଗାନ୍ଧି ପ୍ରଦର୍ଶିତ ମାର୍ଗ ଅନୁସରଣ କରିଛନ୍ତି ତ କେତେବେଳେ ରାମାୟଣର ଭାବାଲୋକରେ ଉଚ୍ଚକିତ ହୋଇଛନ୍ତି । ତାଙ୍କ ନାଟକର ମୂଳତନ୍ତ୍ର ହେଲା 'ଘର ସଜାଡ଼ି ହେଲେ ସମାଜ ସଜାଡ଼ି ହୋଇଯିବ; ସମାଜ ସୁଧରିଗଲେ ଦେଶ ସୁଧରି ଯିବ' । ଏହି ଭାବବୃତ୍ତିଟି ତାଙ୍କର ନାଟକରେ ସୁସ୍ପଷ୍ଟ ହୋଇଉଠିଛି ।

ଶ୍ରୀ ମିଶ୍ର ସମସାମୟିକ ନାଟ୍ୟ ଜଗତରେ ଜଣେ ସମାଜସଚେତନ ନାଟ୍ୟଶିଳ୍ପୀ । ତାଙ୍କର ନାଟକରେ ସୁସ୍ଥ ସମାଜ ପରିକଳ୍ପନାର ସ୍ପୃହାଟି ବଡ଼ ତୀବ୍ର । ତାଙ୍କର ପାତ୍ରପାତ୍ରୀ-ଗୁଡ଼ିକ ସତତ ଭାରତୀୟ ଜୀବନଧାରା ପ୍ରତି ପ୍ରବଣତା ପ୍ରଦର୍ଶନ କରିଛନ୍ତି । ସେ ନଗର ଜୀବନ ଅପେକ୍ଷା ପଲ୍ଲୀଜୀବନର କୀର୍ତ୍ତିଗାନ ପ୍ରତି ଅଧିକ ଧ୍ୟାନଶୀଳ । ସେ ପରମ୍ପରା ପ୍ରତି ସମ୍ମାନ ଦେଲେହେଁ ରକ୍ଷଣଶୀଳ ନୁହନ୍ତି । ପାଶ୍ଚାତ୍ୟମୁଖୀନତା, ବିଶେଷତଃ ତା'ର ନକଲ ଅନୁକରଣକୁ ସେ ସୁଦୃଷ୍ଟିରେ ଦେଖିପାରି ନାହାନ୍ତି । ତା'ଙ୍କ ନାଟକାବଳୀର ଛନ୍ଦେ ଛନ୍ଦେ

ଏକ ମାନବୀୟ ସମ୍ବେଦନା ଫୁଟି ଉଠିଛି । ୧୯୩୭ ମସିହାରେ ବନଫୁଲ ପତ୍ରିକାରେ ତାଙ୍କର ପ୍ରଥମ ସାହିତ୍ୟ କୃତି "କେଶବ କି ?" କବିତା ପ୍ରକାଶ ପାଇଥିଲା । ତାପରେ ସେ ଗଳ୍ପ ରଚନାରେ ମନ ଦେଲେ । ସେ "ଅକୁହା କଥା", "ଫୁଲ ଓ ମୃତ୍ତିକାସ୍ତୁତି" ପ୍ରଭୃତି ଗଳ୍ପରେ ସୁନାମ ଅର୍ଜନ କରିଥିଲେ । ତାଙ୍କ ରଚିତ ଅନେକ ନାଟ୍ୟକୃତି ମଧ୍ୟରୁ ଅଭିମାନ, ମୂଲିଆ, କବିସୂର୍ଯ୍ୟ, ଗୋଧୂଳିଲଗ୍ନ, ନରୋତ୍ତମ ଦାସ କହେ ମନ୍ତ୍ରୀ ଆସିବେ ପ୍ରଭୃତି ଅନ୍ୟତମ । ତାଙ୍କ ଏକାଙ୍କିକାଗୁଡ଼ିକ ମଧ୍ୟରେ ପ୍ରତୀକ୍ଷା, ପଡ଼ୋଶୀ, ଆବିଷ୍କାର, ରଜତଜୟନ୍ତୀ ବିଶେଷ ଆଦୃତ । ନାଟ୍ୟ ରଚନା ନିମନ୍ତେ ତାଙ୍କୁ (୧୯୭୨-୭୩) ପାଇଁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ପୁରସ୍କୃତ କରାଯାଇଥିଲା ।

ସେ ଆଧୁନିକ ଜୀବନର ବିବିଧ ସମସ୍ୟା ପ୍ରତି ଉଦାସୀନ ନୁହନ୍ତି ଅଥଚ ତାଙ୍କର ନାଟକଗୁଡ଼ିକରେ ଭାରତୀୟ ପରିପ୍ରେକ୍ଷୀରେ ସେସବୁର ସମାଧାନ ସୂତ୍ର ଯୋଗେଇବାକୁ ଚେଷ୍ଟା କରିଛନ୍ତି । ଅଯଥା ପରୀକ୍ଷଣ ତା'ଙ୍କ ନାଟକର ବୈଶିଷ୍ଟ୍ୟ ନୁହେଁ । ତାଙ୍କର ନାରୀ ଚରିତ୍ରଗୁଡ଼ିକ ମଧ୍ୟରୁ ଅଧିକାଂଶ ଭାରତୀୟ ମାନସିକତାର ରୂପାୟିତ ବିଗ୍ରହ । ପୁରୁଷ ଚରିତ୍ରଗୁଡ଼ିକ ମଧ୍ୟ ଭାରତୀୟ ଚେତନାର ପରିଧି ମଧ୍ୟରେ ସାଧାରଣତଃ ଆତଯାତ ।

ଅନ୍ୟ ଭାବରେ କହିଲେ ଶ୍ରୀ ମିଶ୍ର ଚିରନ୍ତନ ମୂଲ୍ୟବୋଧ ଉପରେ ସାଧାରଣତଃ ଗୁରୁତ୍ୱ ପ୍ରଦାନ କରି ଆସିଛନ୍ତି । ସେ ମାନବିକତାବାଦର ମୁଗ୍ଧ ପୂଜାରୀ । ତାଙ୍କ ନାଟକାବଳୀରେ ମଣିଷର ଶୁଭ୍ର ରୂପଟିକୁ ସେ ଅଧିକ ଦେଖିଛନ୍ତି । ଏଥିରେ କଥନଗତ ଆଡ଼ମ୍ବର ନାହିଁ । ଭାଷା ପାତ୍ରୋପଯୋଗୀ । ସଂଳାପ ପ୍ରୟୋଗ ସ୍ୱଭାବସୁଲଭ । ମଞ୍ଚକଳାର ଜଟିଳ ସୂତ୍ର ତାଙ୍କ ନାଟକରେ ଲକ୍ଷିତ ହୁଏନା । ବସ୍ତୁତଃ ତାଙ୍କର ନାଟକଗୁଡ଼ିକ ଯେ କୌଣସି ସ୍ଥାନରେ ଅଭିନୀତ ହେବାରେ ବାଧା ଉପୁଜେନା । ନାଟ୍ୟକାର ସ୍ୱୟଂ ସଙ୍ଗୀତଜ୍ଞ ନ ହେଲେହେଁ ତଦ୍‌ବିତ୍‌ମାନଙ୍କର ସହାୟତାରେ ନିଜର ନାଟକରେ ସଙ୍ଗୀତର ଯଥାଯଥ ବିନିଯୋଗ କରିଛନ୍ତି । ଉତ୍ତର କାଳୀଚରଣ କାଳରେ ସେ ସାହିତ୍ୟଶ୍ରୀ ଓ ନାଟ୍ୟଶିଳ୍ପ ସମନ୍ୱୟ କ୍ଷେତ୍ରରେ ଜଣେ ସଫଳ ସ୍ରଷ୍ଟା । ତେବେ ଏଠାରେ କହିରଖିବା ଉଚିତ ଯେ ରାମଚନ୍ଦ୍ରଙ୍କ ନାଟ୍ୟଜଗତ ସମୁଦ୍ର ପରି ବେଶ୍ ନିଳାଭ ଏବଂ ମନୋମୁଗ୍ଧକର । ତା'ର ଅନ୍ତଃସ୍ଥଳରେ ଉଦ୍‌ବେଳନ ଅଛି, ସାମୟିକ ବିକ୍ଷୁବ୍ଧ ମନ୍ଥନ ରହିଛି, କିନ୍ତୁ ତାହା ସ୍ଥିର ସମୁଦ୍ର ପରି ଦର୍ଶକ ଓ ପାଠକଙ୍କୁ ମୁଗ୍ଧ କରିଥାଏ ।

●



## ৺ ପୂର୍ଣ୍ଣଚନ୍ଦ୍ର ସିଂହ

ଉଦରେ, ପୁରୀ

(୧୯୧୭—୧୯୭୨)

ଓଡ଼ିଶା ରଙ୍ଗମଞ୍ଚର ଅନ୍ୟତମ କୃତୀ ହାସ୍ୟ ଅଭିନେତା ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ସିଂହ ୧୯୧୭ ମସିହା ସେପ୍ଟେମ୍ବର ମାସ ୨୧ ତାରିଖରେ ପୁରୀ ଜିଲ୍ଲାର ଉଦରୋ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ৺ ଶ୍ୟାମ ଚରଣ ସିଂହ । ପିଲାବେଳରୁ ହିଁ ଶ୍ରୀସିଂହ କଳାବିଦ୍ୟା ପ୍ରତି ଆଗ୍ରହୀ ଥିଲେ । ତାଙ୍କ ଗ୍ରାମରେ କଳା ବିଦ୍ୟାର ଚର୍ଚ୍ଚା ଶ୍ରୀ ସିଂହଙ୍କର ଜନ୍ମର ବହୁପୂର୍ବରୁ ଚାଲିଥିଲା । ସେହି ଗ୍ରାମରେ କୃଷ୍ଣ ଯାତ୍ରା, ରାମଲୀଳା, ସାହିଯାତ୍ରା, ଗୋଟିପୁଅନାଚ ଇତ୍ୟାଦି ଗ୍ରାମ୍ୟ ସାଂସ୍କୃତିକ ଅନୁଷ୍ଠାନ ସବୁରେ ପିଲାଦିନରୁ ଅଂଶ ଗ୍ରହଣ କରି ৺ ସିଂହ ସେହି କଳା ମଧ୍ୟରେ ନିଜକୁ ହଜାଇ ଦେଲେ । ନାଟ ପାଇଁ ପାଠକୁ ଭୁଲିଗଲେ ବି ଭରଣପୋଷଣ ନିମନ୍ତେ ସେ କିଛିଦିନ ପୁରୀ ସବ୍‌ରେଜିଷ୍ଟ୍ରାର ଅଫିସରେ ଚାକିରୀ କରିଥିଲେ । ମାତ୍ର ଚାକିରୀ ତାଙ୍କୁ ବାନ୍ଧି ରଖି ପାରିଲାନି । ଇସ୍ତଫା ଦେଇ ସେ କଟକ ଚାଲିଆସିଲେ ତତ୍କାଳୀନ ମଞ୍ଚ ଅଭିନେତା ଏବଂ ତାଙ୍କର ପିଉସୀପୁଅଭାଇ ଦୁର୍ଲ୍ଲଭ ସିଂହଙ୍କ ନିକଟକୁ । ସେତେବେଳକୁ ଦୁର୍ଲ୍ଲଭବାବୁ ৺ କାଳୀବାବୁଙ୍କ 'ଓଡ଼ିଶା ଥିଏଟର' ନାଟ୍ୟ ସଂସ୍ଥାରେ କାର୍ଯ୍ୟ କରୁଥିବାରୁ ତାଙ୍କ ପ୍ରଚେଷ୍ଟାରେ ৺ ସିଂହ ଏଥିରେ କାର୍ଯ୍ୟ ପାଇଗଲେ ଏହି କଳାମୟ ପରିବେଶ ତାଙ୍କୁ ବେଶ୍ ସୁହାଇଲା । କାଳୀବାବୁଙ୍କ ଅନୁମତିକ୍ରମେ ସେ ଏହି ରଙ୍ଗମଞ୍ଚରେ ପ୍ରଥମେ ଛୋଟ ଛୋଟ ଚରିତ୍ରରେ ଅଭିନୟ କରିବାକୁ ଲାଗିଲେ । 'ଗୁରୁ ଚହ୍ଲେ ଗୁଣିଆ' ପ୍ରବଚନ ତାଙ୍କ କ୍ଷେତ୍ରରେ ସତ୍ୟ ହେଲା । କାଳୀବାବୁଙ୍କ ଅଭିଜ୍ଞ ଚକ୍ଷୁରୁ ତାଙ୍କର ହାସ୍ୟରସ ପରିବେଷଣ କରିବାର ଯୋଗ୍ୟତା ଲୁଚି ରହିଲାନି । ତେଣୁ ପୂର୍ଣ୍ଣଚନ୍ଦ୍ରଙ୍କୁ ହାସ୍ୟରସାତ୍ମକ ଚରିତ୍ରରେ ଅଭିନୟ କରିବାର

ସୁଯୋଗ ମିଳିଲା ଏବଂ ସେଥିରେ ବିଶେଷ କୃତିତ୍ୱ ପ୍ରଦର୍ଶନ କରି ସେ ନିଜକୁ ଜଣେ ଉତ୍ତମ ହାସ୍ୟ ଅଭିନେତା ରୂପେ ପ୍ରତିଷ୍ଠିତ କରିବାରେ ସଫଳକାମ ହେଲେ । ଏହା ଥିଲା ୧୯୪୧ ମସିହାର କଥା । ଏହି 'ଓଡ଼ିଶା ଥିଏଟର'ରେ ଚାରିବର୍ଷ ଅଭିନୟ କରିବାପରେ ସେ ୧୯୪୫ରେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ରଙ୍ଗମଞ୍ଚରେ ଯୋଗଦାନ କଲେ । ସେଠାରେ ମଧ୍ୟ ସେହି ହାସ୍ୟରସକୁ ଚମତ୍କାର ଶୈଳୀରେ ଦର୍ଶକମାନଙ୍କ ସମ୍ମୁଖରେ ଫୋଲାଇ ବହୁ ପ୍ରଶଂସା ଗୋଟାଇବାରେ ଲାଗିଲେ ଏବଂ ସବୁ ଶ୍ରେଣୀର ଦର୍ଶକମାନଙ୍କର ଅତିପ୍ରିୟ ଅଭିନେତା ଭାବେ ନିଜକୁ ପ୍ରତିଷ୍ଠିତ କଲେ । ପରେ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍ ସହିତ ନାନା ସ୍ଥାନ ଭ୍ରମଣ କରି ତାଙ୍କର ସେହି ସ୍ୱଭାବସୁଲଭ ହାସ୍ୟରସର ସଫଳ ଅଭିନୟରେ ଶ୍ରେଷ୍ଠ ବଡ଼ ସମସ୍ତଙ୍କ ମନକୁ କିଣି ନେଇଥିଲେ ।

ରଙ୍ଗମଞ୍ଚରେ ବହୁ ନାଟକରେ ଅଭିନୟ କରିବା ସଙ୍ଗେ ସଙ୍ଗେ ସେ କେତୋଟି ଓଡ଼ିଆ ଚଳଚ୍ଚିତ୍ରରେ ବିଶେଷ ଭୂମିକାରେ ଅଭିନୟ କରି ପ୍ରଶଂସିତ ହୋଇଥିଲେ । ତନ୍ମଧ୍ୟରୁ 'ଭାଇ ଭାଉଜ' ଚଳଚ୍ଚିତ୍ରରେ ତାଙ୍କର ଅଭିନୟ ଅତି ଉଚ୍ଚକୋଟୀର ହୋଇଥିଲା । ଏହାବ୍ୟତୀତ ସେ 'ମଲ୍ଲଜହ୍ନ', ଅଭିନେତ୍ରୀ, 'ପରବାହୁଡ଼ା' ଇତ୍ୟାଦି ଚଳଚ୍ଚିତ୍ରରେ ମଧ୍ୟ ଅଭିନୟ କରିବାର ଗୌରବ ଅର୍ଜନ କରିଥିଲେ ।

ରଙ୍ଗମଞ୍ଚ ଓ ରୂପେଲି ପରଦା ପରେ ପୂର୍ଣ୍ଣିବାବୁ ଆକାଶବାଣୀର ମଧ୍ୟ ଜଣେ ସ୍ୱୀକୃତ ହାସ୍ୟ ଅଭିନେତା ଥିଲେ । ତାଙ୍କର ସାବଲୀଳ ସୁରୁଚିପୂର୍ଣ୍ଣ ସଂଳାପ, କହିବାର ଭଙ୍ଗୀ ତାଙ୍କ ଅଭିନୟର ବିଶେଷତ୍ୱ ଥିଲା । କୌଣସି ପ୍ରକାର ବିକୃତ ମୁଖଭଙ୍ଗୀ ବା ଅଙ୍ଗଭଙ୍ଗୀ ନ କରି କେବଳ ସଂଳାପ ଦ୍ୱାରା ଦର୍ଶକମାନଙ୍କୁ ହସାଇପାରିବାରେ ସେ ଥିଲେ ଅଦ୍ୱିତୀୟ ଅଭିନେତା ।

ରଙ୍ଗମଞ୍ଚରେ ତାଙ୍କର ସଫଳ ଅଭିନୟ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ୧୯୭୩-୭୪ ମସିହାରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଥିଲେ । ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ରଙ୍ଗମଞ୍ଚରେ ସୁଦୀର୍ଘ କୋଡ଼ିଏ ବର୍ଷର ଅଭିନୟ ଜୀବନ କଟାଇବା ପରେ ପକ୍ଷାଘାତ ରୋଗଗ୍ରସ୍ତ ହୋଇ ୧୯୭୬ ମସିହାରେ ସେ ଇହଧାମ ତ୍ୟାଗ କରିଥିଲେ । ତାଙ୍କର ଅଭିନୟ ଯିଏ ଥରେ ଦେଖିଛି ସେ ତାଙ୍କୁ କେବେହେଲେ ଭୁଲିପାରିବ ନାହିଁ ।

●

# ୰ ପଣ୍ଡିତ କ୍ଷେତ୍ରମୋହନ କର

## ପୁରୀ

(୧୯୦୭—୧୯୮୮)



ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରେ ଶାସ୍ତ୍ରୀୟ ବାଦନରେ ଯେଉଁ କେତେ ଜଣ ମୁଷ୍ଟିମେୟ ଶିଳ୍ପୀ ଥିଲେ ସେମାନଙ୍କ ମଧ୍ୟରେ ବାଦ୍ୟବ୍ରହ୍ମ ୰ ପଣ୍ଡିତ କ୍ଷେତ୍ରମୋହନ କରଙ୍କର ନାମ ବିଶେଷ ଭାବରେ ପ୍ରଣିଧାନଯୋଗ୍ୟ । ଜଣେ ଉଚ୍ଚମାନର ତବଲା ବାଦକ ଭାବରେ ତାଙ୍କର ସୁଖ୍ୟାତି ଓଡ଼ିଶା ତଥା ଓଡ଼ିଶା ବାହାରେ ପରିବ୍ୟାପ୍ତ ଥିଲା । ଏହି ପ୍ରଖ୍ୟାତ କଳାକାରଙ୍କର ଜନ୍ମ ପୁରୀସହରର ଏକ ସଙ୍ଗୀତସମ୍ପନ୍ନ ଓ କଳାନୁରାଗୀ ପରିବାରରେ ୧୯୦୭ ମସିହା ଅଗଷ୍ଟ ମାସ ୩୦ ତାରିଖ ଦିନ ହୋଇଥିଲା । ତାଙ୍କର କଳାନୁରାଗୀ ପିତା ୰ ବନମାଳୀ କର ଏବଂ ମାତା ଗୌରୀଦେବୀଙ୍କର ଜଗନ୍ନାଥଙ୍କ ମନ୍ଦିର ପାଖରେ ଥିବା ଗୃହରେ ଏକ ସାଂସ୍କୃତିକ କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ବନମାଳୀ କର ଏହି କେନ୍ଦ୍ରର ପ୍ରଧାନ ପୃଷ୍ଠପୋଷକ ଥିବା ହେତୁ; ଅତ୍ୟନ୍ତ ଅଳ୍ପ ବୟସରୁ ନିଜ ପୁତ୍ର କ୍ଷେତ୍ରମୋହନଙ୍କୁ ସଙ୍ଗୀତ ଶିକ୍ଷା ଦେବା ତାଙ୍କପକ୍ଷରେ ସମ୍ଭବ ହୋଇଥିଲା । ଏହି କେନ୍ଦ୍ର ଓଡ଼ିଶୀ ସଙ୍ଗୀତ, ଅପେରା, ଗୋଟିପୁଅ ତଥା ଭାରତର ସୁଦୂରପ୍ରାନ୍ତରୁ ଜଗନ୍ନାଥଧାମକୁ ଆସୁଥିବା ସଙ୍ଗୀତଜ୍ଞମାନଙ୍କର କଳା ପରିବେଷଣର ପ୍ରଧାନ ସ୍ଥଳୀ ଥିଲା । ଏପରି ଏକ ବଳିଷ୍ଠ ସାଂସ୍କୃତିକ ପରିବେଶ ବାଲ୍ୟ ସମୟରୁ ହିଁ ଶ୍ରୀ କରଙ୍କୁ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା ଓ ସାଧନା ପାଇଁ ସାହାଯ୍ୟ କରିଥିଲା । ଭାରତର ପ୍ରଖ୍ୟାତ ଶ୍ରୀ ମନ୍ମୁଘୋଷ, ପଣ୍ଡିତ ଗଡ଼ଜମିଦାର, ଉସ୍ତାଦ୍ ଅମୀରଖାଁ, ନଜର ଖାଁ ତବଲା, ମହାନ୍ତ ରାମ ରତନ ଦାସ, ଅନୋଖେ ଲାଲ୍ ଆଦି ପଖାଉଜରେ ତାଙ୍କୁ ଶାସ୍ତ୍ରୀୟ ମାର୍ଗ ପ୍ରଦର୍ଶନ କରିଥିଲେ । ଶେଷରେ ସେ ବଙ୍ଗଳାର ପ୍ରଖ୍ୟାତ ସଙ୍ଗୀତଜ୍ଞ ପଦ୍ମ ବିଭୂଷଣ ଜ୍ଞାନପ୍ରକାଶ ଘୋଷଙ୍କ ନିକଟରୁ ସଙ୍ଗୀତରେ ବିଶେଷ ଶିକ୍ଷା ଲାଭ କରିଥିଲେ । ଏତଦ୍‌ବ୍ୟତୀତ ତାଙ୍କର ସହଧର୍ମିଣୀ ୰ ପଦ୍ମାବତୀ ଦେବୀ ଏବଂ ନିଜେ ଶ୍ରୀ କର ଗୋପାଳ ଘୋଷଙ୍କଠାରୁ ସେତାର ଏବଂ ଜଳତରଙ୍ଗ ଶିକ୍ଷା କରିଥିଲେ । ନିଜର ଏକନିଷ୍ଠ ସାଧନା ବଳରେ ସେ ଜଣେ ସର୍ବଭାରତୀୟ ସ୍ତରର ତବଲା ବାଦକ ଏବଂ ଜଳତରଙ୍ଗ ବାଦକ ଭାବରେ କଳାର ଯେଉଁ ଶୀର୍ଷକୁ ସ୍ପର୍ଶ କରିପାରିଥିଲେ ତାହା ଆଜି ବିରଳ ।

ଭାରତର ବହୁ ବିଶିଷ୍ଟ କଣ୍ଠ ଓ ଯନ୍ତ୍ରଶିଳ୍ପୀମାନଙ୍କ ସହ ତବଲା ବାଦନ କରି ଶ୍ରୀ କର ବହୁ ପ୍ରଶଂସାର ଅଧିକାରୀ । ଏମାନଙ୍କ ମଧ୍ୟରେ ପଣ୍ଡିତ୍ ଡ଼ ଭି. ପଲୁସ୍କର, ପ. ବିନାୟକ ରାଓ ପଟ୍ଟବର୍ଦ୍ଧନ, ପ. ଓଁକାରନାଥ ଠାକୁର, ପ. ରାଧିକା ମୋହନ ମୈତ୍ର, ପ. ପାନ୍ନାଲାଲ୍ ଘୋଷ, ଓସ୍ତାଦ ଅମୀର ଖାଁ, ସିଦ୍ଧେଶ୍ୱରୀ ଦେବୀ, ହୀରାବାଈ ବରୋଦ୍‌କର, ପ. ଜ୍ଞାନ ପ୍ରକାଶ ଘୋଷ, ପ. ସାମତା ପ୍ରସାଦ । ଏମାନଙ୍କ ସହ ତାଙ୍କର ଯୁଗଲବନ୍ଦୀ ଅବିସ୍ମରଣୀୟ ହୋଇ ରହିଛି ।

ତତ୍‌କାଳୀନ ପ୍ରଧାନ ମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ତାଙ୍କ କଳା-ପ୍ରଦର୍ଶନରେ ମୁଗ୍ଧ ହୋଇ ତାଙ୍କର ଭୂୟସୀ ପ୍ରଶଂସା କରିଯାଇ ଅଛନ୍ତି । ସେ ସ୍ୱୀୟ ପ୍ରତିଭା ନିମନ୍ତେ ରାଜ୍ୟପାଳ ଆସଫଅଲ୍ଲୀଙ୍କଠାରୁ ସ୍ୱର୍ଣ୍ଣପଦକ ପ୍ରାପ୍ତ । ଏତଦ୍‌ବ୍ୟତୀତ ତାଙ୍କୁ ବହୁ ସ୍ୱର୍ଣ୍ଣ ପଦକ ଏବଂ ମାନପତ୍ର ସହ ବାଦ୍ୟ ରତ୍ନ, ବାଦ୍ୟ ବ୍ରହ୍ମ, ବାଦ୍ୟ ଭୂଷଣ, ବାଦ୍ୟ ବିନୋଦ ଇତ୍ୟାଦି ବହୁ ପଦବୀ ମିଳିଛି ।

ଓଡ଼ିଶାରେ ଶାସ୍ତ୍ରୀୟ ସଙ୍ଗୀତ ଏବଂ ଶାସ୍ତ୍ରୀୟ ବାଦନର ପ୍ରଚାର ଏବଂ ପ୍ରସାର କ୍ଷେତ୍ରରେ ସେ ଥିଲେ ମୁଖ୍ୟ ପୁରୋଧା । ଆକାଶବାଣୀର ସମସ୍ତ ସାଂସ୍କୃତିକ ଅନୁଷ୍ଠାନରେ ସେ ଜଣେ ଅତ୍ୟନ୍ତ ସମ୍ମାନିତ ସଦସ୍ୟ ଥିଲେ । ତାଙ୍କର ପ୍ରେରଣା ଓ ଶିକ୍ଷାରେ ଓଡ଼ିଶାର ବହୁ ସଙ୍ଗୀତଜ୍ଞ ଆଜି ସୁପ୍ରତିଷ୍ଠିତ । ଏମାନଙ୍କ ମଧ୍ୟରେ ନୃତ୍ୟଗୁରୁ କେଳୁ ଚରଣ ମହାପାତ୍ର । ଶାସ୍ତ୍ରୀୟ ସଙ୍ଗୀତ ଶିଳ୍ପୀ କୁମାରୀ ସୁନନ୍ଦା ପଟ୍ଟନାୟକ, ବୀଣାପାଣି ମିଶ୍ର, ଓଡ଼ିଶୀ କଣ୍ଠଶିଳ୍ପୀ ଶ୍ରୀ ବାଲକୃଷ୍ଣ ଦାସ, ମାର୍କଣ୍ଡେୟ ମହାପାତ୍ର, ପ୍ରଫୁଲ୍ଲ କର, ରାଧାଚରଣ ଘୋଷ, ନୃସିଂହନାଥ ଖୁଣ୍ଟିଆ, ରଘୁନାଥ ପାଣିଗ୍ରାହୀ, କାଶିନାଥ ପୂଜାପଣ୍ଡା, ତବଲା ବାଦକ ହରମୋହନ ଖୁଣ୍ଟିଆ ଏବଂ ପୁତ୍ର ଉମେଶ ଚନ୍ଦ୍ର କର ତାଙ୍କର ଆଲୋକରେ ଉଦ୍ଭାସିତ ।

ଏହି ସମୟରେ ନୃତ୍ୟ ସଙ୍ଗୀତ ପ୍ରତି ସରକାରୀ ପୃଷ୍ଠପୋଷକତା ନ ଥିବା ହେତୁ ନିଜେ ଶ୍ରୀ କର ସଙ୍ଗୀତ ପ୍ରସାର ନିମନ୍ତେ ନିଜର ସର୍ବସ୍ୱ ତ୍ୟାଗ କରି ଦରିଦ୍ର ହୋଇ ଯାଇଥିଲେ । ଶେଷ ଜୀବନରେ ଶ୍ରୀ କର ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ ଭୁବନେଶ୍ୱର ଠାରେ ବହୁବର୍ଷ ଅଧ୍ୟାପନା କରିଥିଲେ । ତାଙ୍କର ଏକକ ପ୍ରଚେଷ୍ଟା ଆଜି ସଫଳ ହୋଇଛି । ତାଙ୍କର ସ୍ୱପ୍ନ ଆଜି ସାକାର ହେବାକୁ ଯାଉଛି । ଆଜି ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ କରିବାର ଚେଷ୍ଟା ଚାଲିଛି ଏବଂ ଓଡ଼ିଶାରେ ଶାସ୍ତ୍ରୀୟ ଗାୟନ ଏବଂ ବାଦନ କ୍ରମେ ଆଦର ଲାଭ କରୁଛି । ଏହି ମହାନ କଳାକାର ୧୯୭୩ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି । ୧୯୮୬ ମସିହାରେ ଶ୍ରୀ କର ଇହଧାମ ତ୍ୟାଗ କରିସାରିଥିଲେ ମଧ୍ୟ ତାଙ୍କର ଅମର ଆତ୍ମା ଆଜିର ସଙ୍ଗୀତ ସାଧକମାନଙ୍କୁ ଯେ ନିରବଚ୍ଛିନ୍ନ ପ୍ରେରଣା ଯୋଗାଇ ଚାଲିଥିବ ଏହା ନିଃସନ୍ଦେହ ।

●

# ସ୍ୱର୍ଗତ ଦେବପ୍ରସାଦ ଦାସ

## କେଉଁଲ ଛବ ଶୁଆ, କଟକ

(୧୯୩୨—୧୯୮୬)



ଓଡ଼ିଶୀ ନୃତ୍ୟ ଶୈଳୀର ତିନି ବରିଷ୍ଠ ଗୁରୁଙ୍କ ମଧ୍ୟରେ ଗୁରୁ ଦେବପ୍ରସାଦ ଦାସ ସର୍ବକନିଷ୍ଠ ହେଲେହେଁ ତାଙ୍କର ଶିକ୍ଷା ପରିବେଶ ଅନ୍ୟାନ୍ୟ ଗୁରୁମାନଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । କଟକ ଜିଲ୍ଲାର ମା ଶାରଳାଙ୍କ ମନ୍ଦିର ନିମନ୍ତେ ପ୍ରସିଦ୍ଧ ଝଙ୍କଡ଼ ନିକଟସ୍ଥ କେଉଁଲ-ଛବଶୁଆ ଗ୍ରାମରେ ୧୯୩୨ ମସିହାରେ ଗୁରୁ ଦେବପ୍ରସାଦ ଦାସଙ୍କର ଜନ୍ମ । ତାଙ୍କର ପିତା ଦୁର୍ଗାଚରଣ ଦାସ ଜଣେ ପୋଲିସ ଇନ୍‌ସପେକ୍ଟର ଥିଲେ । ଶୈଶବ ଅବସ୍ଥାରେ ହିଁ ତାଙ୍କ ମାତା ଇନ୍ଦ୍ରମଣି ଦେବୀଙ୍କର ଦେହାନ୍ତ ହୋଇଥିଲା । ତାଙ୍କର ଜେଜେ ବାଉରିବନ୍ଧୁ ଦାସ ଜଣେ ଭଲ ବେହେଲା ବାଦକ ଥିଲେ ଓ ତାଙ୍କର ପ୍ରଭାବ ଶିଶୁ ଦେବପ୍ରସାଦଙ୍କ ଉପରେ ବହୁଳ ଭାବରେ ପଡ଼ିଥିଲା । ବାଉରିବନ୍ଧୁ ଦାସ କେଉଁଲ ଯାତ୍ରା ଦଳର ସଙ୍ଗୀତ ଓସ୍ତାଦ୍ ଥିଲେ । ଦେବ ପ୍ରସାଦ ତାଙ୍କ ନିକଟରେ ନିଜର ପ୍ରାଥମିକ ସଙ୍ଗୀତ ଶିକ୍ଷା ଲାଭ କରିଥିଲେ ଛାନ୍ଦ, ଚୌପଦୀ, କେଶବ କୋଇଲି, କାନ୍ତକୋଇଲି, ମନବୋଧ ଚଉତିଶା, ଅବକାଶ ଚନ୍ତା ଇତ୍ୟାଦି ମାଧ୍ୟମରେ—ପରେ ସେ ତାଙ୍କର ମାଉଲାଳୟରେ ଶିକ୍ଷାଲାଭ କରିବାକୁ ଗଲେ ମଧ୍ୟ ପାଠପଢ଼ାରେ କୌଣସି ଉନ୍ନତି କରି ପାରିନଥିଲେ ।

ପରବର୍ତ୍ତୀ ସମୟରେ ସେ କମ୍ବଦନ୍ତୀ ପୁରୁଷ ଗୋଟିପୁଅ ନୃତ୍ୟର ଗୁରୁ ମୋହନ ଚରଣ ମହାପାତ୍ରଙ୍କ ନିକଟରୁ ନୃତ୍ୟ ଶିକ୍ଷାରେ ବ୍ରତୀ ହୋଇଥିଲେ ପଥରଆଖଡ଼ାଠାରେ । ବହୁ ଆୟାସ ପରେ ମାଇନର ପାଶ୍ ପରେ ତାଙ୍କର ପାଠରେ ଡୋରି ବନ୍ଧାହେଲା । ପରେ ସେ ଗଞ୍ଜାମରେ ନିଜ ପିତାଙ୍କ ନିକଟକୁ ଉଚ୍ଚ ଶିକ୍ଷା ନିମନ୍ତେ ଗଲେ ମଧ୍ୟ ସେଠାରେ ପାଠ ପରିବର୍ତ୍ତେ ପ୍ରହ୍ଲାଦ ପଟ୍ଟନାୟକଙ୍କଠାରୁ ଟେରାକୋଟା ଶିଳ୍ପ ଏବଂ ଚିତ୍ରକଳା ଶିକ୍ଷା କଲେ । ଏଥିନିମନ୍ତେ ଘରୁ ତାଙ୍କୁ ନିର୍ଯ୍ୟାତନା ମିଳିବାରୁ ସେ ୧୯୪୪ ମସିହାରେ ଗୃହରୁ ଲୁଚି ପଳାଇଯାଇ 'ନିଉ ଥିଏଟର୍'ରେ ଯୋଗଦାନ କରି ୧୯୪୯ ମସିହା ପର୍ଯ୍ୟନ୍ତ ତହିଁରେ କାର୍ଯ୍ୟ କରିଥିଲେ । ଉକ୍ତ ଥିଏଟର୍‌ରେ ସେ ମୁଖ୍ୟତଃ ସ୍ତ୍ରୀ ଚରିତ୍ରରେ ଅଭିନୟ କରୁଥିଲେ ମଧ୍ୟ ହାସ୍ୟ ଅଭିନୟରେ ମଧ୍ୟ ସେ ବହୁ ନାଁ କମାଇଥିଲେ ।

ତତ୍ପରେ ସେ 'ଅନ୍ନପୂର୍ଣ୍ଣା ଥିଏଟର୍'ରେ ଯୋଗଦାନ କରନ୍ତି ଜଣେ ନର୍ତ୍ତକ ଏବଂ ହାସ୍ୟ ଅଭିନେତା ଭାବେ । ଏହି ସମୟରେ ମାନ୍ଦ୍ରାଜର କୁମାର ଦୟାଲ ସରନ୍‌ଙ୍କ ନିକଟରୁ

ବିଭିନ୍ନ ଶାସ୍ତ୍ରୀୟ ନୃତ୍ୟର ମୂଳତତ୍ତ୍ୱ ସବୁ ଶିକ୍ଷା କରିବାର ସୁଯୋଗ ସେ ଲାଭ କରିଥିଲେ । ୧୯୫୦ ମସିହାରେ ଶ୍ରୀ ଦେବପ୍ରସାଦ ଅନ୍ୟାନ୍ୟ ଯୁବ ପ୍ରତିଭାମାନଙ୍କୁ ନୃତ୍ୟ ଶିକ୍ଷା ଦେବାକୁ ଆରମ୍ଭ କଲେ । ୧୯୫୪ ମସିହାରେ ଭାରତ ନାଟ୍ୟମ୍‌ର ପ୍ରସିଦ୍ଧ ନୃତ୍ୟାଙ୍ଗନା ଇନ୍ଦ୍ରାଣି ରହମନ୍ ତାଙ୍କର ଶିଷ୍ୟା ହେଲେ ଏବଂ ଓଡ଼ିଶୀ ନୃତ୍ୟ ଗୁରୁ ଭାବେ ସେ ସମସ୍ତଙ୍କ ନିକଟରେ ପରିଚିତ ହେଲେ । ପରବର୍ତ୍ତୀ ସମୟରେ ସେ ଶିଷ୍ୟା ଇନ୍ଦ୍ରାଣୀ ରହମନ୍‌ଙ୍କୁ ଓଡ଼ିଶୀ ନୃତ୍ୟ ଶିକ୍ଷା ଦେଇ ଦେଶ ବିଦେଶର ଦର୍ଶକମାନଙ୍କ ଆଗରେ ତାଙ୍କୁ ଉପସ୍ଥାପିତ କରି ଅଜସ୍ର ସମ୍ମାନ ଏବଂ ପ୍ରଶଂସାର ଅଧିକାରୀ ହୋଇଥିଲେ ।

୧୯୬୦ ମସିହାରେ ସେ ଓଡ଼ିଶୀ ସଙ୍ଗୀତ ଶିକ୍ଷକ ଭାବରେ "ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ"ରେ ଯୋଗଦାନ କରି ମୃତ୍ୟୁ ପର୍ଯ୍ୟନ୍ତ ସେଠାରେ କାର୍ଯ୍ୟରତ ଥିଲେ । ତାଙ୍କର ଅନେକ ଶିଷ୍ୟ ଶିଷ୍ୟାଙ୍କ ମଧ୍ୟରେ ନୃତ୍ୟାଙ୍ଗନା ବିଜୟଲକ୍ଷ୍ମୀ ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଶୀ ନୃତ୍ୟର ତିନି ଗୁରୁଙ୍କ ମଧ୍ୟରେ ଏକମାତ୍ର ଦେବପ୍ରସାଦ ହିଁ ଓଡ଼ିଶା ବାହାରକୁ ପ୍ରଥମେ ବାହାରି ଅନ୍ୟାନ୍ୟ ନୃତ୍ୟ ଶୈଳୀର ସଂସ୍ପର୍ଶରେ ଆସିପାରିଥିଲେ । ଅନ୍ୟ ଗୁରୁ ମାନଙ୍କଠାରୁ ସେ ଅଲଗା ଥିଲେ ତାଙ୍କର ନୃତ୍ୟ କ୍ଷେତ୍ରରେ ରକ୍ଷଣଶୀଳତା ପାଇଁ । ଆଧୁନିକ ଓଡ଼ିଶୀ ପୋଷାକ ବା ସିଲେଇ ହୋଇଥିବା ପୋଷାକକୁ ସେ ଆଦୌ ପସନ୍ଦ କରୁ ନଥିଲେ । ଭୁଲଣି ବା ପଗୁଣି ଦଣ୍ଡକରେ ବ୍ୟବହୃତ ଶୈଳୀକୁ ଅନୁସରଣ କରି ତାକୁ ପରିମାର୍ଜିତ ଭାବରେ ଜନ ସମ୍ମୁଖରେ ତୋଳିଧରିବା କ୍ଷେତ୍ରରେ ସେ ଥିଲେ ଅଗ୍ରଗଣ୍ୟ । ନୃତ୍ୟରେ ଆଦି ନାଟ, ଅଷ୍ଟଶମ୍ଭୁ, କଲ୍ୟାଣୀ, ବସନ୍ତ ଏବଂ କଳାବତୀ ରାଗରେ ପଲ୍ଲବୀ ଏବଂ ଶେଷରେ ମୋକ୍ଷ ତାଙ୍କ ନୃତ୍ୟ ଶୈଳୀର ବିଶେଷତ୍ୱ ।

ବହୁ ବିଳମ୍ବରେ ଶ୍ରୀ ଦାସ ନୃତ୍ୟ କ୍ଷେତ୍ରରେ ନିଜର ପରିଚିତ ଲାଭ କରିଥିଲେ । ୧୯୭୭ ମସିହାରେ ତାଙ୍କୁ ସଙ୍ଗୀତ ନାଟକ ଏକାଡେ଼ମୀର ପୁରସ୍କାର ମିଳିଥିଲା । ଏତଦ୍-ବ୍ୟତୀତ ୧୯୮୩ ମସିହାରେ ତାଙ୍କୁ ବିଶ୍ୱ ଉନ୍ନୟନ ସଂସ୍ଥା (World Development Corporation) ନିକଟରୁ ମଧ୍ୟ ସମ୍ମାନ ଓ ପୁରସ୍କାର ମିଳିଥିଲା । ମହାପ୍ରଭୁ ଜଗନ୍ନାଥଙ୍କ ଜଗନ୍ନାଥ ସେବା ଏବଂ ଆଖଡ଼ା ସମ୍ପ୍ରଦାୟଙ୍କ ଉପରେ ଗବେଷଣା ହେତୁ ତାଙ୍କୁ ଭାରତ ସରକାରଙ୍କ ସଂସ୍କୃତି ବିଭାଗରେ ଉଚ୍ଚ ସଦସ୍ୟତା (Senior fellowship) ମିଳିଥିଲା । ତାଙ୍କ ରଚିତ "ନୃତ୍ୟାନୁସରଣୀ" ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ଏକ ବହୁମୂଲ୍ୟ ସୃଷ୍ଟି ଏବଂ ଏବେ ତାହା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପ୍ରକାଶିତ । ଜୁଲାଇ ମାସ ୧୭ ତାରିଖରେ ମାତ୍ର ୫୪ ବର୍ଷ ବୟସରେ ସେ ଇହଧାମ ତ୍ୟାଗ କରିଥିଲେ ମଧ୍ୟ ନିଜର କଳାନୁରାଗୀ ବନ୍ଧୁ, ଶିଷ୍ୟ ଶିଷ୍ୟା ଓ ଶୁଭେଚ୍ଛୁ ମାନଙ୍କ ନିକଟରେ ସେ ସଦା ଜୀବିତ ରହିବେ ।

## ସ୍ୱର୍ଗତ ଶ୍ୟାମସୁନ୍ଦର ଧୀର
### ଗଡ଼ମଧୁପୁର, କଟକ
### (୧୮୯୭—୧୯୮୮)



ଓଡ଼ିଶାରେ ଓଡ଼ିଶୀ ସଙ୍ଗୀତ ଓ ହିନ୍ଦୁସ୍ଥାନୀ ସଙ୍ଗୀତର ପ୍ରଚାର ଏବଂ ପ୍ରସାରରେ ବିଂଶ ଶତାବ୍ଦୀର ଆରମ୍ଭରେ ଯେଉଁମାନେ ପ୍ରୟାସୀ ହୋଇଥିଲେ ସେମାନଙ୍କ ମଧ୍ୟରେ ୧୮୯୭ ମସିହାରେ କଟକ ଜିଲ୍ଲାର ଗଡ଼ମଧୁପୁରଠାରେ ˚ ଜଗବନ୍ଧୁ ଧୀରଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରିଥିବା ସ୍ୱର୍ଗତ ଶ୍ୟାମସୁନ୍ଦର ଧୀରଙ୍କ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ—ମାତ୍ର ପାଞ୍ଚବର୍ଷ ବୟସରୁ ନିଜ ପିତାଙ୍କ ନିକଟରୁ ସଙ୍ଗୀତ ଶିକ୍ଷା ଆରମ୍ଭ କରିଥିବା ଏହି ସୁଯୋଗ୍ୟ କଳାର ପୂଜାରୀ ଗଡ଼ମଧୁପୁର ପଞ୍ଚାୟତ ୰ ବଳଦେବ ଧୀରଙ୍କ ସାହଚର୍ଯ୍ୟ ଲାଭ କରି ଜୟପୁର ଦରବାରର ପ୍ରସିଦ୍ଧ ଗୁରୁ ˚ ହନୁମାନ ପ୍ରସାଦ ଏବଂ ତାଙ୍କ ପୁତ୍ର ୰ ରାମ ପ୍ରସାଦ ଲୁବେଙ୍କ ନିକଟରୁ ଶାସ୍ତ୍ରୀୟ ସଙ୍ଗୀତରେ ବିଶେଷ ଶିକ୍ଷା ଲାଭ କରିଥିଲେ । ନିଜ ଗାୟନ ମଧ୍ୟରେ ଛନ୍ଦ ଏବଂ ଧ୍ରୁପଦ୍ ଶୈଳୀର ସୂକ୍ଷ୍ମ ବିଭାଗ ସବୁକୁ ସ୍ୱାଭାବିକ କଣ୍ଠରେ ପରିବେଷଣ କରିବାରେ ତାଙ୍କର ବିଶେଷ ସାମର୍ଥ୍ୟ ରହିଥିଲା । ଶାସ୍ତ୍ରୀୟ ଗାୟନ ସଙ୍ଗେ ସଙ୍ଗେ ସେ ସିତାର ଏବଂ ବିଭିନ୍ନ ତାଳ ବାଦ୍ୟ ବଜାଇବାରେ ମଧ୍ୟ ବ୍ୟୁତ୍ପତ୍ତି ଲାଭ କରିଥିଲେ ।

ସଙ୍ଗୀତ ଶିକ୍ଷାରେ ପୂର୍ଣ୍ଣତା ଲାଭ କରିବା ପରେ ସେ ˚ ବଳଦେବ ଧୀରଙ୍କ ସହ ଅଧିକ ଶାସ୍ତ୍ରୀୟ ଶିକ୍ଷା ଏବଂ ପରିବେଷଣ ନିମନ୍ତେ ଭାରତର ବିଭିନ୍ନ ପ୍ରାନ୍ତ ଏବଂ ନେପାଳ, ଭୂଟାନ୍ ଓ ସିକିମ୍ ଆଦି ପଡ଼ୋଶୀ ରାଷ୍ଟ୍ର ସବୁ ଭ୍ରମଣ କରି ପ୍ରଚୁର ନାମ କମାଇଥିଲେ ।

ଓଡ଼ିଶାର ନିଜ ବିଳୟମାନ ପ୍ରାଚୀନ ସଙ୍ଗୀତକୁ ରକ୍ଷା କରିବା ଦିଗରେ ବୋଧହୁଏ ସେ ସର୍ବପ୍ରଥମେ ଚେଷ୍ଟିତ ହୋଇଥିଲେ । ଏହି ଗାୟନଶୈଳୀ ମହାମୁନି ଭରତଙ୍କ ନାଟ୍ୟ ଶାସ୍ତ୍ରରେ "ଉଡ୍ର ମାଗଧି ଶୈଳୀ" ଭାବରେ ବର୍ଣ୍ଣିତ ।

ଜଣେ ସଙ୍ଗୀତ ଶିକ୍ଷକରୂପେ ଓଡ଼ିଶାର ସଙ୍ଗୀତ ରାଜ୍ୟକୁ ତାଙ୍କର ଦାନ ଅତୁଳନୀୟ । ଶିକ୍ଷା ଦାତା ଭାବରେ କୌଣସି ଛାତ୍ରଠାରୁ ଅର୍ଥ ଗ୍ରହଣ କରିବା ତାଙ୍କର ନୀତି ବିରୋଧି ଥିଲା । ତତ୍କାଳୀନ ପ୍ରଥମ ଓଡ଼ିଆ ଡ.ପି.ଆଇ. ˚ ଶ୍ୟାମଚନ୍ଦ୍ର ତ୍ରିପାଠୀ ଏବଂ ବରେଣ୍ୟ

ପ୍ରାଣକୃଷ୍ଣ ପରିଜାଙ୍କ ଦ୍ୱାରା ଆହୁତ ହୋଇ ସେ ରେଭେନ୍‌ସା କଲେଜର କୈଶ ଶ୍ରେଣୀରେ ସଙ୍ଗୀତ ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । ତାଙ୍କର ପ୍ରୀୟ ଶିଷ୍ୟା ଶ୍ରୀମତୀ ବୀଣାପାଣି ମହାନ୍ତି ୧୯୩୮ ମସିହାରେ 'ଅଲ୍ ବେଙ୍ଗଲ ମ୍ୟୁଜିକ୍ କନ୍‌ଫରେନ୍‌ସରେ' ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲେ । ତାଙ୍କର ଅନ୍ୟ ଶିଷ୍ୟମାନଙ୍କ ମଧ୍ୟରେ ଏଲ.ସି. ସିଂହ (ଆଇ.ସି.ଏସ୍), ସି. ଏସ୍. ଝା (ଆଇ.ସି.ଏସ୍) ଏବଂ ସୁରେଶ ଦେ (ଆଇ.ସି.ଏସ୍) ମାନଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ୧୯୨୦ ମସିହାରେ ଶ୍ରୀ ଧୀରଙ୍କ ପ୍ରଚେଷ୍ଟାରେ କଲିକତା ନଗରୀରେ "ଉତ୍କଳ ସଙ୍ଗୀତ ସମାଜ" ପ୍ରତିଷ୍ଠିତ ହୋଇଥିଲା ।

ନିଜର ସାଧନା ଉପାର୍ଜିତ ଜୀବନକାଳ ମଧ୍ୟରେ ଶ୍ରୀ ଧୀର ଆକାଶବାଣୀ କଟକ କେନ୍ଦ୍ରରେ ଅଡିସନ୍ ବୋର୍ଡ଼ର ଜଣେ ସଦସ୍ୟ ଥିଲେ । ଓଡ଼ିଶାର ଛାନ୍ଦ ଓ ଚମ୍ପୂ ସମିତିର ସଦସ୍ୟ ତଥା ଓଡ଼ିଶାର ମାଧ୍ୟମିକ ଶିକ୍ଷା ବୋର୍ଡରେ ପ୍ରଧାନ ପରୀକ୍ଷକ ଭାବରେ ମଧ୍ୟ ସେ ଦୀର୍ଘଦିନ କାର୍ଯ୍ୟ କରିଥିଲେ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ସହ ମିଳିତ ଭାବରେ ସେ 'ଜୟଦେବ କଲେଜ ଅଫ୍ ମିଉଜିକ୍' ଭୁବନେଶ୍ୱରଙ୍କ ନିମନ୍ତେ ପାଠ୍ୟକ୍ରମ ମଧ୍ୟ ପ୍ରସ୍ତୁତ କରିଥିଲେ । ନିଜର ଏକକ ପ୍ରଚେଷ୍ଟା ବଳରେ ସେ "ଉତ୍କଳ ସଙ୍ଗୀତ ପଦ୍ଧତି" ନାମକ ଏକ ଅତ୍ୟନ୍ତ ଅମୂଲ୍ୟ ଗ୍ରନ୍ଥ ରଚନା କରି ଯାଇଛନ୍ତି । ଏହି ପୁସ୍ତକରେ ତାଙ୍କର ସ୍ୱରଚିତ ପଚିଶଟି ଗୀତ ରହିଅଛି । ଏହି ଗୀତଗୁଡ଼ିକ ସାଙ୍କେତିକ ଭାବରେ 'ଛନ୍ଦ ସାହିତ୍ୟ' ଅନୁକରଣରେ ବିଭିନ୍ନ ରାଗ ଏବଂ ତାଳ ଉପରେ ଏଭଳି ଭାବରେ ସଂଯୋଜିତ ଯେ ତାହା ଭାରତର ଯେ କୌଣସି ପ୍ରାନ୍ତରେ ବୋଧଗମ୍ୟ । ଏହି ଗ୍ରନ୍ଥରେ ଓଡ଼ିଶାର ଅନେକ ଲୁପ୍ତ ଏବଂ ଲୁପ୍ତପ୍ରାୟ ରାଗସବୁ ସମ୍ବନ୍ଧରେ ସୂଚନା ମିଳିଥାଏ । ସଙ୍ଗୀତ ବିଜ୍ଞାନରେ ଏହିଭଳି ରଚୟିତାମାନଙ୍କୁ 'ବାଗ୍‌ଗେୟକାର' ବୋଲି ଅଭିହିତ କରାଯାଇଥାଏ ।

୧୯୭୭ ମସିହାରେ ଓଡ଼ିଶାମାତାର ଏହି ସୁଯୋଗ୍ୟ ସନ୍ତାନଙ୍କୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କୃତ ଏବଂ ସମ୍ମାନିତ କରିଛନ୍ତି । ଓଡ଼ିଶାର ଅନ୍ୟାନ୍ୟ ସଙ୍ଗୀତ ଅନୁଷ୍ଠାନମାନେ ତାଙ୍କୁ "ସଙ୍ଗୀତ ମଉଡ଼ମଣି" ଉପାଧିରେ ଭୂଷିତ କରିଅଛନ୍ତି ।

ପ୍ରତ୍ୟେକ ସଙ୍ଗୀତପ୍ରେମୀ ମାନଙ୍କ ନିମନ୍ତେ ତାଙ୍କ ଦ୍ୱାର ସଦା ଉନ୍ମୁକ୍ତ ରହୁଥିଲା । ୧୯୮୮ ମସିହା ଜାନୁୟାରୀ ମାସ ୧୭ ତାରିଖରେ କଟକସ୍ଥ ତାଙ୍କ ବାସଭବନରେ ତାଙ୍କର ମହାପ୍ରୟାଣ ଘଟି ଆମ ସଙ୍ଗୀତ ଜଗତରେ ଯେଉଁ ଅପୂରଣୀୟ କ୍ଷତି ଘଟିଲା ତାହା ଆଉ କାହାଦ୍ୱାରା ପୂରଣ ହେବା ସମ୍ଭବପର ନୁହେଁ ।

# ଶ୍ରୀ ଯତୀନ ଦାସ

## ଅଣ୍ଡ୍ରଇ, ବାଲେଶ୍ୱର

**ଜନ୍ମ—୧୯୨୦, ନଭେମ୍ବର ୨୨**



ବିଭିନ୍ନ ଚରିତ୍ରରେ ସଫଳତାର ସହ ଅଭିନୟ କରି ବେତାର, ଚଳଚ୍ଚିତ୍ର ଓ ନାଟ୍ୟ ଜଗତରେ ବହୁମୁଖୀ ପ୍ରତିଭାସମ୍ପନ୍ନ ଅଭିନେତା ଭାବରେ ଯେଉଁମାନେ ନିଜକୁ ଚିହ୍ନିତ କରାଇ ପାରିଛନ୍ତି ସେହି ସବୁ କଳାକାରଙ୍କ ମଧ୍ୟରେ ଓଡ଼ିଆ, ବଙ୍ଗଳା ଏବଂ ହିନ୍ଦୀ ରଙ୍ଗମଞ୍ଚର ସୁପ୍ରସିଦ୍ଧ ଅଭିନେତା ଏବଂ ଆକାଶବାଣୀର ଅପ୍ରତିଦ୍ୱନ୍ଦୀ କଳାକାର ଶ୍ରୀଯୁକ୍ତ ଯତୀନ୍ ଦାସଙ୍କ ନାମ ଅଗ୍ରଗଣ୍ୟ ।

୧୯୨୦ ମସିହା ନଭେମ୍ବର ମାସ ୨୨ ତାରିଖ ଦିନ ଶ୍ରୀଯୁକ୍ତ ଦାସ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଅଣ୍ଡ୍ରଇ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଶ୍ୟାମଚରଣ ଦାସ ଜଣେ ପଦସ୍ଥ ପୋଲିସ୍ ଅଫିସର ଥିଲେ । କାର୍ଯ୍ୟ ଉପଲକ୍ଷରେ ତାଙ୍କୁ ବେଶୀ ସମୟ ବାହାରେ କଟାଇବାକୁ ପଡୁଥିବାରୁ ନିଜର ଏକମାତ୍ର ପୁତ୍ରର ଶିକ୍ଷାପ୍ରତି ସେ ବିଶେଷ ଧ୍ୟାନ ଦେଇ ପାରି ନଥିଲେ । ତେଣୁ ସେ ଯତୀନ୍‌ଙ୍କୁ ପାଟନାରେ ଥିବା ତାଙ୍କ ଦାଦାଙ୍କ ନିକଟକୁ ପଠାଇ ଦେଲେ । ମାତ୍ର ଯତୀନ୍‌ଙ୍କର ପିଲାଟି ଦିନରୁ ଯାତ୍ରା, ପାଲା, ସୁଆଙ୍ଗ ଇତ୍ୟାଦି ପ୍ରତି ଗଭୀର ଆକର୍ଷଣ ଥିଲା । ଏହି ଆକର୍ଷଣର ପ୍ରଭାବରେ ସେ ନିଜ ଗୃହ ତ୍ୟାଗ କରି ଏକ ଯାତ୍ରାଦଳରେ ଯୋଗଦାନ କରିଥିଲେ । ତତ୍ପରେ ୧୯୩୯ ମସିହାରେ ଯେତେବେଳେ କଲିକତା ଆକାଶବାଣୀରୁ ଓଡ଼ିଆ କାର୍ଯ୍ୟକ୍ରମ ପ୍ରସାରର ବ୍ୟବସ୍ଥା ହେଲା ସେତେବେଳେ ଶ୍ରୀ ଦାସ ମାତ୍ର ୧୯ ବର୍ଷ ବୟସରେ ଜଣେ ଉଦ୍‌ଘୋଷକ ଭାବରେ ଆକାଶବାଣୀରେ ଯୋଗଦାନ କଲେ । ୧୯୪୧ ମସିହାରେ ସେ 'ପ୍ରବାସି ଉତ୍କଳ କଳାକାର ସଙ୍ଘ' ନାମରେ ଗୋଟିଏ ସାଂସ୍କୃତିକ ସଂସ୍ଥା ଗଠନ କରି କଲିକତାରେ ସର୍ବପ୍ରଥମ 'କର୍ଣ୍ଣାର୍ଜ୍ଜୁନ' ନାଟକ ମଞ୍ଚସ୍ଥ କରାଇଥିଲେ । ୧୯୪୫ ମସିହାରେ ତାଙ୍କୁ "ଅଲ୍ ବେଙ୍ଗଲ୍ ଆର୍ଟିଷ୍ଟ ଆସୋସିଏସନ୍"ର ପରିଚାଳନା କମିଟିରେ ସଦସ୍ୟ ଭାବରେ ଗ୍ରହଣ କରାଗଲା । ଏହି ସମୟରେ 'ସେ ସାଥୀ' ଏବଂ 'ପର ପାରେ' ନାମକ ଦୁଇଟି ବଙ୍ଗଳା ଛବିରେ ଅଭିନୟ କରିଥିଲେ । ଏହାପରେ କଟକ ଆକାଶବାଣୀ ଆରମ୍ଭ ବେଳକୁ ତାଙ୍କୁ ୧୯୪୮ ମସିହାରେ ପୁଣି କଟକ ଫେରିବାକୁ ପଡ଼ିଥିଲା । କାରଣ ଆକାଶବାଣୀରେ ସେତେବେଳେ ଓଡ଼ିଆ କର୍ମଚାରୀ କେହି ନଥିଲେ ।

୧୯୪୯ ମସିହା ଅଗଷ୍ଟ ମାସ ୨୨ ତାରିଖରେ ସେ ଦିଲ୍ଲୀ ଆକାଶବାଣୀରେ ଓଡ଼ିଆ ସମ୍ବାଦ ବିଭାଗରେ ଯୋଗଦେଲେ । ୧୯୬୨ ମସିହାରେ ସେ ସେହି ବିଭାଗର ପରିଚାଳନା ଦାୟିତ୍ୱରେ ରହିଲେ । ୧୯୪୯ ମସିହାରେ ତାଙ୍କ ହିନ୍ଦୀ ବେତାର ନାଟକରେ ଅଂଶଗ୍ରହଣ

କରିବାର ସୁଯୋଗ ମିଳିଲା । ଅନେକ ଦିନ ମଧ୍ୟରେ ସେ ନିଜକୁ ହିନ୍ଦି ଓ ବିଶେଷକରି ବଙ୍ଗଳା ଥିଏଟର୍ ଓ ଯାତ୍ରାରେ ଜଣେ ଶୀର୍ଷସ୍ଥାନୀୟ ଅଭିନେତା ଭାବରେ ପ୍ରତିଷ୍ଠିତ କରିନେଲେ । ୧୯୬୭ ମସିହାରେ ରାଜଧାନୀର ବଙ୍ଗଳା ନାଟକ ପ୍ରତିଯୋଗିତାରେ ତାଙ୍କୁ ଶ୍ରେଷ୍ଠ ପାର୍ଶ୍ୱ ଅଭିନେତା ଭାବରେ ଘୋଷଣା କରାଯାଇଥିଲା । ୧୯୬୭ ମସିହାରେ ରାଜଧାନୀ ଦିଲ୍ଲୀରେ ଗଢ଼ି ଉଠିଥିବା ବଙ୍ଗଳା ଅପେରା ଦଳ "ଶ୍ରୀମତି ଅପେରା"ର ସେ ସଭାପତି ନିର୍ବାଚିତ ହୋଇଥିଲେ । ୧୯୭୨ ମସିହାରେ ବଙ୍ଗଳା ଦେଶର ନେତା "ମୁଜିବୁର୍ ରହମାନଙ୍କ ମୁକ୍ତି ପରେ ସେ ଦେଶର ପ୍ରତ୍ୟାବର୍ତ୍ତନର ଧାରା ବିବରଣୀ ବଙ୍ଗଳା ଭାଷାରେ ଦେଇ ସମସ୍ତଙ୍କ ଅକୁଣ୍ଠ ପ୍ରଶଂସା ଲାଭ କରିଥିଲେ ।

ସେ ବିଭିନ୍ନ ସମୟରେ ରାଜ୍ୟ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଏଜୁକେସନ ଟେକନୋଲୋଜିର ସଭ୍ୟ, ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀର ସଭ୍ୟ, ଅଲ୍ ଓଡ଼ିଶା ଥିଏଟର କୋଅର୍ଡିନେଶନ୍ କମିଟିର ଚେୟାରମ୍ୟାନ୍, ଏଜୁକେଶନାଲ ଟେଲିଭିଜନର ଓଡ଼ିଆ ଭାଷା ସୁପର୍‌ଭାଇଜର, ଜାତୀୟ ଚଳଚ୍ଚିତ୍ର ପୁରସ୍କାର କମିଟିର ସଭ୍ୟ, ଭାରତ ସରକାରଙ୍କ ସାଂସ୍କୃତିକ ବିଭାଗ ତରଫରୁ ହୋଇଥିବା ନାଟକ ପାଣ୍ଡୁଲିପି ପ୍ରତିଯୋଗିତା କମିଟିର ବିଚାରକ ଭାବରେ କାର୍ଯ୍ୟ କରିଛନ୍ତି ।

ସମ୍ବାଦ ପରିବେଷଣ ତଥା ସାଂସ୍କୃତିକ କ୍ଷେତ୍ରରେ ବିଶେଷ ଅବଦାନ ତାଙ୍କୁ ବହୁ ସମ୍ମାନ ଓ ପୁରସ୍କାର ଆଣି ଦେଇଛି । ଓଡ଼ିଆ ସମ୍ବାଦ ପଠନ ପାଇଁ "କ୍ରିଟିକ୍ ସର୍କଲ ଅଫ୍ ଇଣ୍ଡିଆ" ର "ଇଣ୍ଡିଆନ୍ ପ୍ରାଇଜ୍" ୧୯୭୬ ମସିହାରେ ଓଡ଼ିଶା ବାହାରେ ଓଡ଼ିଶାର କଳା ଓ ସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ତାଙ୍କୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ସମ୍ମାନ, ୧୯୬୩ ମସିହାରେ ଅଭିନୟ ପାଇଁ ପ୍ରଜାତନ୍ତ୍ର ପ୍ରଚାର ସମିତି ସମ୍ମାନ ମିଳିଥିଲା । ସେହି ବର୍ଷ ଶ୍ରୀ ଦାସ ଓଡ଼ିଆ ଚଳଚ୍ଚିତ୍ର ମାଣିକଯୋଡ଼ିରେ 'ବରଦା ରାୟ' ଭୂମିକାରେ ଅବିସ୍ମରଣୀୟ ଅଭିନୟ କରିଥିଲେ । ବଙ୍ଗଳା ନାଟକରେ ଏକକ ଅଭିନୟ ପାଇଁ ୧୯୬୯ ମସିହାରେ ଶ୍ରେଷ୍ଠ ଚରିତ୍ର ଅଭିନେତାର ସମ୍ମାନ, ଉତ୍କଳ ପାଠକ ସଂସଦର ସମ୍ମାନ, ବୃହତ୍ତର କଲିକତା ଉତ୍କଳ ସମାଜର ସମ୍ମାନ, ଓଡ଼ିଶା ଘୋଷକ ଓ ଶ୍ରୋତା ସଙ୍ଘ ସମ୍ମାନ, ଦିଲ୍ଲୀ ଓଡ଼ିଆ ସମାଜର ସମ୍ମାନ ଏବଂ ୧୯୮୦ ମସିହାରେ ରାଉରକେଲାର ଉଣେଇଶଟି ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ମିଳିତଭାବେ ମିଳିଥିବା ସମ୍ମାନ ଉଲ୍ଲେଖଯୋଗ୍ୟ ।

ଜୀବନର ସାତଟି ଦଶନ୍ଧି ସଫଳତାର ସହ ଅତିକ୍ରମ କରିବା ପରେ ମଧ୍ୟ ସେ ଚୁପ୍‌ହୋଇ ବସି ରହି ନାହାନ୍ତି । ଏବେ ଦିଲ୍ଲୀର ଏଜୁକେଶନାଲ ଟେଲିଭିଜନ୍ ପାଇଁ ଓଡ଼ିଆ ଭାଷାର ସୁପର୍‌ଭାଇଜର ରୂପେ ସେ କାର୍ଯ୍ୟରତ । ଏହି କର୍ମଦକ୍ଷ ପୁରୁଷ ଆହୁରି ଅନେକ ଦିନ ବଞ୍ଚି ରହି ଓଡ଼ିଆ ଭାଷା ଓ ସଂସ୍କୃତିର ଆହୁରି ଉନ୍ନତି ସାଧନ କରି ଚାଲନ୍ତୁ ଏହାହିଁ ବିଶ୍ୱ ନିୟନ୍ତାଙ୍କ ଦରବାରରେ ଆମ ସମସ୍ତଙ୍କର କାମନା ।

●

## ଶ୍ରୀମତୀ ମିନତୀ ମିଶ୍ର

### ତିନିକୋଣିଆ ବଗିଚା, କଟକ

ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟରୂପେ ପ୍ରତିଷ୍ଠା ଦେବାକୁ ଯେଉଁ କେତେଜଣ ନାଗରିଲୀ ନିଜର ପାଣ ମଣ କରି ଚେଷ୍ଟାରତ ହୋଇ ଶେଷରେ ସଫଳକାମ ହୋଇଥିଲେ ସେମାନଙ୍କ ମଧ୍ୟରେ ବରିଷ୍ଠ ଓଡ଼ିଶୀ ନୃତ୍ୟ ଶିଳ୍ପୀ ଭାବରେ ଶ୍ରୀମତୀ ମିନତୀ ମିଶ୍ରଙ୍କର ନାମ ବିଶେଷ ଉଲ୍ଲେଖଯୋଗ୍ୟ ।

କଟକ ସହରର ଏକ ସମ୍ଭ୍ରାନ୍ତ ପରିବାରରେ ଶ୍ରୀମତୀ ମିଶ୍ରଙ୍କର ଜନ୍ମ । ଅତି ବାଲ୍ୟାବସ୍ଥାରୁ ସେ ନୃତ୍ୟକଳା ପ୍ରତି ଆକୃଷ୍ଟ ହୋଇଥିଲେ । ତାଙ୍କର ପ୍ରଥମ ନୃତ୍ୟ ଗୁରୁ ଥିଲେ ଅଜିତ୍ ଘୋଷ ଏବଂ ଶ୍ରୀ ବନ ବିହାରୀ ମାଇତି । ଏହାପରେ ସେ ଓଡ଼ିଆରେ ଏମ୍.ଏ. ପାଶ୍ କରି ଭରତନାଟ୍ୟମ୍ ଶିକ୍ଷାକରିବା ନିମନ୍ତେ ମାନ୍ଦ୍ରାଜ ଯାଇଥିଲେ । ସେଠାରେ ଗୁରୁ ଚୋକଲିଙ୍ଗମ୍ ପିଲାଇଙ୍କ ନିକଟରୁ ନୃତ୍ୟ ଶିକ୍ଷା କରି "ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫାଇନ୍ ଆର୍ଟସ୍" ଅନୁଷ୍ଠାନରୁ 'ନାଟ୍ୟକଳା ଭୂଷଣମ୍' ଉପାଧି ଲାଭକଲେ । ଏହାପରେ ଇଉରୋପର ବହୁ ଦେଶ ଭ୍ରମଣ କରି ସେ ନୃତ୍ୟ ପରିବେଷଣ କରିଥିଲେ । ଓଡ଼ିଶା ଫେରିବା ପରେ ଶ୍ରୀମତୀ ମିଶ୍ର ସ୍ୱର୍ଗତଃ କାଳୀଚରଣ ପଟ୍ଟନାୟକ, ଗୁରୁ କେଳୁଚରଣ ମହାପାତ୍ର ଏବଂ ସ୍ୱର୍ଗତଃ ଗୁରୁ ଦେବ ପ୍ରସାଦ ଦାସଙ୍କ ନିକଟରୁ ଓଡ଼ିଶୀ ନୃତ୍ୟ ଶିକ୍ଷା କଲେ । ସେ ଓଡ଼ିଶା ତଥା ଓଡ଼ିଶା ବାହାରେ ଓଡ଼ିଶୀ ନୃତ୍ୟ ପ୍ରଥମ କରି ପରିବେଷଣ କରି ଯଥେଷ୍ଟ ଖ୍ୟାତି ଅର୍ଜ୍ଜନ କରିଥିଲେ ।

ନୃତ୍ୟ କ୍ଷେତ୍ରରେ ତାଙ୍କର କୃତିତ୍ୱ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ତାଙ୍କୁ ୧୯୭୫ ରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଥିଲେ । ନାଟ୍ୟ ଶାସ୍ତ୍ର ଉପରେ ତାଙ୍କର ଗବେଷଣା ନିମନ୍ତେ ସେ 'ନାଟ୍ୟଶାସ୍ତ୍ର ବିଶାରଦା' ଉପାଧି ଲାଭ କରିଛନ୍ତି । ନୃତ୍ୟ ବ୍ୟତୀତ ଶ୍ରୀମତୀ ମିଶ୍ର ଓଡ଼ିଆ ଚଳଚ୍ଚିତ୍ର 'ସୂର୍ଯ୍ୟମୁଖୀ' ରେ ନାୟିକା ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ମଧ୍ୟ ବିବାହ ପରେ ଚଳଚ୍ଚିତ୍ର ଦୁନିଆରୁ ଅପସରି ଯାଇ ୧୯୬୭ ଠାରୁ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟରେ ଅଧ୍ୟକ୍ଷା ରୂପେ କାର୍ଯ୍ୟରତ ଥିଲେ । ଅଧୁନା ସେ ଇଉରୋପର ଜର୍ମାନୀ ଗଣରାଜ୍ୟରେ କାର୍ଯ୍ୟରତ ।

ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ କରିବା ଦିଗରେ ନିଜର ଅବିସ୍ମରଣୀୟ ଅବଦାନ ନିମନ୍ତେ ଓଡ଼ିଶାର କଳାପ୍ରେମୀ ସୁଧୀବୃନ୍ଦ ତାଙ୍କୁ ସବୁଦିନେ ମନେ ରଖିବେ ।

●



## ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷ

**ବାଖରବାଦ, କଟକ**

**ଜନ୍ମ – ୧୯୦୩, ଅକ୍ଟୋବର ୨୩**

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେଉଁ କେତେଜଣ ମୁଷ୍ଟିମେୟ ନାଟ୍ୟକାର ନିଜର ଏକକ ପ୍ରଚେଷ୍ଟା ବଳରେ ଓଡ଼ିଶାର ନାଟ୍ୟ ଜଗତକୁ ମୃତସଞ୍ଜୀବନୀର ସ୍ପର୍ଶ ଦେଇ ତାକୁ ଉଜ୍ଜୀବିତ କରିଥିଲେ ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷ ଅନ୍ୟତମ । ୧୯୦୩ ମସିହା ଅକ୍ଟୋବର ୨୩ ତାରିଖ ଦିନ କଟକ ସହରସ୍ଥିତ ବାଖରାବାଦଠାରେ ଶ୍ରୀଯୁକ୍ତ ଘୋଷ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜ୍ୟେଷ୍ଠ ଭ୍ରାତା ° ଅଶ୍ୱିନୀ କୁମାର ଘୋଷ ତତ୍କାଳୀନ ଜଣେ ସୁଖ୍ୟାତ ନାଟ୍ୟକାର ଥିଲେ ଏବଂ ତାଙ୍କଠାରୁ ନାଟ୍ୟ ଜଗତରେ ପାଦ ରଖିବା ନିମନ୍ତେ ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷ ପ୍ରେରଣା ପାଇଥିଲେ ।

୧୯୨୧ ମସିହାରେ ବିଦ୍ୟାଳୟ ଶିକ୍ଷା ଶେଷ କରି ଶ୍ରୀଯୁକ୍ତ ଘୋଷ ଉଚ୍ଚତର ଶିକ୍ଷାଲାଭ ନିମନ୍ତେ ମହାବିଦ୍ୟାଳୟରେ ଭର୍ତ୍ତି ହୋଇଥିଲେ । ମାତ୍ର ସେହିବର୍ଷ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି କଲେଜ ତ୍ୟାଗ କରିଥିଲେ ।

୧୯୧୮ ମସିହାରେ ବିଦ୍ୟାଳୟରେ ପଢୁଥିବା ଅବସ୍ଥାରୁ ହିଁ ଶ୍ରୀ ଘୋଷ ନାଟକ ଏବଂ ଯାତ୍ରା ପ୍ରତି ଗଭୀରଭାବେ ଆକୃଷ୍ଟ ହୋଇଥିଲେ । ସେହି ସମୟରେ 'ରାଧାକୃଷ୍ଣ ଥିଏଟର୍, ଦଳଙ୍ଗା' ନାଟକରେ ଅଭିନୟ କରୁଥିଲେ । ସେହି ଦଳ ସେଦିନ "ଗୋବିନ୍ଦ ବିଦ୍ୟାଧର" ନାଟକ ଅଭିନୟ କରିବାର ଥିଲା । ମାତ୍ର ଗୋଟିଏ ପିଲାର ଦେହ ଖରାପ ହେବାରୁ ତା' ସ୍ଥାନରେ ଶ୍ରୀ ଘୋଷ "କଲ୍ୟାଣ ଦେବ" ଭୂମିକାରେ ପ୍ରଥମେ ଅଭିନୟ କରି ନାଟ୍ୟ ଜଗତକୁ ପ୍ରବେଶ କରିଥିଲେ । ଏଥିରେ ତାଙ୍କୁ ° ରାମଚନ୍ଦ୍ର ମାଣିଆ ଏବଂ ରାଧାକୃଷ୍ଣ ଥିଏଟରର ମାଲିକ ° ବନମାଳୀ ପାଢ଼ି ତାଙ୍କୁ ଯଥେଷ୍ଟ ଉତ୍ସାହିତ କରିଥିଲେ । ° ବୃନ୍ଦାବନ ବିହାରୀ ଦାସ ତାଙ୍କ ନାଟ୍ୟ ଜୀବନର ପ୍ରଥମ ଗୁରୁ । ଏହାପରେ ଶ୍ରୀ ଘୋଷ ନାଟକ ରଚନାରେ ମନୋନିବେଶ କରିଥିଲେ । ସେତେବେଳେ ବିଭିନ୍ନ ଯାତ୍ରାଦଳର ଆବଶ୍ୟକ-ତାକୁ ଚାହିଁ ନାଟକ ଲେଖା ହେଉଥାଏ । ୧୯୨୮ ମସିହାରେ ତାଙ୍କର ପ୍ରଥମ ନାଟକ "ନୂଳିଆ" ଏବଂ ପରେ ୧୯୩୦ ଏବଂ ୧୯୩୧ ମସିହାରେ ନାଟକ 'ମାତୃପୂଜା' ଏବଂ

"ମୀରକାଶୀମ୍" ପ୍ରକାଶିତ ହେଲା । ତେପରେ ୧୯୫୬ରେ ପ୍ରକାଶିତ ହେଲା ନାଟକ "ଲକ୍ଷହୀରା" ଏବଂ ପରେ ପରେ 'ବଗର', 'ଗୁରୁଦକ୍ଷିଣା', 'ରକ୍ତର ଡାକ' ଏବଂ ଆହୁରି ଅନେକ ନାଟକ ପ୍ରକାଶିତ ହେଲା ।

ଏହି ସମସ୍ତ ମଧ୍ୟରେ ସେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଥିଏଟର୍ କମ୍ପାନୀରେ ଅଭିନୟ କରୁଥାନ୍ତି । 'ମାତୃପୂଜା' ନାଟକରେ ତାଙ୍କର 'କାଳକେଉ' ଭୂମିକା ଏବଂ 'ଏମିତି ବି ହୁଏ' ନାଟକରେ 'ମାନ୍ତ୍ରୀ' ଭୂମିକାରେ ତାଙ୍କର ଅଭିନୟ ଏବେ ମଧ୍ୟ ଜନମାନସରେ ଜୀବନ୍ତ ହୋଇ ରହିଛି ।

ଥିଏଟର ପରେ ଓଡ଼ିଶାରେ ଯେତେବେଳେ ଚଳଚ୍ଚିତ୍ରର ଯୁଗ ଆରମ୍ଭ ହେଲା ସେତେବେଳେ ଶ୍ରୀଯୁକ୍ତ ଘୋଷ 'ଶ୍ରୀ ଜଗନ୍ନାଥ' କଥାଚିତ୍ରରେ ଶ୍ରୀ ଜଗନ୍ନାଥ ଭୂମିକାରେ ଅଭିନୟ କରିଥିଲେ । ଏତଦ୍‌ବ୍ୟତୀତ 'ପରିଣାମ' 'ଆମର ଗାଁ ଝିଅ' ଏବଂ 'ସୀତା ଲବକୁଶ' ଚଳଚ୍ଚିତ୍ରରେ ମଧ୍ୟ ଏହି ଗୁଣୀ କଳାକାର ଅଂଶ ଗ୍ରହଣକରି ଓଡ଼ିଆ ଚଳଚ୍ଚିତ୍ରକୁ ଅନେକ ଆଗେଇ ନେଇଥିଲେ ।

କଲିକତା ଆକାଶବାଣୀରେ ଓଡ଼ିଆ କାର୍ଯ୍ୟକ୍ରମ ପ୍ରଚାର ଆରମ୍ଭ ହେବା ପରେ ଶ୍ରୀ ଘୋଷ ସେଥିରେ ମଧ୍ୟ ବିଭିନ୍ନ ବେତାର ନାଟକରେ ଅଂଶ ଗ୍ରହଣ କରିଥିଲେ । ଏହି ନାଟକମାନଙ୍କ ମଧ୍ୟରେ "ଅର୍କତୀର୍ଥ" ଏବଂ 'ମୀର୍‌କାଶୀମ୍' ଉଲ୍ଲେଖଯୋଗ୍ୟ । ୧୯୮୧ ମସିହାଠାରୁ ତାଙ୍କ ଅଭିନୟ ଜୀବନରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା ତାଙ୍କର ବୟସାଧିକ୍ୟ କାରଣରୁ ।

ଏହି ଯୋଗଜନ୍ମା କଳାକର ନିଜର ଅସାମାନ୍ୟ କଳାକୃତି ପାଇଁ ବିଭିନ୍ନ ଅନୁଷ୍ଠାନ ତରଫରୁ ସମ୍ମାନିତ ଏବଂ ପୁରସ୍କୃତ । ତନ୍ମଧ୍ୟରେ ୧୯୭୦ ମସିହାରେ 'ଗାଉରକେଲା କମ୍ୟୁନିଟି ସେଣ୍ଟର' ତରଫରୁ ମାନପତ୍ର । ୧୯୭୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଏବଂ ୧୯୭୬ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ଏହା ବ୍ୟତୀତ ୧୯୮୨ ମସିହାରେ 'ଗୌରୀଶଙ୍କର ସ୍ମୃତି ସଂସଦ' ତରଫରୁ, ୧୯୮୩ ମସିହାରେ ଉତ୍କଳ ବଙ୍ଗୀୟ ଆସୋସିଏସନ୍, କଟକଙ୍କ ଦ୍ୱାରା ସମ୍ବର୍ଦ୍ଧିତ ଏବଂ ସେହି ବର୍ଷ ସମ୍ମାନସ୍ପଦ 'ଶାରଳା ପୁରସ୍କାର' ଲାଭ କରିଥିଲେ ।

ଅଶୀନବେ ବର୍ଷ ବୟସ୍କ ଏହି ବର୍ଷୀୟାନ୍ କଳାକାର ଆଜି ବୃଦ୍ଧ ବୟସରେ ନିଃସଙ୍ଗ ଜୀବନ ଯାପନ କରୁଅଛନ୍ତି । ତାଙ୍କର ଅନେକ ମୂଲ୍ୟବାନ୍ ଲିଖିତ ନାଟକ ସବୁ ଆଜି ବି ଅପ୍ରକାଶିତ ହୋଇ ପାଣ୍ଡୁଲିପି ଆକାରରେ ପଡ଼ିରହିଛି । ତନ୍ମଧ୍ୟରେ "ଚରିତ୍ରହୀନା" "ବସନ୍ତସେନା" ଏବଂ 'ଅମଣିଷ' ଇତ୍ୟାଦି ପ୍ରଧାନ । ଆଜି ତାଙ୍କର ଲେଖନୀ ନୀରବ ହେଲେ ବି ଆଜିର କଳାକାରଙ୍କ ପାଇଁ ସେ ଯେ ଜୀବନ୍ତ ପ୍ରେରଣାର ଉତ୍ସ, ଏଥିରେ ଦ୍ୱିରୁକ୍ତି ରହି ନପାରେ ।

●



# ଶ୍ରୀ ବାଳକୃଷ୍ଣ ଦାଶ

## ବସନ୍ତପେଣ୍ଠ, ପୁରୀ

### ଜନ୍ମ—୧୯୨୮, ଜାନୁୟାରୀ ୨

ଓଡ଼ିଶୀ ଜଗତର ଅନ୍ୟତମ ଉଜ୍ଜ୍ୱଳ ଜ୍ୟୋତିଷ୍କ ସଙ୍ଗୀତ ସୁଧାକର ଶ୍ରୀ ବାଳକୃଷ୍ଣ ଦାଶ ୧୯୨୮ ମସିହା ଜାନୁୟାରୀ ମାସ ୨ ତାରିଖ ଦିନ ପୁରୀ ଜିଲ୍ଲାର ବାଲକାଟି ନିକଟସ୍ଥ ବସନ୍ତପେଣ୍ଠ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ପଣ୍ଡିତ ଦୀନବନ୍ଧୁ ଦାଶ ଏବଂ ମାତାଙ୍କ ନାମ ଥିଲା କମଳା ଦେବୀ । ବାଲ୍ୟକାଳରୁ ସଙ୍ଗୀତ ପ୍ରତି ଅଦମ୍ୟ ଆକର୍ଷଣ ହେତୁ ସେ ପୁରୀ ସହରର ତତ୍କାଳୀନ ଓଡ଼ିଶୀ ଗୁରୁମାନଙ୍କ ନିକଟରୁ ଗୋଟିପୁଅ ସଙ୍ଗୀତ ଶିକ୍ଷା କରିଥିଲେ ।

ଷୋହଳ ବର୍ଷ ବୟସରେ ସେ କେନ୍ଦ୍ରାପଡ଼ା ଯାଇ ସେଠାରେ ଓଡ଼ିଶୀ କଣ୍ଠ ସଙ୍ଗୀତର ପ୍ରଖ୍ୟାତ ଗୁରୁ ସ୍ୱର୍ଗତ ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନଙ୍କ ନିକଟରୁ ଓଡ଼ିଶୀ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିଥିଲେ । ସ୍ୱର୍ଗତ ଶ୍ରୀଚନ୍ଦନଙ୍କ ସହ କଲିକତା ଯାଇ ସେଠାରେ ପ୍ରଖ୍ୟାତ ଶାସ୍ତ୍ରୀୟ ଗାୟକ ଉସ୍ତାଦ୍ ବଡ଼େ ଗୁଲମ ଅଲ୍ଲି ଖାଁଙ୍କର ଶିଷ୍ୟତ୍ୱ ଗ୍ରହଣ କରି ତାଙ୍କଠାରୁ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରନ୍ତି ଏବଂ ପରେ ପରେ ସ୍ୱର୍ଗତ କ୍ଷିତିଶ ଚନ୍ଦ୍ର ମୈତ୍ରଙ୍କ ନିକଟରୁ ମଧ୍ୟ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିବା ସଙ୍ଗେ ତତ୍କାଳୀନ ଚଳଚ୍ଚିତ୍ର ଜଗତରେ ବିଖ୍ୟାତ ସଙ୍ଗୀତ ନିର୍ଦ୍ଦେଶକ ରାଇ ଚରଣ ବଡ଼ାଲଙ୍କ ନିକଟରୁ ବାଦ୍ୟ ପରିଚାଳନା, ଏବଂ ସଙ୍ଗୀତ ପରିଚାଳନା କ୍ଷେତ୍ରରେ ବିଶେଷ ଶିକ୍ଷା ଲାଭ କରିଥିଲେ ।

ଏହି ସମୟରେ କଲିକତା ଆକାଶବାଣୀରେ ସେ ସମସ୍ତ ଓଡ଼ିଆ ଗୀତ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲେ ଏବଂ ପରେ ୧୯୪୮ ମସିହାରେ ଆକାଶବାଣୀ କଟକ କେନ୍ଦ୍ରରେ ଜଣେ ବେତନଭୋଗୀ କଳାକାର ଭାବରେ ଯୋଗଦାନ କରିଥିଲେ । ଏହି ସମୟରେ ଶ୍ରୀ ଦାଶ ନିଜର ଚେଷ୍ଟା ଦ୍ୱାରା ଓଡ଼ିଶୀ ସଙ୍ଗୀତର ମୂଳ ସ୍ୱରୂପ ଅକ୍ଷୁର୍ଣ୍ଣ ରଖି ନୂତନ ଶୈଳୀ ଏବଂ ପଦ୍ଧତି ପ୍ରୟୋଗ ଦ୍ୱାରା ତାହାକୁ ଅଧିକ ଶ୍ରୁତିମଧୁର ଏବଂ ଆକର୍ଷଣୀୟ କରାଇ ପାରିଥିଲେ । ବୋଧହୁଏ ଏହାହିଁ ଥିଲା ତାଙ୍କର ଓଡ଼ିଶୀ ସଙ୍ଗୀତ ପ୍ରତି ସର୍ବଶ୍ରେଷ୍ଠ ଦାନ । ଓଡ଼ିଶୀ ସହ ସେ ଶ୍ରୀ ଗୀତ ଗୋବିନ୍ଦ, ଭଜନ, ଜଣାଣ, ଛାନ୍ଦ, ଚମ୍ପୂ

ଇତ୍ୟାଦିର ଗାୟନରେ ସିଦ୍ଧହସ୍ତ ଥିଲେ । ଜଣେ ଅଗ୍ରଦୂତ ଭାବରେ ସେ ଅନେକ ଗୀତି-ନାଟ୍ୟ, ଯାତ୍ରା, ନୃତ୍ୟନାଟିକା ମଞ୍ଚରେ ସ୍ୱର ସଂଯୋଜନା କରିବା ସହ ନିଜେ ପ୍ରାୟ ଦୁଇ-ଶହ ଗୀତ ନିଜର ସୁମଧୁର କଣ୍ଠରେ ରେକର୍ଡ଼ କରାଇଥିଲେ । ଏତଦ୍‌ବ୍ୟତୀତ ଶ୍ରୀଯୁକ୍ତ ଦାଶ ଅନେକ ଓଡ଼ିଆ ଚଳଚ୍ଚିତ୍ରରେ କଣ୍ଠଦାନ କରିବା ସହ ସଙ୍ଗୀତ ନିର୍ଦ୍ଦେଶନା ଦେଇ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ଓଡ଼ିଆ ଚଳଚ୍ଚିତ୍ର 'ମଥୁରା ବିଜୟ' ନିମନ୍ତେ ତାଙ୍କୁ ଓଡ଼ିଶା ସରକାରଙ୍କ ତରଫରୁ ଶ୍ରେଷ୍ଠ ସଙ୍ଗୀତ ନିର୍ଦ୍ଦେଶକର ସମ୍ମାନ ମିଳିଥିଲା ।

ଓଡ଼ିଶୀ ସଙ୍ଗୀତର ବିଶେଷ ପ୍ରଚ୍ଚର ଏବଂ ପ୍ରସାରର ଇଚ୍ଛା ନେଇ ଶ୍ରୀ ଦାଶ ଓଡ଼ିଶାର ସଙ୍ଗୀତର ପ୍ରାଣ କେନ୍ଦ୍ର କଟକସ୍ଥ କଳାବିକାଶ କେନ୍ଦ୍ରରେ ଗୁରୁ ଭାବେ ଯୋଗ-ଦାନ କରିଥିଲେ । ଏଥି ସହ ସେ 'ନ୍ୟାସନାଲ୍ ମିଉଜିକ୍ ଆସୋସିଏସନ୍', କଟକ; 'ଉତ୍କଳ ସଙ୍ଗୀତ ସମାଜ', କଟକ; 'ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ', ଭୁବନେଶ୍ୱର ଏବଂ 'ପ୍ରଗ୍ରେସିଭ ମିଉଜିକାଲ୍ ଇନଷ୍ଟିଚ୍ୟୁସନ୍', ଭୁବନେଶ୍ୱର ସହିତ ଶିକ୍ଷକ ଭାବରେ ସଂଶ୍ଳିଷ୍ଟ ରହିଥିଲେ । ଅଧୁନା ସେ ଓଡ଼ିଶା ସରକାରଙ୍କ ପ୍ରତିଷ୍ଠିତ ଓଡ଼ିଶୀ ରିସର୍ଚ୍ଚ ସେଣ୍ଟରଠାରେ ଜଣେ ଅଧ୍ୟାପକ ଗବେଷକ ଭାବରେ କର୍ମରତ ।

ଓଡ଼ିଶୀ ସଙ୍ଗୀତ କ୍ଷେତ୍ରରେ ବିଶେଷ ପାରଦର୍ଶିତା ଏବଂ ଅବଦାନ ନିମନ୍ତେ ଶ୍ରୀ ଦାସ ଭିନ୍ନ ଭିନ୍ନ ସମୟରେ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନମାନଙ୍କ ଦ୍ୱାରା ସମ୍ମାନିତ ହୋଇଛନ୍ତି । ପୁରୀ 'ଶ୍ରୀ କ୍ଷେତ୍ର କଳା ପରିଷଦ' ତରଫରୁ ତାଙ୍କୁ ୧୯୬୮ ମସିହାରେ "ସୁର ସିଂହାସନ" ଉପାଧି ମିଳିଥିଲା । ଏତଦ୍‌ବ୍ୟତୀତ ୧୯୫୧ ମସିହାରେ 'ଫକୀର ମୋହନ ସାହିତ୍ୟ ପରିଷଦ' ଦ୍ୱାରା 'ସଙ୍ଗୀତ ସୁଧାକର' ଉପାଧି, ୧୯୭୮ରେ ରାଜ୍ୟ ଏକାଡେମୀ ପୁରସ୍କାର, ୧୯୮୬ରେ 'ଓଡ଼ିଶା ସାହିତ୍ୟ ଏକାଡେମୀ' ପୁରସ୍କାର ଲାଭ କରିଥିଲେ । ଶ୍ରୀଯୁକ୍ତ ଦାଶ ଏହିସବୁ ପୁରସ୍କାର ସହ ଆହୁରି ଅନେକ ସମ୍ମାନ ଲାଭ କରିଅଛନ୍ତି ।

୧୯୮୫ ମସିହାରେ ଭୁବନେଶ୍ୱରସ୍ଥ 'ଗୀତାଭାରତୀ' ଅନୁଷ୍ଠାନ ତରଫରୁ ତାଙ୍କୁ 'ପରମ ଭାଗବତ' ଉପାଧିରେ ଭୂଷିତ କରାଯାଇଥିଲା । ୧୯୮୮ରେ 'ବସନ୍ତ ରାସ' ଚଳଚ୍ଚିତ୍ର ନିମନ୍ତେ ଶ୍ରେଷ୍ଠ ସଙ୍ଗୀତ ନିର୍ଦ୍ଦେଶକ ଭାବରେ ପୁରସ୍କୃତ ହେବା ସହ ସେହିବର୍ଷ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ଦ୍ୱାରା ସମ୍ମାନଜନକ 'ଜୟଦେବ ପୁରସ୍କାର' ଦ୍ୱାରା ସମ୍ମାନିତ ହୋଇଛନ୍ତି । ୧୯୮୯ ମସିହାରେ ଓଡ଼ିଶାର ଫିଲ୍ମ ଜର୍ନାଲିଷ୍ଟ ଆସୋସିଏସନ୍ ତରଫରୁ ତାଙ୍କୁ "ମୋହନ ଦେବ ଗୋସ୍ୱାମୀ" ପୁରସ୍କାର ମଧ୍ୟ ମିଳିଛି ।

ଓଡ଼ିଶୀ ଶାସ୍ତ୍ରୀୟ ସଙ୍ଗୀତ କ୍ଷେତ୍ରରେ ନିଜର ବ୍ୟୁତ୍ପତ୍ତି ତଥା ତାହାର ପ୍ରଚ୍ଚର ଏବଂ ପ୍ରସାରରେ ମୁଖ୍ୟ ଭୂମିକା ନେଇଥିବା ଏହି ବର୍ଷୀୟାନ୍ କଳାକାରଙ୍କୁ ଭାରତ ସରକାରଙ୍କ ସଙ୍ଗୀତ ନାଟକ ଏକାଡେମୀ ତରଫରୁ ୧୯୮୪ ମସିହାରେ ପୁରସ୍କୃତ କରାଯାଇଛି ।



## ଶ୍ରୀ ଦୁର୍ଲଭ ଚନ୍ଦ୍ର ସିଂହ

ଉଦବରେ, ପୁରୀ

ଜନ୍ମ—୧୯୧୭, ମାର୍ଚ୍ଚ ୧୨

ଓଡ଼ିଶା ରଙ୍ଗମଞ୍ଚର ଅନ୍ୟତମ ପ୍ରଖ୍ୟାତ ଅଭିନେତା, ନିର୍ଦ୍ଦେଶକ ଏବଂ ବାଦ୍ୟକାର ଶ୍ରୀ ଦୁର୍ଲଭ ଚନ୍ଦ୍ର ସିଂହ ପୁରୀ ଜିଲ୍ଲା ଅନ୍ତର୍ଗତ ଉଦବରେ ଗ୍ରାମରେ ୧୯୧୭ ମସିହା ମାର୍ଚ୍ଚମାସ ୧୨ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ୰ ଆନନ୍ଦଚନ୍ଦ୍ର ସିଂହ ଜଣେ ତତ୍କାଳୀନ ଯାତ୍ରା ଓସ୍ତାଦ୍ ଥିଲେ । ତାଙ୍କର ପ୍ରେରଣାରେ ବାଲ୍ୟକାଳରୁ ଦୁର୍ଲଭଚନ୍ଦ୍ର କଳାଶିକ୍ଷା କରିବାକୁ ଏବଂ କଳାରାଜ୍ୟରେ ପ୍ରବେଶ କରିବାକୁ ଉତ୍ସାହିତ ହୋଇଥିଲେ । ତାଙ୍କ ପିତାଙ୍କର ଏକାନ୍ତ ଇଚ୍ଛାଥିଲା ଯେ ତାଙ୍କର ଏକମାତ୍ର ପୁତ୍ର ଜଣେ ଭଲ କଳାକାର ହେବେ । ଫଳତଃ ମାତ୍ର ଏଗାର ବର୍ଷ ବୟସରୁ ସ୍ୱର୍ଗତ କାଳୀଚରଣ ପଟ୍ଟନାୟକଙ୍କର ଶିଷ୍ୟତ୍ୱ ଗ୍ରହଣ କରି ପ୍ରଥମେ ରାସଲୀଳା ଦଳରେ ଅଭିନୟ କରିବାକୁ ସେ ଶିକ୍ଷାଲାଭ କରିଥିଲେ । ସଙ୍ଗୀତ, ନୃତ୍ୟ ଏବଂ ଅଭିନୟ କଳାରେ ଶିକ୍ଷାଲାଭ କରିବା ପରେ ୧୯୪୦ ମସିହାରେ "ଓଡ଼ିଶା ଥିଏଟର" ଗଠନକରି ତହିଁର ସମସ୍ତ ଦାୟିତ୍ୱ ତୁଲାଉଥିଲେ । ତତ୍ପରେ ୧୯୪୫ ମସିହାରେ କଟକ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍‌ରେ ଯୋଗଦାନ କରି ଦୀର୍ଘ ଆଠ ବର୍ଷକାଳ ତହିଁରେ ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରିଥିଲେ । ଶେଷରେ ୧୯୫୩ ମସିହାରେ ପୁରୀର ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଥିଏଟର ଦଳରେ ଯୋଗଦାନ କରି ଅଦ୍ୟାବଧି ତହିଁରେ ନିର୍ଦ୍ଦେଶକ ଓ ଅଭିନେତାଭାବରେ କାର୍ଯ୍ୟ ତୁଲାଇ ଚାଲିଛନ୍ତି ।

ନାଟ୍ୟକାରମାନଙ୍କ ସହ ଆଲୋଚନା କରି ନାଟକ ପ୍ରସ୍ତୁତ କରିବା, ଓଡ଼ିଶା ରଙ୍ଗମଞ୍ଚରେ ଶତାଧିକ ନାଟକରେ ସଫଳ ନିର୍ଦ୍ଦେଶନା ସହ ଅଭିନୟ କରିବା କ୍ଷେତ୍ରରେ ସେ ଯଥେଷ୍ଟ ପାରଦର୍ଶିତା ପ୍ରଦର୍ଶନ କରିଅଛନ୍ତି । ସେ ପ୍ରଥମଥର ପାଇଁ "ଦଶାବତାର" ନୃତ୍ୟ ପରିକଳ୍ପନା କରି ତହିଁର ସ୍ୱର, ତାଳ, ବାଦ୍ୟ, ମୁଦ୍ରା ଏବଂ ଅଭିନୟ ଶିକ୍ଷାଦେଇ ତାହାକୁ ମଞ୍ଚସ୍ଥ କରାଇଥିଲେ । ସେ ମଧ୍ୟ "ମେଘଦୂତ' ଏବଂ "ବକାସୁରବଧ" ନୃତ୍ୟ ନାଟିକା ପ୍ରସ୍ତୁତ କରାଇ ତାକୁ ମଞ୍ଚସ୍ଥ କରାଇ ବହୁ ସମ୍ମାନ ଲାଭ କରିଥିଲେ । ଶ୍ରୀ ସିଂହ

ଅଭିନୟ ଏବଂ ନିର୍ଦ୍ଦେଶନା ବ୍ୟତୀତ ନିଜେ ସଙ୍ଗୀତ ପରିବେଷଣ କରି ବହୁ ପ୍ରଶଂସାର ଅଧିକାରୀ । ଆକାଶବାଣୀର ନାଟକ ଏବଂ ସଙ୍ଗୀତ ବିଭାଗରେ ମଧ୍ୟ ସେ ବହୁବାର ଅଂଶ ଗ୍ରହଣ କରିବା ସଙ୍ଗେସଙ୍ଗେ, ଦୂରଦର୍ଶନର ଅନେକ ନାଟକରେ ସଫଳ ଅଭିନୟ କରି ପ୍ରଶଂସିତ । ଏତଦ୍‌ବ୍ୟତୀତ ସେ ପ୍ରାୟ ଦଶଗୋଟି ଓଡ଼ିଆ ଚଳଚ୍ଚିତ୍ରରେ ଅଂଶଗ୍ରହଣ କରିଛନ୍ତି । ସେ ଏକାଧାରରେ ଶାସ୍ତ୍ରୀୟ ସଙ୍ଗୀତ, ଲଘୁସଙ୍ଗୀତ, ଓଡ଼ିଶୀ, ଛାନ୍ଦ, ଚମ୍ପୂ, ଲୋକ ସଙ୍ଗୀତ ଇତ୍ୟାଦି ଗାନ କରିବା ସଙ୍ଗେ ସଙ୍ଗେ ପଖାଉଜ, ମୃଦଙ୍ଗ, ହାରମୋନିୟମ୍ ତବଲା ଇତ୍ୟାଦି ବାଦ୍ୟଯନ୍ତ୍ର ମଧ୍ୟର ବାଦନରେ ବିଶେଷ ପାରଙ୍ଗମ ।

ଓଡ଼ିଶା ରଙ୍ଗମଞ୍ଚକୁ ତାଙ୍କର ଅବିସ୍ମରଣୀୟ ଅବଦାନ ନିମନ୍ତେ ଶ୍ରୀ ସିଂହ ଭିନ୍ନ ଭିନ୍ନ ସମୟରେ ବହୁ କଳାନୁଷ୍ଠାନ ଏବଂ ସରକାରୀ ସଂସ୍ଥା ଦ୍ୱାରା ସମ୍ମାନିତ ଏବଂ ପୁରସ୍କୃତ । ତନ୍ମଧ୍ୟରେ ବିଷୁବ ମିଳନରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ୧୯୬୩ ମସିହାରେ ଏବଂ ଓଡ଼ିଶା କଲଚରାଲ୍ ଆସୋସିଏସନ୍ ଦ୍ୱାରା ୧୯୬୭ ମସିହାରେ ସମ୍ମାନିତ । ୧୯୭୪ ମସିହାରେ ଏକାମ୍ର ଥିଏଟର୍ ଏବଂ ୧୯୭୭ ମସିହାରେ 'ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ' ଦ୍ୱାରା ସମ୍ମାନିତ ଏବଂ ପୁରସ୍କୃତ ।

ପୁନଶ୍ଚ ୧୯୭୭ ମସିହାରେ କଳାବିକାଶ କେନ୍ଦ୍ର, କଟକଙ୍କ ଦ୍ୱାରା ଏବଂ ୧୯୮୧ ମସିହାରେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଥିଏଟର କମ୍ପାନୀ ଦ୍ୱାରା ସମ୍ବର୍ଦ୍ଧିତ । ୧୯୮୯ ମସିହାରେ 'ଗଣକବି ସ୍ମୃତି ସଂସଦ' ଦ୍ୱାରା ଏବଂ ଅନ୍ୟ ସମୟରେ ଉତ୍କଳ ଥିଏଟର୍ସ, ଉତ୍କଳ ପାଠକ ସଂସଦ ଏବଂ ଉତ୍କଳ ଥିଏଟର୍ସ, କଟକଙ୍କ ଦ୍ୱାରା ସମ୍ମାନିତ ହୋଇ ଅଛନ୍ତି ।

ଏବେ ପଞ୍ଚସ୍ତରୀ ବର୍ଷ ବୟସ୍କ ଏହି କଳାକାର କଳା ସାଧନାରେ ତଥାପି ନିମଗ୍ନ । ତାଙ୍କର ଆଶୀର୍ବାଦ ଏବଂ ପ୍ରେରଣା ଆଜିର ଯୁବକଳାକାରମାନଙ୍କର ପାଥେୟ ହେଉ ।

# ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ

**ବ୍ରହ୍ମପୁର, ଗଞ୍ଜାମ**



**ଜନ୍ମ—୧୯୪୦, ଅଗଷ୍ଟ ୨୪**

ଓଡ଼ିଶୀ ନୃତ୍ୟ ଶୈଳୀକୁ ସ୍ୱତନ୍ତ୍ର ନୃତ୍ୟ ଶୈଳୀ ରୂପେ ବିଶ୍ୱଦରବାରରେ ପ୍ରତିପାଦନ କରାଇବାରେ ଯେଉଁମାନେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ଓଡ଼ିଶୀ ନୃତ୍ୟ ଶିଳ୍ପୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ୧୯୪୦ ମସିହା ଅଗଷ୍ଟ ମାସ ୨୪ ତାରିଖ ଦିନ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସହରରେ ଏକ ରକ୍ଷଣଶୀଳ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଜଣେ ଉଚ୍ଚ ସରକାରୀ କର୍ମଚାରୀ ଥିଲେ ମଧ୍ୟ ନିଜ କନ୍ୟାର ନୃତ୍ୟ ଶିକ୍ଷା ନିମନ୍ତେ ତାଙ୍କର ଅତି ଆଗ୍ରହ ଥିଲା । ତେଣୁ ମାତ୍ର ୪ ବର୍ଷ ବୟସରେ ହିଁ ଗୁରୁ କେଳୁଚରଣ ମହାପାତ୍ରଙ୍କ ନିକଟରୁ ସେ ଓଡ଼ିଶୀ ନୃତ୍ୟ ଶିକ୍ଷା କରିବାକୁ ଆରମ୍ଭ କରିଥିଲେ ଏବଂ ମାତ୍ର ଛଅ ବର୍ଷ ବୟସରେ ପ୍ରଥମେ ମଞ୍ଚ ଉପରେ ନୃତ୍ୟ ପ୍ରଦର୍ଶନ କରିଥିଲେ ଖଣ୍ଟୁବ ମିଳନ ସମାରୋହରେ ୧୯୫୦ ମସିହାରେ । ତତ୍ପରେ ୧୯୫୦ ମସିହାଠାରୁ ୧୯୫୩ ମସିହା ପର୍ଯ୍ୟନ୍ତ ସେ ଶ୍ରେଷ୍ଠ ଶିଶୁ କଳାକାର ପୁରସ୍କାର 'ପ୍ରଜାତନ୍ତ୍ର ପ୍ରଚାର ସମିତି' ପକ୍ଷରୁ ଲାଭ କରିଥିଲେ । ସେହି ଦିନଠୁଁ ଶ୍ରୀମତୀ ପାଣିଗ୍ରାହୀ ଆଉ ପଛକୁ ଫେରି ଚାହିଁ ନାହାନ୍ତି । ୧୯୫୨ ମସିହାରେ କଲିକତାଠାରେ "ଚିଲଡ୍ରେନ୍ସ ଲିଟଲ୍ ଥିଏଟର୍, ପକ୍ଷରୁ ଆୟୋଜିତ ଆନ୍ତର୍ଜାତିକ ଶିଶୁ ସମାରୋହରେ ସେ ସର୍ବଶ୍ରେଷ୍ଠ କଳାକାର ହିସାବରେ ପ୍ରଥମ ପୁରସ୍କାର ଲାଭ କରିଥିଲେ । ଏହି ସମୟରେ ହିଁ ଓଡ଼ିଶୀ ନୃତ୍ୟ ଶୈଳୀ ବୋଲି ଗୋଟିଏ ନୃତ୍ୟ ଶୈଳୀ ଅଛି, ତାହା ଲୋକମାନେ ଜାଣିବାର ସୁଯୋଗ ପାଇଲେ । ଶ୍ରୀମତୀ ପାଣିଗ୍ରାହୀ ସିନିୟର କେମ୍ବ୍ରିଜ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ନୃତ୍ୟକୁ ନିଜର ପେଶା ଭାବରେ ଗ୍ରହଣ କରିନେଇଥିଲେ । ପରେ ଶ୍ରୀମତୀ ପାଣିଗ୍ରାହୀଙ୍କର ବିବାହ ପ୍ରଖ୍ୟାତ କଣ୍ଠ ଶିଳ୍ପୀ ସୁରମଣି ରଘୁନାଥ ପାଣିଗ୍ରାହୀଙ୍କ ସହିତ ଅନୁଷ୍ଠିତ ହେବା ପରେ, ସତେ ଯେପରି ମଣିକାଞ୍ଚନର ସଂଯୋଗ ଘଟେ । ଉଭୟ ପତି ପତ୍ନୀ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତରେ ବିକାଶ ଦିଗରେ ମନପ୍ରାଣ ଦେଇ ଲାଗି ପଡ଼ନ୍ତି ।

୧୯୬୬ ରୁ ୧୯୮୮ ମସିହା ମଧ୍ୟରେ ସେ ଯୁଗୋସ୍ଲୋଭିଆ, ନେପାଳ, ଆମେରିକା, ସୁଇଜରଲ୍ୟାଣ୍ଡ, ଡେନ୍‌ମାର୍କ, ନେଦରଲାଣ୍ଡ, ପଶ୍ଚିମ ଜର୍ମାନୀ, ସ୍ୱିଡେନ୍, ନରୱେ, ଅଷ୍ଟ୍ରେଲିଆ ଓ ବେଲଜିୟମ୍ ଇତ୍ୟାଦି ଦେଶ ଭ୍ରମଣ କରିଥିଲେ । ଫ୍ରାନ୍ସର ପ୍ୟାରିସଠାରେ ଆନ୍ତର୍ଜାତୀୟ ସଙ୍ଗୀତ ସଭାରେ ଯୋଗଦେବା ପାଇଁ ସେ ନିମନ୍ତ୍ରିତ ହୋଇ

ସମଗ୍ର ପ୍ରାନ୍ତରେ ଏଗାର ସପ୍ତାହ କାଳ ନିଜର କଳା ପ୍ରଦର୍ଶନ କରି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ ଏବଂ ଚକିତ କରି ଦେଇଥିଲେ । ଇରାନର 'ସିରାଜ' ମେଳାକୁ ମଧ୍ୟ ସେ ନିମନ୍ତ୍ରିତ କଳାକାର ଭାବରେ ଯାଇଥିଲେ । ସେ ନୃତ୍ୟ କର୍ମଶାଳା ଏବଂ ଭାଷଣ ମାଧ୍ୟମରେ ସାରା ବିଶ୍ୱରେ ଓଡ଼ିଶୀ ନୃତ୍ୟର ପ୍ରଚାର ଏବଂ ପ୍ରସାର ପାଇଁ ଅଗ୍ରଣୀ ।

ଅତ୍ୟନ୍ତ କୋମଳହୃଦୟା ଏହି କଳାକାର ବନ୍ୟା, ବାତ୍ୟା ଏବଂ ଅନ୍ୟାନ୍ୟ ପ୍ରାକୃତିକ ବିପଦ ସମୟରେ ନୃତ୍ୟ ପ୍ରଦର୍ଶନ ମାଧ୍ୟମରେ ଅର୍ଥ ସଂଗ୍ରହ କରି ତାହା ପୀଡ଼ିତ ଏବଂ ଅସହାୟ ଜନଗଣଙ୍କ ନିମନ୍ତେ ଦାନ କରୁଥିଲେ । ସଙ୍କଟମୋଚନ ମନ୍ଦିରରେ ନୃତ୍ୟ ପ୍ରଦର୍ଶନ କରିବାରେ ସେ ସର୍ବପ୍ରଥମ ମହିଳା ।

ନୃତ୍ୟ ସମ୍ବନ୍ଧୀୟ ପୁରାତନ ପାଣ୍ଡୁଲିପି ସବୁକୁ ପଠନ କରିବା ଏବଂ ମନ୍ଦିରଗାତ୍ରରେ ଖୋଦିତ ନୃତ୍ୟରତା ଯକ୍ଷିଣୀ ମୂର୍ତ୍ତି ସବୁକୁ ଦେଖି ଓଡ଼ିଶୀ ନୃତ୍ୟ ଶୈଳୀ ଓ ମୁଦ୍ରା ସବୁର ବର୍ଗୀକରଣ କରିବାରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଏତଦ୍‌ବ୍ୟତୀତ ଅଣପାରମ୍ପରିକ ସଙ୍ଗୀତକୁ ଓଡ଼ିଶୀ ନୃତ୍ୟ ଶୈଳୀର ସୀମାମଧ୍ୟରେ ସୀମାବଦ୍ଧକରି ନୃତ୍ୟମାଧ୍ୟମରେ ତାହାର ସଂଯୋଜନା (Choreography) କରିବାରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ ଶିଳ୍ପୀ । ନିଜେ ଭରତନାଟ୍ୟମ ଶୈଳୀର ମଧ୍ୟ ଜଣେ କୃତବିଦ୍ କଳାକାର ହୋଇଥିବାରୁ ଓଡ଼ିଶୀ ନୃତ୍ୟ ଶୈଳୀର ବୈଶିଷ୍ଟ୍ୟ ଏବଂ ସ୍ୱାତନ୍ତ୍ର୍ୟକୁ ସେ ପ୍ରତିପାଦିତ କରି ଓଡ଼ିଶୀ ଶୈଳୀକୁ ଏକ ସମ୍ପୂର୍ଣ୍ଣ ନୃତ୍ୟ ଶୈଳୀ ଭାବରେ ପ୍ରତିଷ୍ଠିତ କରିପାରିଛନ୍ତି ।

ଓଡ଼ିଶାର "ନାଟ୍ୟୋତ୍କଳା" ଅନୁଷ୍ଠାନର ସଭାପତି ଭାବରେ ସେ ଭାରତର ବହୁ ପ୍ରଖ୍ୟାତ ନୃତ୍ୟ ଶିଳ୍ପୀମାନଙ୍କର କାର୍ଯ୍ୟକ୍ରମ ଓଡ଼ିଶାରେ ପ୍ରସ୍ତୁତ କରି ତଲ୍ଲବ୍ଧ ଧନକୁ ମୁକ୍ତହସ୍ତରେ ଦୀନ ଦରିଦ୍ରଙ୍କ ନିମନ୍ତେ ଦାନ କରିଅଛନ୍ତି । ନିଜର ଅସାମାନ୍ୟ କୃତି ନିମନ୍ତେ ସେ ଦେଶ ମଧ୍ୟରେ ଏବଂ ବିଦେଶରେ ବହୁ ସମ୍ମାନର ଅଧିକାରିଣୀ ହୋଇଛନ୍ତି । ତନ୍ମଧ୍ୟରେ ୧୯୭୫ ମସିହାରେ ଭାରତ ସରକାରଙ୍କ ନିକଟରୁ 'ପଦ୍ମଶ୍ରୀ' ଲାଭ, ୧୯୭୭ ମସିହାରେ କେନ୍ଦ୍ର ସଂଗୀତ ନାଟକ ଏକାଡେମୀ ପୁରସ୍କାର, ଏବଂ ରାଜ୍ୟର ଓଡ଼ିଶା ସଂଗୀତ ନାଟକ ଏକାଡେମୀ ସମ୍ମାନ ଲାଭ କରିଥିଲେ । ଏତଦ୍‌ବ୍ୟତୀତ ୧୯୭୭ ମସିହାରେ ସୁରସିଂଗାର ସଂସଦ ତରଫରୁ "ନୃତ୍ୟ ବିଳାସ ଉପାଧି", ୧୯୭୯ରେ ପ୍ରୟାଗ ସଂଗୀତ ସମ୍ମେଳନରେ 'ନୃତ୍ୟ ଶିରୋମଣି' ଉପାଧି, ୧୯୮୭ ମସିହାରେ 'ତରୁପତି ଜାତୀୟ ପୁରସ୍କାର' ଲାଭ ଓ 'ଅଲ୍ ଇଣ୍ଡିଆ କ୍ରିଟିକସ୍ ଆସୋସିଏସନ୍' ପୁରସ୍କାର ଲାଭ କରି ଅଛନ୍ତି ।

ଓଡ଼ିଶୀ ନୃତ୍ୟକୁ ନିଜର ପେଶା ଭାବରେ ଗ୍ରହଣ କରିବାରେ ସେ ହେଉଛନ୍ତି ଓଡ଼ିଶାର ସର୍ବପ୍ରଥମ ମହିଳା । ସୁଦୀର୍ଘ ଏକଚାଳିଶ ବର୍ଷର ସାଧନାମୟ ଜୀବନ ବିତାଇବା ପରେ ମଧ୍ୟ ସେ ଥକି ଯାଇ ନାହାନ୍ତି । କ୍ଳାନ୍ତି ଓ ଅବସାଦର କଳାଛାୟା ତାଙ୍କୁ କେବେ ଘେରି ନ ଯାଉ, ଏହାହିଁ ଆମର ବିଶ୍ୱନିୟନ୍ତାଙ୍କ ନିକଟରେ ପ୍ରାର୍ଥନା ।

## ଶ୍ରୀ ଗୋପାଳ ଛୋଟରାୟ
ଜଗତ୍‌ସିଂହପୁର, କଟକ

ଜନ୍ମ—୧୯୧୬, ଜାନୁଆରୀ ୧



ବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେଉଁ କେତେଜଣ ନାଟ୍ୟକାର ଓଡ଼ିଶା ନାଟ୍ୟ ଜଗତକୁ ସ୍ୱୀୟ ଲେଖନୀ ଚାଳନା ମାଧ୍ୟମରେ ସମୃଦ୍ଧିମନ୍ତ କରିଥିଲେ ସେମାନଙ୍କ ମଧ୍ୟରେ ନାଟ୍ୟକାର ଗୋପାଳ ଛୋଟରାୟଙ୍କ ନାମ ଅଗ୍ରଗଣ୍ୟ । ଏହି ବହୁ ପ୍ରତିଭାଶାଳୀ ନାଟ୍ୟକାର କଟକ ଜିଲ୍ଲାର ଜଗତ୍‌ସିଂହପୁର ସବ୍‌ଡିଭିଜନ୍ ଅନ୍ତର୍ଗତ ପୁରୁଣାଗଡ଼ ଗ୍ରାମରେ ୧୯୧୬ ମସିହା ଜାନୁୟାରୀ ମାସ ୧ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ୰ ହଳଧର ଛୋଟରାୟ । ଶିକ୍ଷା ସମାପ୍ତି ପରେ ସେ ପ୍ରଥମେ ଏଗାର ବର୍ଷ ପର୍ଯ୍ୟନ୍ତ ଲୋକାଲ ବୋର୍ଡରେ କାର୍ଯ୍ୟ କରିବାପରେ ୧୯୫୫ ମସିହାରେ ଆକାଶବାଣୀ, କଟକରେ ଯୋଗଦାନ କରି ୧୯୭୫ ମସିହାରେ ସୁଦୀର୍ଘ କୋଡ଼ିଏ ବର୍ଷର ଚାକିରୀ ପରେ, ତହିଁରୁ ଅବସର ଗ୍ରହଣ କରିଅଛନ୍ତି । ଏହି ସମୟ ମଧ୍ୟରେ ସେ ବହୁ ନାଟକ, ଯାତ୍ରା, ବେତାର ନାଟକ, କ୍ଷୁଦ୍ରଗଳ୍ପ, ଦୂରଦର୍ଶନ ନିମନ୍ତେ ନାଟକ, ଗୀତିନାଟ୍ୟ ଇତ୍ୟାଦି ରଚନା କରି ଓଡ଼ିଶାର ବାଣୀ ଭଣ୍ଡାରକୁ ସମୃଦ୍ଧ କରି ଅଛନ୍ତି ।

ନାଟ୍ୟକାର ଶ୍ରୀ ଛୋଟରାୟ ପ୍ରାୟ କୋଡ଼ିଏ ଖଣ୍ଡ ବଡ଼ ନାଟକ ରଚନା କରି ଅଛନ୍ତି । ତନ୍ମଧ୍ୟରୁ 'ଫେରିଆ', 'ଭରସା', 'ପର କଲମ', 'ଘଟକ', 'ଅର୍ଦ୍ଧାଙ୍ଗିନି, ଆମ୍ବ ଦେବତା, ଝଞ୍ଜା ଇତ୍ୟାଦି ଉଲ୍ଲେଖଯୋଗ୍ୟ । ତାଙ୍କ ରଚିତ ଅନ୍ୟୁନ ଏକୋଇଶିଟି 'ଯାତ୍ରା' ଅଦ୍ୟାବଧି ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ ହେଉଅଛି । ତାଙ୍କ ରଚିତ ପ୍ରାୟ ୩୫୦ ଖଣ୍ଡ ବେତାର ନାଟକ ମଧ୍ୟରୁ, 'ପୁରପୁର ଯାଉବାଉଳ', 'ଶ୍ରୀ ହରିଙ୍କ ସଂସାର' ଓ 'ବିଭ୍ରାଟ' ଇତ୍ୟାଦି ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ସେ ପ୍ରାୟ ୩୦ଟି କ୍ଷୁଦ୍ରଗଳ୍ପ, ୮୫ଟି ଦୂରଦର୍ଶନ ନାଟକ, ୬୫ଟି ଟେଲିଭିଜନ ଗୀତିନାଟ୍ୟ ରଚନା କରିଥିବା ବେଳେ ତାଙ୍କର ପରକଲମ, ସହଧର୍ମିଣୀ, ସମୁଦ୍ର ମନ୍ଥନ, ହିନ୍ଦି ଭାଷାରେ ଅନୁଦିତ ହୋଇଥିବାବେଳେ 'ସୀମା' ଇଂରାଜୀରେ ଅନୁଦିତ ହୋଇଛି । ସେ ନିଜେ ମଧ୍ୟ ଇଂରାଜୀ ଭାଷାରୁ "Enemy

of the people, 'Mock Doctor', 'Evil that men do' ଏବଂ 'A man with a bowler's Hat' ପ୍ରଭୃତିକୁ ଓଡ଼ିଆରେ ଅନୁବାଦ କରିଥିଲେ । ଶ୍ରୀ ଗ୍ରୋଟେଗ୍ରାସ୍ ମଧ୍ୟ ନିଜେ ଆକାଶବାଣୀର ଜଣେ ସ୍ୱୀକୃତ ସଙ୍ଗୀତ ରଚୟିତା । ଏହି ବହୁ ପ୍ରତିଭାସମ୍ପନ୍ନ କଳାକାରଙ୍କର ଅନ୍ୟୂନ ୫୫ଟି ବହି ପ୍ରକାଶିତ ହୋଇଛି ।

ନିଜର ଅତୁଳନୀୟ ସାହିତ୍ୟକୃତି ନିମନ୍ତେ ତାଙ୍କୁ ଜୀବନରେ ବହୁ ସମ୍ମାନ, ପୁରସ୍କାର ମିଳିଛି । ତନ୍ମଧ୍ୟରୁ ୧୯୯୧ ମସିହାରେ ରାଜ୍ୟପାଳଙ୍କ ତାମ୍ରଫଳକ, ୧୯୮୨ ମସିହାରେ 'ହାସ୍ୟରସର ନାଟକ' ନିମନ୍ତେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୮୭ ମସିହାରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ତାଙ୍କର "ଚିନୋଟି ଅପେକ୍ଷା ଏକାଙ୍କ" ନିମନ୍ତେ ଏତଦ୍‌ବ୍ୟତୀତ ୧୯୭୫ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର, ଏବଂ ଓଡ଼ିଆ ଭାଷାର ଶ୍ରେଷ୍ଠ ଲେଖକ ଭାବରେ ତାଙ୍କୁ ୧୯୮୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ସମ୍ମାନିତ କରାଯାଇଥିଲା । ତାଙ୍କ ରଚିତ ନାଟକ 'ପଟ କଲମ' ୧୯୫୪ ମସିହାରେ ଏବଂ ନାଟକ "ଅର୍ଦ୍ଧାଙ୍ଗିନୀ" ୧୯୫୬ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ନାଟକ ପ୍ରତିଯୋଗିତାରେ ସର୍ବଶ୍ରେଷ୍ଠ ବିବେଚିତ ହୋଇଥିଲା । ୧୯୭୪ ମସିହାରେ ବେତାର ଗୀତିନାଟ୍ୟ "ଶ୍ରୀମତୀ ସମାର୍ଜ୍ଜିନୀ' ସର୍ବଭାରତୀୟ ପ୍ରତିଯୋଗିତାରେ ଶ୍ରେଷ୍ଠ ବିବେଚିତ ହୋଇଥିଲା । ଶ୍ରୀ ଗ୍ରୋଟେଗ୍ରାସ୍ ଅନ୍ୟ ଭାବରେ ମଧ୍ୟ ବହୁ ସମ୍ମାନିତ । ତନ୍ମଧ୍ୟରୁ ୧୯୫୩ ମସିହାରେ ବିଷୁବ ମିଳନ ସମ୍ମାନ, କଳାବିକାଶ କେନ୍ଦ୍ର ସମ୍ମାନ ଇତ୍ୟାଦି ଉଲ୍ଲେଖଯୋଗ୍ୟ । ଏବେ ସେ ଆଞ୍ଚଳିକ ଚଳଚ୍ଚିତ୍ର ସେନ୍‌ସର ବୋର୍ଡର ସଦସ୍ୟ ଅଛନ୍ତି, ପୂର୍ବରୁ ସେ ଓଡ଼ିଶା ସାହିତ୍ୟ ଏକାଡେମୀର ସଦସ୍ୟ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ସଦସ୍ୟ, ଓଡ଼ିଆ ଚଳଚ୍ଚିତ୍ରର ବାର୍ଷିକ ପୁରସ୍କାର ମଣ୍ଡଳର ସଦସ୍ୟ ଏବଂ ଦୂରଦର୍ଶନ କଟକର ଉପଦେଷ୍ଟା ମଣ୍ଡଳୀର ସଦସ୍ୟ ଭାବରେ କାର୍ଯ୍ୟକରି ଅଛନ୍ତି ।

ଏହି ଅଦ୍ୱିତୀୟ ସ୍ରଷ୍ଟାଙ୍କର ବହୁ ନାଟକ ଉଚ୍ଚ ମାଧ୍ୟମିକ ସ୍ତରଠାରୁ ଆରମ୍ଭ କରି ସ୍ନାତକୋତ୍ତର ଶ୍ରେଣୀମାନଙ୍କର ପାଠ୍ୟକ୍ରମରେ ସ୍ଥାନ ପାଇଛି । ଏହି ଲେଖକଙ୍କ ଉପରେ ଅନେକ ସାହିତ୍ୟରଥୀମାନଙ୍କ ଦ୍ୱାରା "ଗ୍ରୋଟେଗ୍ରାସ୍ ନାଟ୍ୟ ମାନସ" ସମାଲୋଚନା ଗ୍ରନ୍ଥ ପ୍ରକାଶ ପାଇଛି । ତାଙ୍କ ନାଟକ ଉପରେ ଗବେଷଣା କରି ଦୁଇଜଣ ପି.ଏଚ.ଡ଼ି. ଲାଭ କରିଛନ୍ତି ।

ବହୁମୁଖୀ ପ୍ରତିଭାର ଅଧିକାରୀ ଶ୍ରୀ ଗ୍ରୋଟେଗ୍ରାସ୍ ଏବେବି ଲେଖନୀ ଚାଳନାରେ ବ୍ୟସ୍ତ । ଧ୍ୱଂସ ପ୍ରାପ୍ତ ଗୀତିନାଟ୍ୟ ଜଗତକୁ ପୁନୋରୁଦ୍ଧାର କରିବାରେ ସେ ଯେଉଁ ଅନବଦ୍ୟ ଭୂମିକା ଗ୍ରହଣ କରିଛନ୍ତି, ତାହା ତାଙ୍କୁ ଓଡ଼ିଶା ଜନମାନସରେ ସବୁଦିନ ପାଇଁ ବଞ୍ଚାଇ ରଖିବ ।

●



# ଶ୍ରୀ କାଶୀନାଥ ପୂଜାପଣ୍ଡା

**ମାଟିମଣ୍ଡପ ସାହି, ପୁରୀ**

**ଜନ୍ମ—୧୯୨୧, ମାର୍ଚ୍ଚ ୧୫**

ଓଡ଼ିଶୀ ସଙ୍ଗୀତର ଏକନିଷ୍ଠ ସାଧକ ତଥା 'ସଙ୍ଗୀତ ପ୍ରଭାକର' ଗୁରୁ ଶ୍ରୀ କାଶୀନାଥ ପୂଜାପଣ୍ଡାଙ୍କ ଜନ୍ମ ୧୫ ମାର୍ଚ୍ଚ ୧୯୨୧ ମସିହାରେ ପୁରୀର ମାଟି-ମଣ୍ଡପ ସାହିରେ । ପିତା ସ୍ୱ° ଦାମୋଦର ପୂଜାପଣ୍ଡା ଜଗନ୍ନାଥ ମନ୍ଦିରର ଜଣେ ପୂଜକ ଥିଲେ । ଓଡ଼ିଶୀ ସଙ୍ଗୀତ ଶିକ୍ଷା ପ୍ରତି ତାଙ୍କର ଅନନ୍ୟ ଆଗ୍ରହ ଓ ଅନୁରାଗ ଯୋଗୁଁ ମାତ୍ର ୧୦ ବର୍ଷ ବୟସରେ ସେ ଓଡ଼ିଶାର ତତ୍କାଳୀନ ଲବ୍ଧପ୍ରତିଷ୍ଠିତ ଓଡ଼ିଶୀ ସଙ୍ଗୀତର ଗୁରୁ ସିଂହାରୀ ଶ୍ୟାମସୁନ୍ଦର କରଙ୍କର ଶିଷ୍ୟ ରୂପେ ତାଙ୍କର ତତ୍ତ୍ୱାବଧାନରେ ଦୀର୍ଘ ୫ ବର୍ଷ ଓଡ଼ିଶୀ ସଙ୍ଗୀତ ଶିକ୍ଷାଲାଭ କରିବାର ସୁଯୋଗ ପାଇଥିଲେ । କେତେକ ପାରିବାରିକ ଅସୁବିଧା ତାଙ୍କ ସାଧନାରେ ଅନ୍ତରାୟ ସୃଷ୍ଟି କରିବାରୁ ନିଜ ପରିବାରର ଅଜ୍ଞାତରେ ସେ କଲିକତା ଚାଲିଗଲେ । ସେଠାରେ ତତ୍କାଳୀନ ଭାରତର ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତର କର୍ଣ୍ଣଧାର ଗୁରୁ ଶ୍ରୀ କାଳିପଦ ମୁଖାର୍ଜୀଙ୍କଠାରୁ ତିନିବର୍ଷ ଧରି ଅନେକ ଦୁଃଖ ଓ ଅନାଟନ ମଧ୍ୟରେ ସଙ୍ଗୀତ ଶିକ୍ଷା କରିଥିଲେ । ବର୍ଷୀୟାନ୍ ସଙ୍ଗୀତ ସାଧକ ଧୀରେନ୍ ମିତ୍ରଙ୍କ ଶିଷ୍ୟତ୍ୱ ଗ୍ରହଣକରି ଓଡ଼ିଶୀ ସଙ୍ଗୀତକୁ ଭାରତୀୟ ସଙ୍ଗୀତ ଦରବାରରେ ମର୍ଯ୍ୟାଦାସହ ଶାସ୍ତ୍ରୀୟ ସଙ୍ଗୀତ ରୂପେ ପ୍ରତିଷ୍ଠା କରିବା ନିମିତ୍ତ ଯତ୍ନବାନ୍ ହୋଇଥିଲେ ।

୧୯୪୧ ମସିହାରୁ ୧୯୪୮ ପର୍ଯ୍ୟନ୍ତ ଦୀର୍ଘ ୮ ବର୍ଷ ଧରି ଆକାଶବାଣୀ କଲିକତା କେନ୍ଦ୍ରରୁ ସନ୍ଧ୍ୟା ୫ ଘଣ୍ଟା ୩୦ ରୁ ୬ ଘଟିକା ପର୍ଯ୍ୟନ୍ତ ପ୍ରସାରିତ ହେଉଥିବା ଓଡ଼ିଶୀ ସଙ୍ଗୀତ ଓ ଭଜନରେ ଅଂଶଗ୍ରହଣ କରି ଜଣେ ବେତାର ଶିଳ୍ପୀ ଭାବେ ସ୍ୱୀକୃତି ଲାଭ କରିଥିଲେ । ୧୯୪୮ ମସିହାରେ ଓଡ଼ିଶାରେ ଆକାଶବାଣୀ କଟକ କେନ୍ଦ୍ର ପ୍ରତିଷ୍ଠା ହେବାଠାରୁ ଅଦ୍ୟାବଧି ଶ୍ରୀ ପୂଜାପଣ୍ଡା 'ଓଡ଼ିଶୀ ସଙ୍ଗୀତ' ଓ 'ଓଡ଼ିଆ ଭଜନ' କାର୍ଯ୍ୟକ୍ରମରେ ଏକ ଉଚ୍ଚମାନର କଣ୍ଠଶିଳ୍ପୀ ଭାବେ ଅଂଶଗ୍ରହଣ କରି ବହୁଜନ ପ୍ରଶଂସିତ ଓ ସ୍ୱୀକୃତିପ୍ରାପ୍ତ କଳାକାର ଭାବେ ବିଦିତ । ଏହା ବ୍ୟତୀତ ଶ୍ରୀ ପୂଜାପଣ୍ଡାଙ୍କର 'ଓଡ଼ିଶୀ ସଙ୍ଗୀତ ଶିକ୍ଷା' ନାମକ ଏକ ବିଶେଷ କାର୍ଯ୍ୟକ୍ରମ ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରସାରିତ ହେଉଛି ।

ଓଡ଼ିଶୀ ସଙ୍ଗୀତ ନିମିତ୍ତ ଓଡ଼ିଶାର ପୂରପଲ୍ଲୀ ତଥା ଭାରତର ଅନେକ ପ୍ରଦେଶରେ ଶ୍ରୀ ପୂଜାପଣ୍ଡା ଜନାଦୃତ । ୧୯୫୬ ମସିହାରେ ନୂଆଦିଲ୍ଲୀଠାରେ 'ସଙ୍ଗୀତ ନାଟକ ପରିଷଦ ଦ୍ୱାରା ଆୟୋଜିତ ଏକ ଉତ୍ସବରେ ସେ ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲେ । ୧୯୮୮ ଏପ୍ରିଲ୍ ମାସରେ ନୂଆଦିଲ୍ଲୀରେ ହୋଇଥିବା ଏକ ସେମିନାରରେ ଭାଗ ନେଇଥିଲେ । ୧୯୮୮ ଡିସେମ୍ବରରେ 'ସୋନାଲ୍ ମାନସିଂହ ଓଡ଼ିଶୀ ସେମିନାର'ରେ ନିମନ୍ତ୍ରିତ ଅତିଥି ଓ 'କମାନୀ ଅଡିଟୋରିଅମ୍' ନୂଆଦିଲ୍ଲୀରେ ଓଡ଼ିଶୀ ସଙ୍ଗୀତ ପରିବେଷଣ କରି ଦର୍ଶକ ତଥା ତତ୍‌କାଳୀନ କେନ୍ଦ୍ର ମନ୍ତ୍ରୀ ବସନ୍ତ ସାଠେଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲେ ।

ଓଡ଼ିଶୀ ସଙ୍ଗୀତର 'ଗୁରୁ' ହିସାବରେ ଶ୍ରୀ ପୂଜାପଣ୍ଡା ୧୯୭୬—୧୯୬୧, ଦୀର୍ଘ ୧୫ ବର୍ଷ କଟକସ୍ଥ 'ଉତ୍କଳ ସଙ୍ଗୀତ ସମାଜ'ରେ ଶିକ୍ଷକତା ତଥା ଅଧ୍ୟକ୍ଷତା କରିଥିଲେ । ଏତଦ୍‌ବ୍ୟତୀତ ୧୯୫୬ ମସିହାରୁ ଏଯାବତ୍ ଭୁବନେଶ୍ୱର 'ଲଳିତ କଳା ପୀଠ'ର ଅଧ୍ୟକ୍ଷ ଏବଂ 'ଓଡ଼ିଶା ସଙ୍ଗୀତ ପରିଷଦ', ପୁରୀର ଅଧ୍ୟକ୍ଷ ରୂପେ ଅବସ୍ଥାପିତ । ଓଡ଼ିଶୀ ଗବେଷଣା କେନ୍ଦ୍ର, ଭୁବନେଶ୍ୱରଙ୍କ ଅନୁରୋଧ କ୍ରମେ ଉକ୍ତ ସଂସ୍ଥାର ବିଭିନ୍ନ Teaching, Demonstration ଓ seminarରେ ସେ ଅଂଶଗ୍ରହଣ କରିଆସୁଛନ୍ତି । ଶ୍ରୀ ପୂଜାପଣ୍ଡା 'ମାଧ୍ୟମିକ ଶିକ୍ଷା ପରିଷଦ', 'ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ, 'ଉତ୍କଳ ବିଶ୍ୱବିଦ୍ୟାଳୟ', 'ପ୍ରୟାଗ ସଙ୍ଗୀତ ସମିତି', ଆହ୍ଲାବାଦ ଓ 'ପ୍ରାଚୀନ କଳାକେନ୍ଦ୍ର', ଚଣ୍ଡୀଗଡ଼ ଅନୁଷ୍ଠାନ ଦ୍ୱାରା ସଙ୍ଗୀତର ପରୀକ୍ଷକ ରୂପେ ସ୍ୱୀକୃତ ।

ଓଡ଼ିଶୀ ସଙ୍ଗୀତକୁ ତାଙ୍କର ଅବଦାନ ସକାଶେ ବିଭିନ୍ନ ଅନୁଷ୍ଠାନ ତରଫରୁ ସେ ସମ୍ମାନିତ ଓ ପୁରସ୍କୃତ । ୧୯୬୨ ମସିହାରେ 'ଆହ୍ଲାବାଦର, 'ପ୍ରୟାଗ ସଙ୍ଗୀତ ସମିତି ତରଫରୁ ସଙ୍ଗୀତ ପ୍ରଭାକର ଉପାଧି, ୧୯୬୪ ରେ 'ବିଷୁବ ମିଳନ'ରେ ପୁରସ୍କୃତ । ୧୯୬୨ ମସିହାରେ 'ଓଡ଼ିଶା ସଙ୍ଗୀତ ନାଟକ' ଏକାଡେମୀ ଦ୍ୱାରା 'ଗୁରୁ' ରୂପେ ସମ୍ମାନିତ ଓ ୧୯୬୯ ମସିହାରେ 'ଶ୍ରୀକ୍ଷେତ୍ର କଳା ପ୍ରକାଶିକା, ପୁରୀ ଦ୍ୱାରା 'ସଙ୍ଗୀତ କଳାନିଧି' ଉପାଧି, ୧୯୮୦ ମସିହାରେ 'ଶାରଳା ସ୍ମାରକ' ଅନୁଷ୍ଠାନ ତରଫରୁ 'ପାରମ୍ପରିକ ଓଡ଼ିଶୀ ସଙ୍ଗୀତ' ନିମିତ୍ତ ପୁରସ୍କୃତ ହୋଇଥିଲେ । ଏତଦ୍‌ବ୍ୟତୀତ ୧୯୮୨ ମସିହାରେ 'କବିଚନ୍ଦ୍ର ସ୍ମୃତି ସମିତି' ଦ୍ୱାରା ଶ୍ରେଷ୍ଠ କଣ୍ଠଶିଳ୍ପୀ, ୧୯୮୭ ମସିହାରେ 'ଉତ୍କଳ ପାଠକ ସଂସଦ' ଓ ୧୯୭୭ ମସିହାରେ 'କଳିଙ୍ଗ ସଂସ୍କୃତି ବିକାଶ କେନ୍ଦ୍ର ଦ୍ୱାରା, ସେ ପୁରସ୍କୃତ । ୧୯୭୭ରେ 'ଗଣ କବି ବୈଷ୍ଣବ ପାଣି ସ୍ମୃତି ସଂସଦ' ଦ୍ୱାରା ତାଙ୍କୁ ସମ୍ମାନିତ କରାଯାଇଥିଲା ।

ଜୀବନର ସାୟଂରେ ଶ୍ରୀ ପୂଜାପଣ୍ଡା ଉପନୀତ । ଏବେବି ସେ ଚିର ଚଞ୍ଚଳ, କର୍ମମୁଖର । ଏହା ଓଡ଼ିଶାର ସଙ୍ଗୀତ ସାଧକଙ୍କ ପାଇଁ ଏକ ନିଦର୍ଶନ । ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ କରିବାରେ ସେ ସଂକଳ୍ପବଦ୍ଧ । ଓଡ଼ିଶୀ ସଙ୍ଗୀତ ସାଧନା, ପ୍ରଚାର ଓ ପ୍ରସାର କ୍ଷେତ୍ରରେ ସେ ଯେ ଏକ ଦିଗଦର୍ଶକ, ଏଥିରେ ସନ୍ଦେହର ଅବକାଶ ନାହିଁ ।

●



## ଶ୍ରୀ ପ୍ରିୟନାଥ ମିଶ୍ର
**ଖଣ୍ଡସାହି, କଟକ**

**ଜନ୍ମ—୧୯୧୪, ମେ, ୮**

ଓଡ଼ିଶା ରଙ୍ଗମଞ୍ଚର ଜଣେ ପ୍ରତିଭାସମ୍ପନ୍ନ, ସାଧନନିଷ୍ଠ ଅଭିନେତା ଏବଂ ନିର୍ଦ୍ଦେଶକ ଶ୍ରୀ ପ୍ରିୟନାଥ ମିଶ୍ର ( ପୀରୁ ମିଶ୍ର ) ୧୯୧୪ ମସିହା ମେ ମାସ ୮ ତାରିଖ ଦିନ କଟକ ଜିଲ୍ଲାର ଖଣ୍ଡସାହି ଗ୍ରାମଠାରେ, ଏକ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ଯାତ୍ରା ଓ ନାଟକ ପ୍ରତି ତାଙ୍କର ପ୍ରବଳ ଆକର୍ଷଣ ରହିଥିଲା । ସେହିକାରଣରୁ ସେ ଶିକ୍ଷା ସମାପ୍ତି ପରେ ମେଡ଼ିକାଲ ରିପ୍ରେଜେଣ୍ଟେଟିଭ ଚାକିରି କରିଥିଲେ ମଧ୍ୟ ସେଥିରେ ଶାନ୍ତିଲାଭ କରି ପାରି ନ ଥିଲେ ।

୧୯୪୦ ମସିହାରେ ସେ ଚାକିରି ପରିତ୍ୟାଗ କରି "ଓଡ଼ିଶା ଥିଏଟର" ରେ ଯୋଗଦାନ କରିଥିଲେ । ୧୯୦୬ ମସିହାରେ ସେ ନିଜର ସାମାଜିକ ନାଟକ "ଗାର୍ଲସ୍କୁଲ" ମଞ୍ଚସ୍ଥ କରାଇ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ । ୧୯୪୫ ମସିହାରେ ସେ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍ ନାଟ୍ୟ ଦଳରେ ଯୋଗଦାନ କରିଥିଲେ । ଏହି ସମୟରେ ସେ ବହୁ ନାଟକରେ ଭିନ୍ନ ଭିନ୍ନ ଚରିତ୍ରରେ ଅଭିନୟ କରି କଳାନୁରାଗୀ ମହଲରେ ବହୁ ସୁନାମ ଅର୍ଜନ କରିଥିଲେ । ତତ୍ପରେ ସେ ନୂତନ ନାଟ୍ୟକାର ଏବଂ ନାଟକ ପ୍ରସ୍ତୁତି ନିମନ୍ତେ ସୁପ୍ରସିଦ୍ଧ ହୋଇଥିଲେ ।

୧୯୫୫ ମସିହାରେ ସେ ପ୍ରଥମଥର ପାଇଁ ଓଡ଼ିଆ ଚଳଚ୍ଚିତ୍ର "ଭାଇ ଭାଇ"ରେ ଅଭିନୟ କରିବାର ସୁଯୋଗ ଲାଭ କଲେ । ଅଦ୍ୟାବଧି ସେ ପ୍ରାୟ ପଇଁତିରିଶଟି ଚଳଚ୍ଚିତ୍ରରେ ଅଭିନୟ କରିବାର ଗୌରବ ଅର୍ଜନ କରିଅଛନ୍ତି । 'ଆଶ୍ରୟ' ନାମକ ଏକ ହିନ୍ଦି ଚଳଚ୍ଚିତ୍ରରେ ମଧ୍ୟ ସେ ଅଭିନୟ କରିଅଛନ୍ତି । ୧୯୮୧ ମସିହାରେ ଓଡ଼ିଆ ଚଳଚ୍ଚିତ୍ର 'ପୂଜା'ରେ ନିଜର ଅଭିନୟ ନିମନ୍ତେ ସେ ରାଜ୍ୟସ୍ତରୀୟ ଚଳଚ୍ଚିତ୍ର ପୁରସ୍କାର ହାସଲ କରିଥିଲେ । ଅଶୀଟି ନାଟକରେ ନିର୍ଦ୍ଦେଶନା ଦେବାପରେ ୧୯୮୬ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ।

ଏହାପରେ ଶ୍ରୀଯୁକ୍ତ ମିଶ୍ର ସହ ନିର୍ଦ୍ଦେଶକ ଭାବରେ "କୁଳଚନ୍ଦ୍ରମା" ଚଳଚ୍ଚିତ୍ରରେ କାର୍ଯ୍ୟ କରିଥିଲେ । ୧୯୯୦ ମସିହାରେ ସେ ଟେଲିଫିଲ୍ମ "ଅସ୍ତ ସୂର୍ଯ୍ୟର ରଙ୍ଗ" ନାମକ୍ରେ ନିର୍ଦ୍ଦେଶନା ଦେଇଥିଲେ । ଶେଷରେ ଓଡ଼ିଶାର ନାଟ୍ୟ କ୍ଷେତ୍ରରେ ଅବିସ୍ମରଣୀୟ ଯୋଗଦାନ ନିମନ୍ତେ ତାଙ୍କୁ ଓଡ଼ିଶା ସରକାରଙ୍କର ଅତି ସମ୍ମାନାସ୍ପଦ "ଜୟଦେବ ପୁରସ୍କାର" ଦ୍ୱାରା ୧୯୯୧ ମସିହାରେ ସମ୍ମାନିତ କରାଯାଇଛି ।

ଏତଦ୍‌ବ୍ୟତୀତ ସେ ଅନ୍ୟାନ୍ୟ ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ବିଭିନ୍ନ ସମୟରେ ପୁରସ୍କୃତ ଏବଂ ସମ୍ମାନିତ ହୋଇଅଛନ୍ତି । ତନ୍ମଧ୍ୟରେ "ବିଶୁବ ମିଳନ", 'ଜୀବନ ରଙ୍ଗ' 'ଅଜାନ୍ ଦ୍ୟାଙ୍ଗ', 'ସିନେ ଫିଟିକ୍ ଆସୋସିଏସନ୍' ଏବଂ 'ଉତ୍କଳ ପାଠକ ସଂସଦର' ନାମ ପ୍ରଣିଧାନ ଯୋଗ୍ୟ ।

ନାଟକ ଏବଂ ଚଳଚ୍ଚିତ୍ରକୁ ବାଦ୍ ଦେଲେ ମଧ୍ୟ ସେ କଟକ ଆକାଶବାଣୀ ଏବଂ ଦୂରଦର୍ଶନ କେନ୍ଦ୍ରର ଜଣେ 'ଏ' ଶ୍ରେଣୀର କଳାକାର ଭାବରେ ସ୍ୱୀକୃତ । ଅଦ୍ୟାବଧି ସେ ଶତାଧିକ ବେତାର ନାଟକରେ ଅଂଶଗ୍ରହଣ କରି ସାରିଛନ୍ତି । ତନ୍ମଧ୍ୟରୁ ତିନୋଟି ନାଟକରେ ଅଭିନୟ ନିମନ୍ତେ ତାଙ୍କୁ ସର୍ବଭାରତୀୟ ସ୍ତରରେ ବହୁ ସମ୍ମାନ ମିଳିଛି ।

ଏତଦ୍‌ବ୍ୟତୀତ ସେ ଗୀତିନାଟ୍ୟର ବହୁ କ୍ୟାସେଟ୍‌ରେ ମଧ୍ୟ କଣ୍ଠଦାନ କରିଅଛନ୍ତି । ନିଜର ମନ୍ତ୍ରିକୁ ଉଚ୍ଚରଖି କଳାର ବିକାଶରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରି ଦେବା ତାଙ୍କ ଜୀବନର ଲକ୍ଷ୍ୟ ବୋଲି ସେ କହନ୍ତି । ତାଙ୍କର ଦୀର୍ଘ ପ୍ରେରଣାମୟ ଜୀବନ ଆହୁରି ସୁଦୀର୍ଘ ହେଉ ।

●



## ଶ୍ରୀ ଶ୍ରୀଧର ନାୟକ

**କନକପୁର, କଟକ**

**ଜନ୍ମ—୧୯୩୪, ଜୁଲାଇ ୧**

ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ଲୋକନୃତ୍ୟ 'ଛଉ ନାଚ'ର ଗୁରୁ ଶ୍ରୀ ଶ୍ରୀଧର ନାୟକ ୧୯୩୪ ମସିହା ଜୁଲାଇ ମାସ ୧ ତାରିଖ ଦିନ କଟକ ଜିଲ୍ଲାର କନକପୁରଠାରେ ଜନ୍ମ ଗ୍ରହଣ କରିଥିଲେ । ସେ ଛଉ ନୃତ୍ୟରେ ତାଙ୍କର ପ୍ରାରମ୍ଭିକ ଶିକ୍ଷାଗୁରୁ କଣ୍ଢିବାବୁ, ଗୁରୁ ପଦ୍ମଚରଣ ଭଞ୍ଜ ଏବଂ ଗୁରୁ ଅନନ୍ତ ଚରଣ ସାହୁଙ୍କ ଠାରୁ ଶିକ୍ଷା କରିଥିଲେ । ତତ୍ପରେ ସେ ଜଣେ ଗୁରୁ ଏବଂ ନର୍ତ୍ତକ ଭାବରେ ମୟୂରଭଞ୍ଜର ବାରିପଦାଠାରେ ଥିବା 'ଉତ୍ତରସାହି' ବିଦ୍ୟାଳୟରେ ଯୋଗଦାନ କରିଥିଲେ । ଛଉନୃତ୍ୟର ଜଣେ ଗୁରୁ ଏବଂ ନର୍ତ୍ତକ ଭାବରେ ସେ ବହୁ ବିରଳ କୃତିତ୍ୱର ଅଧିକାରୀ । ଛଉନୃତ୍ୟରେ ସେ ବିଭିନ୍ନ ଭୂମିକାରେ ଅଭିନୟ କରିଥିଲେ ମଧ୍ୟ, ମୟୂରଭଞ୍ଜ ଛଉନୃତ୍ୟ ଶୈଳୀରେ ବିଶେଷ କରି ଶିବ, ଏବଂ ବିଷ୍ଣୁଙ୍କ ଭୂମିକାରେ ତାଙ୍କର ଅଭିନୟ ସର୍ବୋତ୍କୃଷ୍ଟ । ତତ୍ପରେ ସେ ଛଉନୃତ୍ୟର ପ୍ରଚାର ଏବଂ ପ୍ରସାରରେ ମନୋନିବେଶ କଲେ ।

ଗୁରୁ ଭାବରେ ଶ୍ରୀ ନାୟକ ଅନେକ ଛାତ୍ରଙ୍କୁ ଛଉନୃତ୍ୟରେ ତାଲିମ ଦେଇ ଆସୁଅଛନ୍ତି । ଛଉନୃତ୍ୟ କ୍ଷେତ୍ରରେ ତାଙ୍କର ବିଶେଷ ଅବଦାନ ନିମନ୍ତେ ତାଙ୍କୁ "ମୟୂରଭଞ୍ଜ ଛଉ ନୃତ୍ୟ ପ୍ରତିଷ୍ଠାନ" ଦ୍ୱାରା ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପ୍ରଦତ୍ତ ସମ୍ମାନରେ ୧୯୯୮ ମସିହାରେ ସମ୍ମାନିତ କରାଯାଇଥିଲା । ଏତଦ୍‌ବ୍ୟତୀତ ୧୯୮୮ ମସିହାରେ ପୁନଶ୍ଚ ମୟୂରଭଞ୍ଜର ଛଉନୃତ୍ୟ ପାଇଁ ତାଙ୍କ ଅବଦାନ ନିମନ୍ତେ ତାଙ୍କୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ସମ୍ମାନିତ କରାଯାଇଛି ।

ସମ୍ପ୍ରତି ଶ୍ରୀ ନାୟକ "ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ, ଭୁବନେଶ୍ୱର" ଠାରେ ଛଉନୃତ୍ୟ ବିଭାଗରେ ଅବସ୍ଥାପିତ ହୋଇ କାର୍ଯ୍ୟରତ ।

●



## ଶ୍ରୀ ଭକ୍ତକିଶୋର ପଟ୍ଟନାୟକ

ଗୁଣିପୁର, କଟକ

ଜନ୍ମ—୧୯୨୨, ନଭେମ୍ବର ୧୩

ଓଡ଼ିଶାର ନାଟ୍ୟ ରଚନା କ୍ଷେତ୍ରର ଅନ୍ୟତମ ମହାରଥୀ ହେଲେ ଶ୍ରୀ ଭକ୍ତ କିଶୋର ପଟ୍ଟନାୟକ । ତାଙ୍କର ଜନ୍ମ ୧୯୨୨ ମସିହା ନଭେମ୍ବର ମାସ ତା ୧୩ ରିଖରେ କଟକ ଜିଲ୍ଲା ଅନ୍ତର୍ଗତ ଗୁଣିପୁର ଗ୍ରାମର ଏକ ସମ୍ଭ୍ରାନ୍ତ ପରିବାରରେ । ତାଙ୍କ ପିତାଙ୍କ ନାମ ଥିଲା ସାଧୁ ଚରଣ ପଟ୍ଟନାୟକ ଏବଂ ମାତାଙ୍କ ନାମ ଥିଲା ସତ୍ୟଭାମା ଦେଈ ।

ବି.ଏ. ପରୀକ୍ଷାରେ ଡିଷ୍ଟିଂସନରେ ଉତ୍ତୀର୍ଣ୍ଣ ହେବାପରେ ଶ୍ରୀ ଭକ୍ତ କିଶୋର ଏ.ପି. ଆଇ. ଅଫିସ ଭୁବନେଶ୍ୱରଠାରେ ୧୯୮୦ ମସିହାରେ ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ପ୍ରୋଡକ୍‌ସନ୍ ଅଫିସର୍ ( O. E. S. II. ) ଭାବରେ କାର୍ଯ୍ୟ କରୁଥିଲେ । ନିଜର ଏହି ଜୀବନ କାଳ ମଧ୍ୟରେ ସେ ସାମାଜିକ ଜନଚେତନା ବୃଦ୍ଧି କରିବା ଦିଗରେ ପ୍ରୟାସୀ ହୋଇଥିଲେ ଏବଂ ଏଥିନିମନ୍ତେ ନାଟକ ରଚନାକୁ ନିଜର ମାଧ୍ୟମ ଭାବେ ଗ୍ରହଣ କରି ନେଇଥିଲେ । ଏଇଥିପାଇଁ ହୁଏତ ତାଙ୍କର ସମସ୍ତ ନାଟକରେ ତତ୍କାଳୀନ ସମାଜର ସଫଳ ପ୍ରତିଫଳନ ହୋଇଛି । ତାଙ୍କ ରଚିତ ନାଟକସବୁ ଅତ୍ୟନ୍ତ ବାସ୍ତବଧର୍ମୀ ଏବଂ ହୃଦୟସ୍ପର୍ଶୀ — ଦେଶର ସ୍ୱାଧୀନତା ସଂଗ୍ରାମର ଚିତ୍ର ମଧ୍ୟ ତାଙ୍କର କେତେକ ନାଟକରେ ଦେଖିବାକୁ ମିଳିଥାଏ । ତାଙ୍କର ଲେଖନୀ କେବଳ ନାଟକ ନୁହେଁ, ନାଟିକା, କବିତା, ଉପନ୍ୟାସ ଓ ଗୀତିନାଟ୍ୟସବୁ ମଧ୍ୟ ସୃଷ୍ଟି କରିଯାଇଛି । ସେ ସମୟରେ ଶ୍ରୀ ଭକ୍ତକିଶୋରଙ୍କ ନାଟକର ଚାହିଦା ରସିକ ମହଲରେ ଯେ କେତେ ଥିଲା ତାହା କହିବା ବାହୁଲ୍ୟ ମାତ୍ର । ତତ୍ ସମୟର ମୁଷ୍ଟିମେୟ ସାମାଜିକ ନାଟ୍ୟକାରମାନଙ୍କ ମଧ୍ୟରେ ସେ ବୋଧହୁଏ ସର୍ବଶ୍ରେଷ୍ଠ ଥିଲେ ।

ତାଙ୍କ ରଚିତ ନାଟକମାନଙ୍କ ମଧ୍ୟରେ ଝିଅଭଉଡ଼, ଦାବୀ, ମିମାଂସା, ଦେବୀ, ବେନାମୀ, ଜହର, ଶିକାରୀ, ଆଲୋକ, ଗରିବ, ମାଣିକଯୋଡ଼ି, ସାଧବୀ, ସାଆନ୍ତଘର,

ତୋଫାନ, ଜୀବନଜୁଆ,, ପଢ଼ିଲି ରଜ, ଜୟମାଳ, ଅତିଥି, ବୈରାଗୀର ସଂସାର, ଅଗ୍ନି-ପରୀକ୍ଷା, ଅଶୋକସ୍ତମ୍ଭ, ପ୍ରତାପରୁଦ୍ର, ଫୁଲଶେଜ, ରାଜନର୍ତ୍ତକୀ, ସର୍ବଶୋଧ, ଦେବଭୂମି ଆକାଶ ଯେଉଁଠି ମାଟି ଛୁଏଁ, କୁଳବୋହୂ, ଏଯୁଗର ଝିଅ, ଗୋଟିଏ ମା କୋଟିଏ ସନ୍ତାନ, ଦିଗ୍‌ଦର୍ଶନ ଓ କାଶ୍ମିରୀ ବେଗମ୍ ଧୂଳିଜାର. (ନାଟକ), ବାଣହରଣ, ମାଇଲଖୁଣ୍ଟ, ଦଶଭୁଜା, ଶ୍ରୀ ଗୁଣ୍ଡିଚା, ବାଙ୍କ ରାହାଡ଼, ଜାଗରଣ, କୋଣାର୍କ, ସୁଲତାନା ରେଜିୟା, ଦାନଦର୍ପୀ, ଧରଣୀ, ପୃଥ୍ୱୀସଂସାର, ସାବିତ୍ରୀ, ଅଗ୍ନି ପତଙ୍ଗ, କର୍ଣ୍ଣ ଓ 'ଝାନ ତଲସ' ( ଏକାଙ୍କିକା ), ମରୁପଥିକ ( ଉପନ୍ୟାସ ), ବଳିବାମନ ଓ ବାଣହରଣ (ଗୀତିନାଟ୍ୟ ) ପଥିକ ତୁମ ବଂଶୀ ବାଜୁ (କବିତା ସଂକଳନ), ନିଲାମ, ଚାମ୍‌ର ଘର, ଯାନ ଓ ଜନତା ଏବଂ ବାସ୍ତାଣୀ (କ୍ଷୁଦ୍ରଗଳ୍ପ ) ଉଲ୍ଲେଖଯୋଗ୍ୟ ।

ଏହି ସବୁ ଅନବଦ୍ୟ କୃତି ନିମନ୍ତେ ଶ୍ରୀ ପଟ୍ଟନାୟକ ଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ତରରେ ବହୁ ସମ୍ମାନ ଏବଂ ପୁରସ୍କାର ଲାଭ କରିଛନ୍ତି । ତନ୍ମଧ୍ୟରେ ୧୯୪୮ ରେ ବିଶ୍ୱ ମିଳନ ପୁରସ୍କାର, ୧୯୫୯-୬୦ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ନାଟକ 'ଅଗ୍ନିପରୀକ୍ଷା' ପାଇଁ, ୧୯୭୭-୭୮ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର, ୧୯୮୪ରେ 'କୋଣାର୍କ' ନିମନ୍ତେ ଜାତୀୟ ପୁରସ୍କାର, ୧୯୮୮ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ତାମ୍ରପତ୍ର ଏବଂ ୧୯୮୪ ମସିହାରେ ଉତ୍କଳ ପାଠକ ସଂସଦ ଦ୍ୱାରା 'ନାଟ୍ୟରତ୍ନ' ଉପାଧି ଲାଭ ତାଙ୍କ ସାରସ୍ୱତ ଜୀବନର ଗୋଟିଏ ଲେଖାଏଁ ମାଇଲ ଖୁଣ୍ଟ । ତାଙ୍କର ଲେଖନୀ ଚାଳନା ବନ୍ଦ ନ ହୋଇ ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ଏମିତି ସବୁଦିନେ ବୃଦ୍ଧିମନ୍ତ କରିଚାଲିଥାଉ ।



## ଶ୍ରୀ ନୃସିଂହନାଥ ଖୁଣ୍ଟିଆ

### ପୁରୀ

### ଜନ୍ମ—୧୯୧୩, ଅକ୍ଟୋବର ୯

ଉତ୍କଳ ସଙ୍ଗୀତ ରାଜ୍ୟର ଅନ୍ୟତମ ନବରତ୍ନ ଶ୍ରୀଯୁକ୍ତ ନୃସିଂହନାଥ ଖୁଣ୍ଟିଆ ୧୯୧୩ ମସିହା ଅକ୍ଟୋବର ମାସ ୯ ତାରିଖରେ ପୁରୀ ସହରର ମଣିକର୍ଣ୍ଣିକା ସାହିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଗୋବିନ୍ଦ ଚନ୍ଦ୍ର ଖୁଣ୍ଟିଆ ଓ ମାତାଙ୍କ ନାମ ପଦ୍ମାବତୀ ଦେବୀ । ସଙ୍ଗୀତ ଶିକ୍ଷା ନିମନ୍ତେ ତାଙ୍କ ପିତାମାତାଙ୍କର ପ୍ରେରଣା ରହିଥିଲା ଏବଂ ସଙ୍ଗୀତର ପ୍ରଥମ ଶିକ୍ଷା ସେ ତାଙ୍କର ମାମୁ ° ଭୀମସେନ ପ୍ରତିହାରୀଙ୍କ ନିକଟରୁ ଲାଭ କରିଥିଲେ । ପରେ ସେ ଗାୟକ ରତ୍ନ ° ସିଂହାରୀ ଶ୍ୟାମସୁନ୍ଦର କରଙ୍କର ଶିଷ୍ୟତ୍ୱ ଗ୍ରହଣ କରି ସଙ୍ଗୀତ ରାଜ୍ୟରେ ପ୍ରବେଶ କରିବାର ସୁଯୋଗ ପାଇଲେ । ପରେ ସେ ° ଯଶୋବନ୍ତ ରାଓ ମୁଲେ (ଗୋୟାଲିୟର୍), ବିଭୂତି ଭୂଷଣ ମୁଖୋପାଧ୍ୟାୟ (ବୈଷ୍ଣବ ଘାଟ, କଲିକତା), ମନିଶଙ୍କର ଧୀରଜରାମ (ଗୁଜରାଟ) ପ୍ରଭୃତି ବିଶିଷ୍ଟ ଗୁରୁମାନଙ୍କ ନିକଟରୁ ସଙ୍ଗୀତ ଶିକ୍ଷା ଲାଭ କରି ଓଡ଼ିଶୀ, ହିନ୍ଦୁସ୍ଥାନୀ, ଧ୍ରୁପଦ୍ ଓ ଧମାର ଆଦି ଶାସ୍ତ୍ରୀୟ ଗାୟନ ଶୈଳୀରେ ପାରଦର୍ଶିତା ଲାଭ କରିଥିଲେ । ଏହି ସ୍ୱନାମଧନ୍ୟ କଳାକାର ନିଜ ଜୀବନ କାଳ ମଧ୍ୟରେ ବହୁ ସଙ୍ଗୀତ ଅନୁଷ୍ଠାନ ସହ ଯୁକ୍ତରହି ଅନେକ ଶିକ୍ଷାର୍ଥୀଙ୍କୁ ସଙ୍ଗୀତ ଶିକ୍ଷା ଦେଇଅଛନ୍ତି । ସେମାନଙ୍କ ମଧ୍ୟରେ ଶ୍ରୀ ଦାମୋଦର ହୋତା, ଶ୍ରୀ ବିଶ୍ୱନାଥ ମିଶ୍ର, ଶ୍ରୀ ଭୋଳାନାଥ ରାୟ, ଶ୍ରୀମତୀ ଇନ୍ଦିରା ପ୍ରତିହାରୀ ପ୍ରଧାନ ଅଟନ୍ତି । ଏତଦ୍‌ବ୍ୟତୀତ ଅନେକ ଦରିଦ୍ର ଛାତ୍ରଙ୍କୁ ସେ ବିନା ଅର୍ଥରେ ଶିକ୍ଷାଦାନ କରିବା ସହ ସେମାନଙ୍କୁ ଆର୍ଥିକ ସହାୟତା ପ୍ରଦାନ କରିଅଛନ୍ତି । ତାଙ୍କର ଏହିସବୁ ଗୁଣ ପାଇଁ ସେ ସମସ୍ତଙ୍କ ନିକଟରେ ଅତି ସ୍ନେହରେ 'ନାଥ ଖୁଣ୍ଟିଆ' ଭାବରେ ପରିଚିତ ।

ଶ୍ରୀଯୁକ୍ତ ଖୁଣ୍ଟିଆ ନିଜ ଜୀବନକାଳ ମଧ୍ୟରେ ଅଦ୍ୟାବଧି ବହୁ ସଙ୍ଗୀତ ଶିକ୍ଷାନୁଷ୍ଠାନରେ ଶିକ୍ଷକ ରୂପେ କାର୍ଯ୍ୟକରି ଆସୁଛନ୍ତି । ତନ୍ମଧ୍ୟରେ କଟକର ଲକ୍ଷ୍ମୀକାନ୍ତ ସଙ୍ଗୀତ

ବିଦ୍ୟାଳୟ, ଖୋର୍ଦ୍ଧା ରେଳବାଇ କଲୋନୀ ସଙ୍ଗୀତ ବିଦ୍ୟାଳୟ, ଭୁବନେଶ୍ୱର ଇଉନିଟ୍-୩ ସ୍ଥିତ ରାଜଧାନୀ କଳାପରିଷଦ ଏବଂ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର ନାମ ଉଲ୍ଲେଖ-ଯୋଗ୍ୟ । ଏତଦ୍‌ବ୍ୟତୀତ ଶ୍ରୀଯୁକ୍ତ ଝୁଣ୍ଟିଆ ଆକାଶବାଣୀ କଲିକତା ଏବଂ କଟକ ଆକାଶ-ବାଣୀରେ ସ୍ୱୀକୃତ କଳାକାର ଭାବରେ କାର୍ଯ୍ୟକରି ଅଛନ୍ତି । ତାଙ୍କ ଦ୍ୱାରା ଗାୟନ କରାଯାଇଥିବା ଅନେକ ଗୀତର ରେକର୍ଡ ମଧ୍ୟ ରହିଅଛି ।

ବାଲ୍ୟାବସ୍ଥାରୁ ପିତାମାତାଙ୍କ ସ୍ନେହରୁ ଏ ଦୁନିଆରେ ନିଃସଙ୍ଗ ହୋଇଯାଇଥିବା ଶ୍ରୀଯୁକ୍ତ ଝୁଣ୍ଟିଆ ସାରାଜୀବନ କେବଳ ସଙ୍ଗୀତକୁ ନିଜର ସାଥୀ ରୂପେ ଗ୍ରହଣ କରି ନେଇଛନ୍ତି । ଅବିବାହିତ ଜୀବନଯାପନ କରୁଥିବା ଏହି କଳାକାର ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ କରିବାକୁ ନିଜ ଜୀବନର ସବୁ ସୁଖକୁ ଜଳାଞ୍ଜଳି ଦେଇ ଆଜି ତାଙ୍କର ଆଦ୍ୟଗୁରୁ ସିଂହାରି ଶ୍ୟାମ ସୁନ୍ଦର କରଙ୍କ ପ୍ରତିଷ୍ଠିତ 'ଶ୍ୟାମ ସୁନ୍ଦର ସଙ୍ଗୀତ ମହାବିଦ୍ୟାଳୟ'ର ଅଧ୍ୟକ୍ଷ ରୂପେ କାର୍ଯ୍ୟ କରୁଅଛନ୍ତି । ତାଙ୍କର ମହତ୍ ଉଦ୍ଦେଶ୍ୟ ଫଳବତୀ ହେଉ ।

●

# ଶ୍ରୀ କାଶୀନାଥ ସାହୁ

## ହରିପୁର, ପୁରୀ



**ଜନ୍ମ—୧୯୧୩, ସେପ୍ଟେମ୍ବର ୭**

ବିଂଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାର ନାଟ୍ୟ ଆକାଶରେ ଯେଉଁ କେତେ ଜଣ କଳାକାର ସ୍ୱୀୟ ପ୍ରତିଭା ବଳରେ ନାଟ୍ୟ ଜଗତକୁ ଗୌରବମଣ୍ଡିତ କରିଥିଲେ ସେମାନଙ୍କ ମଧ୍ୟରେ ଶ୍ରୀ କାଶୀନାଥ ସାହୁଙ୍କ ନାମ ଉଲ୍ଲେଖଯୋଗ୍ୟ । ୧୯୧୩ ମସିହା ସେପ୍ଟେମ୍ବର ମାସ ୭ ତାରିଖରେ ପୁରୀ ଜିଲ୍ଲାର, ପିପିଲିଥାନା ଅନ୍ତର୍ଗତ ହରିପୁର ଗ୍ରାମରେ ଏହି ସୁନାମଧନ୍ୟ କଳାକାର ଜନ୍ମଗ୍ରହଣ କରିଥିଲେ ।

ନାଟକ ଏବଂ ଅଭିନୟ ପ୍ରତି ଜନ୍ମଗତ ଆକର୍ଷଣ ହେତୁ ମାତ୍ର ୧୨ ବର୍ଷ ବୟସରେ ସେ ପ୍ରଥମେ ରାଧାକୃଷ୍ଣ ଥିଏଟର୍, କଲିକତାରେ ଯୋଗଦାନ କରିଥିଲେ । ପରେ ପରେ ସେ କଟକର 'ଓଡ଼ିଶା ଆର୍ଟ ଥିଏଟର'ରେ ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ଅଧୀନରେ କାର୍ଯ୍ୟ କରିଥିଲେ । ଏହି ସମୟରେ ସେ ଉଭୟ ସ୍ତ୍ରୀ ଏବଂ ପୁରୁଷ ଭୂମିକାରେ ଅଂଶ ଗ୍ରହଣ କରୁଥିଲେ । ୧୯୨୭ ମସିହାରେ ମାତ୍ର ୧୪ ବର୍ଷ ବୟସରେ ସେ 'କୋଣାର୍କ' ନାଟକର 'ଧରମା' ଭୂମିକାରେ ଅଭିନୟ କରି ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ । ଏହି ନାଟକର ନିର୍ଦ୍ଦେଶକ ଥିଲେ ଓଡ଼ିଶା ରଙ୍ଗମଞ୍ଚର ପ୍ରଖ୍ୟାତ ନଟ ଓ ନିର୍ଦ୍ଦେଶକ ଶୈଳେନ୍ଦ୍ର ବାନାର୍ଜି । ଏହି 'ଧରମା' ଭୂମିକାରେ ସେ ସୁଦୀର୍ଘ ୩୭ ବର୍ଷ କାଳ ଅଭିନୟ କରିଥିଲେ ଜୀବନର ଭିନ୍ନ ଭିନ୍ନ ସମୟରେ । ଏତଦ୍‌ବ୍ୟତୀତ ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ 'ଓରିଏଣ୍ଟାଲ୍ ଡାନସ୍ କମ୍ପିଟେସନ୍'ରେ ସେ ପ୍ରଥମ ଓଡ଼ିଆ କଳାକାର ଭାବେ ଯୋଗ ଦେଇ ତହିଁରେ ସ୍ୱର୍ଣ୍ଣ ପଦକ ହାସଲ କରି ବହୁ ପ୍ରଶଂସିତ ହୋଇଥିଲେ ।

ଶ୍ରୀ ସାହୁ 'ଓଡ଼ିଶା ଆର୍ଟ ଥିଏଟର୍' ଆସ୍କା ଗଞ୍ଜାମର ନୃତ୍ୟ ନିର୍ଦ୍ଦେଶକ ଭାବରେ ଦାୟିତ୍ୱ ଗ୍ରହଣ କରି ପରିଚାଳନ କାର୍ଯ୍ୟ କରିବା ସହ ଅନ୍ନପୂର୍ଣ୍ଣା ଥିଏଟରର ମାଷ୍ଟର ଭାବେ ଦୀର୍ଘ ଦଶବର୍ଷ ମଧ୍ୟ କାର୍ଯ୍ୟ କରିଥିଲେ ।

ଏବେ ପରିଣତ ବୟସରେ ଏହି ଜନପ୍ରିୟ କଳାକାର ପିପିଲିଠାରେ "ଅନ୍ନପୂର୍ଣ୍ଣା ଥିଏଟରସ୍" ନାମରେ ଏକ ଅଭିନୟ ସଂସ୍ଥାର ପରିଚାଳନା କରୁଅଛନ୍ତି ଏବଂ ଏହି ସଂସ୍ଥାକୁ ବଞ୍ଚାଇ ରଖିବା ଲାଗି ଚେଷ୍ଟିତ । ତାଙ୍କର ମହାନ୍ ଉଦ୍ଦେଶ୍ୟ ସଫଳ ହେଉ ।

●

# ପଣ୍ଡିତ ଭୁବନେଶ୍ୱର ମିଶ୍ର

**ପାରଳାଖେମୁଣ୍ଡି, ଗଞ୍ଜାମ**

**ଜନ୍ମ - ୧୯୨୭ ମସିହା**



ଓଡ଼ିଶାର ଯେଉଁ କେତେଜଣ ସଙ୍ଗୀତଜ୍ଞ ଓଡ଼ିଶୀ ନୃତ୍ୟ ଏବଂ ସଙ୍ଗୀତର ପ୍ରଚାର, ପ୍ରସାର ଏବଂ ଏହାକୁ ନୂତନ ରୂପରେଖ ଦେଇ ଶାସ୍ତ୍ରୀୟ ମର୍ଯ୍ୟାଦା ଦେବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ସୁପ୍ରସିଦ୍ଧ ବେହେଲା ବାଦକ ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଏହି ଅନନ୍ୟ କଳାପୂଜାରୀଙ୍କର ଜନ୍ମ ୧୯୨୭ ମସିହାରେ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ନିକଟବର୍ତ୍ତୀ କଲ୍ଲକୋଟା ଗ୍ରାମରେ । ତାଙ୍କର ପିତାଙ୍କ ନାମ ଶ୍ରୀଯୁକ୍ତ ଅନନ୍ତ ମିଶ୍ର ଏବଂ ମାତାଙ୍କ ନାମ ଶ୍ରୀମତୀ ଚମ୍ପା ଦେବୀ । କାକିନାଡ଼ାର ପିଠାପୁରମ୍ ସ୍କୁଲରୁ ମାତ୍ର ୬ଷ୍ଠ ଶ୍ରେଣୀରୁ ବାଲ୍ୟ ଶିକ୍ଷା ତ୍ୟାଗ କରି, ସେ ତାଙ୍କ ସଙ୍ଗୀତ ଜୀବନ (ବେହେଲା ବାଦନ) ଗୁରୁ ଦ୍ୱୋରା ନରସିଂହ ରାଓ ଏବଂ ସ୍ୱର୍ଗତ ଡକ୍ଟର ଦ୍ୱୋରା ଭେଙ୍କଟସ୍ୱାମୀ ନାଇଡୁଙ୍କ ନିକଟରୁ ଆରମ୍ଭ କରିଥିଲେ । ପରେ ସେ ବିଜୟନଗରମ୍ ମିଉଜିକ୍ କଲେଜରୁ ଶାସ୍ତ୍ରୀୟ ବେହେଲା ବାଦନରେ ଡିପ୍ଲୋମା ହାସଲ କରିଥିଲେ । ଏହି ସମୟଠାରୁ ସେ ଓଡ଼ିଶୀ ସଙ୍ଗୀତର ପ୍ରାଣକେନ୍ଦ୍ର କଟକଠାରେ ସର୍ବଦିନ ଅବସ୍ଥାନ କରି ନିଜକୁ ସ୍ୱରର ଦୁନିଆ ମଧ୍ୟରେ ହଜାଇ ଦେଇଥିଲେ ।

୧୯୪୮ ମସିହାରେ ଆକାଶବାଣୀ କଟକ କେନ୍ଦ୍ରର ଉଦ୍‌ଘାଟନ ପରେ ସେ ଏଥିରେ ଯୋଗଦାନ କରି ନିଜକୁ ଜଣେ ଦକ୍ଷ କଳାକାର ଭାବରେ ପ୍ରତିଷ୍ଠିତ କରିପାରିଥିଲେ । ବିଭିନ୍ନ ସମୟରେ ସେ ଆକାଶବାଣୀ କଟକ ଏବଂ ବମ୍ବେ କେନ୍ଦ୍ର ନିମନ୍ତେ ସଙ୍ଗୀତ କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରିଥିଲେ । ଓଡ଼ିଶୀ ନୃତ୍ୟ ଗୁରୁମାନଙ୍କ ସହ ମିଶି ଓଡ଼ିଶୀ ନୃତ୍ୟ ନିମନ୍ତେ ସ୍ୱତନ୍ତ୍ର ଓଡ଼ିଶୀ ଶୈଳୀରେ ଶାସ୍ତ୍ରୀୟ ରାଗ ପ୍ରୟୋଗରେ ଗୀତ ସଙ୍ଗର ସ୍ୱର ପ୍ରସ୍ତୁତ କରିବାରେ ସେ ଜଣେ ଅଗ୍ରଦୂତ ଅଟନ୍ତି । ଆଜି ଗାନ କରାଯାଉଥିବା ଅନେକ ପୁରାତନ ଓଡ଼ିଶୀ ଗୀତର ସେହିଁ ସଫଳ ସ୍ୱରକାର । ସୁଦୀର୍ଘ ତିରିଶ ବର୍ଷ ଧରି ଓଡ଼ିଆ

ଚଳଚ୍ଚିତ୍ରର ସଙ୍ଗୀତ ନିର୍ଦ୍ଦେଶନା ଦେବା ସଙ୍ଗେ ସଙ୍ଗେ ସେ ଅନେକ ହିନ୍ଦୀ ଚଳଚ୍ଚିତ୍ରରେ ମଧ୍ୟ ସଙ୍ଗୀତ ନିର୍ଦ୍ଦେଶନା ଦେବାର ବିରଳ କୃତିତ୍ୱ ହାସଲ କରିଅଛନ୍ତି ।

ଜଣେ ଉଚ୍ଚକୋଟିର ବେହେଲାବାଦକ ଭାବରେ ସେ ଭାରତବର୍ଷର ବିଭିନ୍ନ ପ୍ରାନ୍ତରେ ନିଜର କଳା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ବହୁବାର ବିଦେଶ ଭ୍ରମଣ କରି ଓଡ଼ିଶୀ ନୃତ୍ୟ ଏବଂ ସଙ୍ଗୀତକୁ ସେଠାରେ ଲୋକପ୍ରିୟ କରାଇବାରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଅଛନ୍ତି ।

ନିଜର ଅସାଧାରଣ ପ୍ରତିଭାଯୋଗୁ ସେ ୧୯୮୭ ମସିହାରେ କେନ୍ଦ୍ରୀୟ ସଙ୍ଗୀତ ନାଟକ ଏକାଡେମୀ ତରଫରୁ ସମ୍ମାନିତ ଏବଂ ପୁରସ୍କୃତ ହୋଇଛନ୍ତି ।

ଏଥିପୂର୍ବରୁ ୧୯୭୪ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କର ପ୍ରତିଭାକୁ ମାନ୍ୟତା ପ୍ରଦାନ କରିଥିଲେ ତାଙ୍କୁ ପୁରସ୍କୃତ ଏବଂ ସମ୍ମାନିତ କରି । ପୁନର୍ବାର ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କର ସଙ୍ଗୀତ କ୍ଷେତ୍ରରେ ନିର୍ଦ୍ଦେଶନା ନିମନ୍ତେ ୧୯୯୧ ମସିହାର ଅତି ସମ୍ମାନଜନକ 'ଜୟଦେବ ପୁରସ୍କାର' ଦ୍ୱାରା ସମ୍ମାନିତ କରି ଅଛନ୍ତି ।

ଅଧୁନା ଶ୍ରୀ ମିଶ୍ର ଓଡ଼ିଶା ସରକାରଙ୍କ ଓଡ଼ିଶୀ ଗବେଷଣା କେନ୍ଦ୍ରରେ କାର୍ଯ୍ୟରତ । ସେ ଅଗଣିତ ଓଡ଼ିଆ ଗୀତର ସ୍ୱର ପ୍ରସ୍ତୁତ କରିବା ସହ, ଅନ୍ୟାନ୍ୟ କାର୍ଯ୍ୟକ୍ରମ ଏବଂ ନୃତ୍ୟନାଟିକା ନିମନ୍ତେ, ଓଡ଼ିଆ, ହିନ୍ଦୀ, ସଂସ୍କୃତ ଭାଷାରେ, ଆକାଶବାଣୀ, ଓଡ଼ିଆ ରଂଗମଞ୍ଚ, ଚଳଚ୍ଚିତ୍ର ତଥା ଦୂରଦର୍ଶନ ନିମନ୍ତେ ବହୁ ନୂତନ ସ୍ୱରର ସୃଷ୍ଟିକର୍ତ୍ତା ଭାବରେ ଓଡ଼ିଆ ଜନମାନସରେ ସବୁଦିନେ ବଞ୍ଚି ରହିଥିବେ ।

●



# ଗୁରୁ ମାୟାଧର ରାଉତ

## କନ୍ତପହଁରା, କଟକ

ଓଡ଼ିଶୀ ନୃତ୍ୟଶୈଳୀର ଅନ୍ୟତମ ଖ୍ୟାତନାମା ଗୁରୁ ଶ୍ରୀ ମାୟାଧର ରାଉତ କଟକ ଜିଲ୍ଲାର ବାଙ୍କୀ ସବ୍‌ଡିଭିଜନ୍ ଅନ୍ତର୍ଗତ କନ୍ତପହରା ଗ୍ରାମର ଏକ ସାଧାରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । କଳା ପ୍ରତି ଅଦମ୍ୟ ଆକର୍ଷଣ ତାଙ୍କୁ ମାତ୍ର ନଅବର୍ଷ ବୟସରୁ ନାଟ୍ୟାଚାର୍ଯ୍ୟ ୬ କାଳୀଚରଣ ପଟ୍ଟନାୟକଙ୍କ ପ୍ରତିଷ୍ଠିତ "ଓଡ଼ିଶା ଥିଏଟର୍" ମଧ୍ୟକୁ ଟାଣି ନେଇଥିଲା । ସେହି ସମୟରେ ସେ ଶ୍ରୀ ଦୁର୍ଲଭ ଚନ୍ଦ୍ର ସିଂହ ଏବଂ ନିଜ ବଡ଼ ଭାଇ ହରିହର ରାଉତଙ୍କ ନିକଟରୁ ଓଡ଼ିଶୀ ନୃତ୍ୟରେ ପ୍ରାଥମିକ ଶିକ୍ଷା ଲାଭ କରିଥିଲେ । ତତ୍ପରେ ସ୍ୱର୍ଗୀୟ ମୋହନ ମହାପାତ୍ରଙ୍କ ନିକଟରୁ ସେ 'ଗୋଟିପୁଅ' ନୃତ୍ୟ ଶିକ୍ଷା କରିଥିଲେ । ୧୯୪୫ ମସିହାରେ ସେ ବାଣପୁରରେ ବଂଶୀଧର ପୃଷ୍ଟିଙ୍କ ସ୍ଥାପିତ 'ଭଗବତୀ ଥିଏଟର'ରେ ଯୋଗଦାନ କରି ସେଠାରେ ଶ୍ରୀ ଯୁଧିଷ୍ଠିର ମହାପାତ୍ରଙ୍କ ନିକଟରୁ ଦକ୍ଷିଣି ନାଚ ଶିକ୍ଷା କରିଥିଲେ । ୧୯୪୬ ମସିହାରେ ସେ ପୁରୀର 'ଅନ୍ନପୂର୍ଣ୍ଣା ଥିଏଟର'ରେ ଯୋଗଦାନ କରି ରାସଲୀଳାର ରାଧାକୃଷ୍ଣଙ୍କ ଅଭିନୟ ଶିକ୍ଷା କଲେ ସ୍ୱର୍ଗତ ଗୁରୁ ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ନିକଟରୁ । ପରବର୍ଷ ୧୯୪୭ ମସିହାରେ କଟକର ଅନ୍ନପୂର୍ଣ୍ଣା ଥିଏଟରରେ ଯୋଗଦାନ କରି ଗୁରୁ ପଙ୍କଜ ଚରଣ ଦାସଙ୍କ ତତ୍ତ୍ୱାବଧାନରେ ବିଧିବଦ୍ଧ ଭାବରେ ଓଡ଼ିଶୀ ନୃତ୍ୟ ଶିକ୍ଷା କଲେ । ଶେଷରେ ଶ୍ରୀ ରାଉତ 'କଥକ୍' ନୃତ୍ୟ ଶୈଳୀର ପ୍ରଖ୍ୟାତ ଗୁରୁ ଦୟାଲ୍ ଶଙ୍କରଙ୍କ ନିକଟରୁ ରଚନାତ୍ମକ ନୃତ୍ୟ ଶିକ୍ଷା କଲେ । ୧୯୫୨ ମସିହା ଅଗଷ୍ଟ ମାସରେ କଟକରେ କଳାବିକାଶ କେନ୍ଦ୍ରର ପ୍ରତିଷ୍ଠା ହେବା ପରେ ଶ୍ରୀ ରାଉତ ତହିଁରେ ନୃତ୍ୟ ଶିକ୍ଷକ ରୂପେ ଯୋଗଦାନ କଲେ । ଏହି ସମୟରେ ଅନ୍ନପୂର୍ଣ୍ଣା ଥିଏଟର ତ୍ୟାଗକରି ସେ କଟକର 'ଜନତା ରଙ୍ଗମଞ୍ଚ'ରେ ଯୋଗଦାନ କଲେ ନୃତ୍ୟ ଶିକ୍ଷକ ହିସାବରେ ।

୧୯୫୫ ମସିହାରେ ସେ "ଉତ୍କଳ ସଙ୍ଗୀତ ନାଟ୍ୟ କଳାପରିଷଦ' (ବର୍ତ୍ତମାନର ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ) ତରଫରୁ ବୃତ୍ତି ଲାଭ କରି ମାନ୍ଦ୍ରାଜର ଶ୍ରୀମତୀ ରୁକ୍ମିଣୀ ଦେବୀ ଅରୁଣ୍ଡେଲଙ୍କ ପରିଚାଳିତ 'କଳା କ୍ଷେତ୍ର'ରେ ଶ୍ରୀ ଟି. କେ. ଚନ୍ଦ୍ରଶେଖରଙ୍କଠାରୁ

'କଥାକଲୀ' ନୃତ୍ୟ ଶିକ୍ଷା କରିଥିଲେ ଏବଂ ତତ୍ପରେ ପୁନର୍ବାର କଳାବିକାଶ କେନ୍ଦ୍ରରେ ଯୋଗଦାନ କରିଥିଲେ ୧୯୫୫ ମସିହାରେ ସ୍ଥାୟୀ ଶିକ୍ଷକ ରୂପେ । ଓଡ଼ିଶୀ ନୃତ୍ୟର ପୁନରୁଦ୍ଧାର ନିମନ୍ତେ ସେ ସମୟର ବିଶିଷ୍ଟ ନୃତ୍ୟଗୁରୁ ଏବଂ ଗବେଷକମାନଙ୍କୁ ନେଇ ଗଠିତ 'ନିଖିଳ ଉତ୍କଳ ନୃତ୍ୟ ଶିଳ୍ପୀ ସଙ୍ଘ' ଦ୍ୱାରା ୧୯୫୯ ମସିହାରେ ପ୍ରତିଷ୍ଠିତ 'ଜୟନ୍ତିକା ଅନୁଷ୍ଠାନର ସେ ଜଣେ ସକ୍ରିୟ ସଦସ୍ୟ ଥିଲେ । ୧୯୬୦ ମସିହାରେ ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟଙ୍କ ଅନୁରୋଧରେ ସେ ଦିଲ୍ଲୀସ୍ଥିତ 'ନାଟ୍ୟ ବାଲେ ସେଣ୍ଟର'ରେ ଯୋଗଦେଇ ଥିଲେ ହେଁ ପରେ ଓଡ଼ିଶାକୁ ଫେରି ପୁଣି କଳାବିକାଶ କେନ୍ଦ୍ରରେ ଯୋଗଦାନ କରିଥିଲେ । କଳାବିକାଶ କେନ୍ଦ୍ରରେ ଶିକ୍ଷକତା କରିବା ସମୟରେ ସେ ତାଙ୍କର ପ୍ରସିଦ୍ଧ ସୃଷ୍ଟି 'ତପସ୍ୱିନୀ', 'ମେଘଦୂତ', 'ବ୍ରଜଲୀଳା', 'ସିଂହଳ କୁମାରୀ' ଓ 'କୃଷ୍ଣ ଚରିତମ୍' ଇତ୍ୟାଦି ସୃଷ୍ଟି କରି-ଥିଲେ । ପ୍ରଥମ ଓଡ଼ିଶୀ ନୃତ୍ୟ ଗୁରୁ ଭାବରେ ଓଡ଼ିଶୀ ନୃତ୍ୟରେ ସେ 'ସଞ୍ଚାରୀଭାବ' ସଂଯୋଜିତ କରିଥିଲେ । ଏତଦ୍‌ବ୍ୟତୀତ ସେ ନୃତ୍ୟରେ 'ମୁଦ୍ରା ବିନିଯୋଗ' ପଦ୍ଧତି ମଧ୍ୟ ସୃଷ୍ଟି କରିଥିଲେ । ୧୯୬୧ ମସିହାରେ ଭକ୍ତକବି ଜୟଦେବ ଗୋସ୍ୱାମୀଙ୍କ ବିରଚିତ "ଶ୍ରୀ ଗୀତଗୋବିନ୍ଦମ୍"ର ଅଷ୍ଟପଦୀ "ପଶ୍ୟତି ଦିଶି ଦିଶି···" "ପ୍ରିୟେ ଚାରୁଶୀଳେ···" ଏବଂ "ଚନ୍ଦନ ଚର୍ଚ୍ଚିତ···" ଇତ୍ୟାଦିକୁ ନୃତ୍ୟ ମାଧ୍ୟମରେ ପ୍ରଦର୍ଶିତ କରିବାରେ ସେ ଥିଲେ ସଫଳ ସଂଯୋଜକ । ଏତଦ୍‌ବ୍ୟତୀତ ସେ ଅନେକ ନୂତନ 'ପଲ୍ଲବୀ' ଏବଂ 'ମଙ୍ଗଳା ଚରଣ'ର ସ୍ରଷ୍ଟା ଭାବରେ ଅଗ୍ରଗଣ୍ୟ । ୧୯୬୭ ମସିହାରେ ଶ୍ରୀ ରାଉତ ଦିଲ୍ଲୀର "ନୃତ୍ୟ ନିକେତନରେ ଯୋଗ ଦେଇ ଦୁଇ ବର୍ଷ ଶିକ୍ଷକତା କଲା ପରେ ୧୯୭୦ ମସିହା ସେପ୍‌ଟେମ୍ବର ମାସରେ "ଭାରତୀୟ କଳା କେନ୍ଦ୍ରରେ" ନୃତ୍ୟ ଶିକ୍ଷକ ରୂପେ ଯୋଗ ଦେଇ ଅଦ୍ୟାବଧି ତହିଁରେ ଅଧ୍ୟାପନାରତ ଅଛନ୍ତି । ଦିଲ୍ଲୀଠାରେ ଶ୍ରୀ ନୀଳାଚଳ ସେବା ସଂଘ ଦ୍ୱାରା ସ୍ଥାପିତ ଏବଂ ପରିଚାଳିତ ଏକମାତ୍ର ନୃତ୍ୟାନୁଷ୍ଠାନର ସେ ମଧ୍ୟ ଅଧ୍ୟକ୍ଷ ।

ନୃତ୍ୟକ୍ଷେତ୍ରରେ ନିଜର ଅସାମାନ୍ୟ କୃତି ଏବଂ ଅବଦାନ ନିମନ୍ତେ ଶ୍ରୀ ରାଉତ ବିଭିନ୍ନ କ୍ଷେତ୍ରରେ ବହୁବାର ପ୍ରଶଂସିତ, ପୁରସ୍କୃତ ଏବଂ ଅଭିନନ୍ଦିତ ହୋଇଛନ୍ତି । ତନ୍ମଧ୍ୟରେ 'ସେଣ୍ଟର୍ ଫର୍ ଇଣ୍ଡିଆନ କ୍ଲାସିକାଲ ଡ୍ୟାନ୍‌ସେସ୍' ତରଫରୁ 'ନୃତ୍ୟ ଶିରୋମଣି' ଉପାଧି ପ୍ରଧାନ । ଏତଦ୍‌ବ୍ୟତୀତ ୧୯୮୫ ମସିହାରେ 'କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର, ୧୯୮୪ ମସିହାରେ ଦିଲ୍ଲୀର 'ସାହିତ୍ୟ କଳା ପରିଷଦ' ପୁରସ୍କାର ତଥା ୧୯୬୮ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଉଲ୍ଲେଖଯୋଗ୍ୟ ।

# ଶ୍ରୀ ପ୍ରାଣବନ୍ଧୁ କର
## ତିମପଡ଼ା, କଟକ

### ଜନ୍ମ—୧୯୧୪, ଡିସେମ୍ବର ୧

ଓଡ଼ିଶାର ନାଟ୍ୟରଚନା କ୍ଷେତ୍ରରେ ଅନ୍ୟତମ କୃତୀ ସନ୍ତାନ ଶ୍ରୀ ପ୍ରାଣବନ୍ଧୁ କର କଟକ ଜିଲ୍ଲା ଅନ୍ତର୍ଗତ ତିମପଡ଼ାଠାରେ ୧୯୧୪ ମସିହା ଡିସେମ୍ବର ମାସ ପହିଲା ଦିନ ଜନ୍ମଗ୍ରହଣ କରିଥିଲେ । ୧୯୦୧ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ସ୍ନାତକ ଏବଂ ୧୯୪୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ହାସଲ କରି ୧୯୪୯ ମସିହା ପର୍ଯ୍ୟନ୍ତ ଆଠବର୍ଷର ଶିକ୍ଷକତାପରେ ବିଦ୍ୟାଳୟ ପରିଦର୍ଶକ ରୂପେ ଏକ ବର୍ଷ କାର୍ଯ୍ୟ କରିଥିଲେ । ପରେ ସାମନ୍ତ ଚନ୍ଦ୍ରଶେଖର କଲେଜ ପୁରୀ ଏବଂ ରେଭେନ୍‌ସା କଲେଜ, କଟକ ଠାରେ ଅଧ୍ୟାପକ ରୂପେ ପାଞ୍ଚବର୍ଷ କାର୍ଯ୍ୟ କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀ କର ବିଦ୍ୟାଳୟ ଉପ ନିର୍ଦ୍ଦେଶକ, ଅଧ୍ୟାପକ ପ୍ରଧାନାଥ ଟ୍ରେନିଂ କଲେଜ ଏବଂ ପରେ ପରେ ରାଜ୍ୟ ଶିକ୍ଷା ସଂସ୍ଥାର ଉପାଧ୍ୟକ୍ଷ ଏବଂ ଶେଷ ଆଡ଼କୁ ରେଭେନ୍‌ସା କଲେଜ ଶିକ୍ଷା ବିଭାଗର ମୁଖ୍ୟ ରୂପେ କାର୍ଯ୍ୟ କରିଥିଲେ ।

ଜୀବନର ପ୍ରାରମ୍ଭରୁ ହିଁ ନାଟକ, ଏକାଙ୍କିକା ଇତ୍ୟାଦି ଲେଖିବାରେ ତାଙ୍କର ଦକ୍ଷତା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏହି ଅତ୍ୟନ୍ତ ଉଚ୍ଚଶିକ୍ଷିତ ନାଟ୍ୟକାର ଦେଶ ମଧ୍ୟରେ ଉଚ୍ଚଶିକ୍ଷା ସମାପ୍ତି ପରେ ଉଚ୍ଚତର ଶିକ୍ଷା ନିମନ୍ତେ ୧୯୬୦-୬୧ ମସିହାରେ ଆମେରିକା ଏବଂ ଇଂଲଣ୍ଡ ଯାଇଥିଲେ ।

ଏହି ନାଟ୍ୟକାରଙ୍କ ଲିଖିତ ବହୁ ଏକାଙ୍କିକା ଏବଂ ନାଟକ ଓଡ଼ିଶାର ବିଦ୍ୟାଳୟ ସ୍ତରରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଶିକ୍ଷା ପୁସ୍ତକ ରୂପେ ଭିନ୍ନ ଭିନ୍ନ ସମୟରେ ଗୃହୀତ ହୋଇଥିଲା । ଏହି ସବୁ ପୁସ୍ତକ ମାନଙ୍କ ମଧ୍ୟରେ ନିମ୍ନପ୍ରଦତ୍ତ ପୁସ୍ତକମାନଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ—

**ଏକାଙ୍କିକା ସଞ୍ଚୟନ**—( ପ୍ରଥମଖଣ୍ଡ ଓ ଦ୍ୱିତୀୟ ଖଣ୍ଡ ) ପ୍ରଥମେ ଉତ୍କଳ ବିଶ୍ୱ-ବିଦ୍ୟାଳୟର ସ୍ନାତକ ଶ୍ରେଣୀ ନିମନ୍ତେ ପାଠ୍ୟପୁସ୍ତକ ରୂପେ ଗୃହୀତ ଏବଂ ପରେ ସି.ଟି. ଟ୍ରେନିଂ କଲେଜରେ ପାଠ୍ୟପୁସ୍ତକ ରୂପେ ଗୃହୀତ ।

**ମାଟିର ମଣିଷ** ( ନାଟକ )—ପଦ୍ମଶ୍ରୀ କାଳନ୍ଦୀ ପାଣିଗ୍ରାହୀଙ୍କ ଲିଖିତ ମୂଳ ଉପନ୍ୟାସର ସଫଳ ନାଟ୍ୟରୂପ ପ୍ରଦାନ କରିଥିଲେ ଶ୍ରୀଯୁକ୍ତ କର । ତାହା ୧୯୫୫ ମସିହାରେ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ (ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଆୟୋଜିତ ) ଶ୍ରେଷ୍ଠ ବିବେଚିତ ହୋଇଥିଲା । ଏହି ନାଟକ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକ ଶ୍ରେଣୀ ନିମନ୍ତେ ପାଠ୍ୟପୁସ୍ତକ ରୂପେ ମନୋନୀତ ହୋଇଥିଲା ।

**ଶ୍ୱେତପଦ୍ମ**—ଏହି ଦୀର୍ଘ ଏକାଙ୍କିକା ୧୯୫୮ ମସିହାରେ କଲିକତାଠାରେ ସର୍ବଭାରତୀୟ ଏକାଙ୍କିକା ପ୍ରତିଯୋଗିତାରେ ଶ୍ରେଷ୍ଠ ଲେଖା ଏବଂ ପରିବେଷଣ ପୁରସ୍କାର ଲାଭ କରିଥିଲା । ଏହି ଏକାଙ୍କିକା ଜାତୀୟ ପୁସ୍ତକ ପ୍ରତିଷ୍ଠାନ ଦ୍ୱାରା ଭାରତର ସବୁ ଭାଷାରେ ଅନୂଦିତ ।

**ଅଶାନ୍ତ**—ଏହି ପୂର୍ଣ୍ଣ ନାଟକ ନୂଆଦିଲ୍ଲୀସ୍ଥିତ କେନ୍ଦ୍ରୀୟ ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ୧୯୬୮ ମସିହାରେ ଶ୍ରେଷ୍ଠ ଲେଖା ଭାବରେ ପୁରସ୍କୃତ ହୋଇଥିଲା ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସ୍ନାତକ ଶ୍ରେଣୀର ପାଠ୍ୟ ପୁସ୍ତକ ରୂପେ ମଧ୍ୟ ଗୃହୀତ ହୋଇଥିଲା । ଅଧିକନ୍ତୁ ଏହି ନାଟକ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶ୍ରେଣୀର ପାଠ୍ୟପୁସ୍ତକ ରୂପେ ଗୃହୀତ ହୋଇଥିବା ସହିତ କଟକ ଆକାଶବାଣୀ ଦ୍ୱାରା ପ୍ରସାରିତ ଏବଂ କେନ୍ଦ୍ରୀୟ ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ଭାରତର ଅନ୍ୟାନ୍ୟ ଭାଷାରେ ଅନୂଦିତ ।

**ଚୈତନ୍ୟ ସଂହାର**—ଆକାଶବାଣୀ କଟକଙ୍କ ଦ୍ୱାରା ପ୍ରସାରିତ ଏବଂ ହିନ୍ଦୀ ଭାଷାରେ ଅନୂଦିତ ।

ଏକାଧାରରେ ଅତ୍ୟନ୍ତ ଉଚ୍ଚଶିକ୍ଷିତ, ଶିକ୍ଷାବିତ୍ ଏବଂ ନାଟ୍ୟକାର ଶ୍ରୀଯୁକ୍ତ କରଙ୍କର ଲିଖିତ ଆହୁରି ଅନେକ ଉପାଦେୟ ଏକାଙ୍କିକା, ନାଟକ ଏବଂ କ୍ଷୁଦ୍ର ଗଳ୍ପ ଏବଂ ଅନ୍ୟ ଉପନ୍ୟାସ ସବୁର ନାଟ୍ୟରୂପ ରହିଅଛି । ଏସବୁ ଓଡ଼ିଆ ସାହିତ୍ୟର ଅମୂଲ୍ୟ ରତ୍ନ । ବ୍ୟାସକବି ଫକୀରମୋହନଙ୍କ ଉପନ୍ୟାସ 'ଛଅମାଣ ଆଠଗୁଣ୍ଠ' ଓ 'ପ୍ରାୟଶ୍ଚିତ୍ତ' ର ନାଟ୍ୟରୂପ ସହିତ ନାଟକ ଚନ୍ଦ୍ରିକା, ଟାଉଟର, ତଟିନୀର ଦୁଇଧାର, ଅଦେଖାହାତ ଇତ୍ୟାଦି ଅନ୍ୟାନ୍ୟ ବହୁ ଉପନ୍ୟାସର ନାଟ୍ୟରୂପ ତାଙ୍କର ଅତ୍ୟନ୍ତ ସାର୍ଥକ ସୃଷ୍ଟି ।

●

ଶ୍ରୀ ଭଗବାନ ସାହୁ
ବଡକୂଣସ୍ଥଳୀ, ଗଞ୍ଜାମ

ଜନ୍ମ—୧୯୧୪, ସେପ୍ଟେମ୍ବର ୨୧



ଓଡ଼ିଶାର ଅନେକ ଲୋକନୃତ୍ୟ ମଧ୍ୟରେ ରଣପା ନୃତ୍ୟ ଅନ୍ୟତମ । ଏହି ନୃତ୍ୟ-ଶୈଳୀର ଏକାଧାରରେ ପ୍ରଧାନ ଗବେଷକ, ଗୁରୁ ଏବଂ ପରିପୋଷକ ଶ୍ରୀ ଭଗବାନ ସାହୁ ୧୯୧୪ ମସିହା ସେପ୍ଟେମ୍ବର ମାସ ୨୧ ତାରିଖରେ ଗଞ୍ଜାମ ଜିଲ୍ଲାର ବଡ଼କୁଣସ୍ଥଳୀ ମୌଜାର ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲ ୬ ବିନାୟକ ସାହୁ ।

ବାଲ୍ୟକାଳରୁ ସାଧାରଣ ଶିକ୍ଷାପ୍ରତି ଆଗ୍ରହ ହେତୁ ସେ ଛତ୍ରପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିବାର ସୁଯୋଗ ପାଇଥିଲେ । ପରବର୍ତ୍ତୀ ସମୟରେ ସେ ଗୀତ, ବାଦ୍ୟ, ସଙ୍କୀର୍ତ୍ତନ ଆଡ଼କୁ ଆକୃଷ୍ଟ ମଧ୍ୟ ହୋଇଥିଲେ ଏବଂ ନାଟ୍ୟ ପରିବେଷଣରେ ବିଭିନ୍ନ ଚରିତ୍ରରେ ଅଭିନୟ ମଧ୍ୟ କରୁଥିଲେ । ତତ୍ପରେ ଆଧ୍ୟାତ୍ମିକ ଦିଗକୁ ମନ ଟାଣିବାରେ ସେ ଦେଶର ବହୁ ଧର୍ମସ୍ଥାନମାନ ଭ୍ରମଣ କରି ସାଧୁ ସଙ୍ଗରେ ଜୀବନ କଟାଇଥିଲେ ।

ଏହାପରେ ସେ ନିଜ ଜନ୍ମଭୂମିକୁ ଫେରି ଶାସ୍ତ୍ରୀୟ ନୃତ୍ୟ ପରିବେଷଣ କରିବା ସଙ୍ଗେ ସଙ୍ଗେ ଯୁବକମାନଙ୍କୁ ନେଇ "ନରେନ୍ଦ୍ରପୁର କଳାବିକାଶ କେନ୍ଦ୍ର" ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କଲେ । ଏହି ସମୟରେ ସେ ବିଦେଶୀ ଶାସନାଧୀନ ହୋଇ, ଲୁପ୍ତ-ପ୍ରାୟ ଅନେକ ଶାସ୍ତ୍ରୀୟ ଲୋକନୃତ୍ୟର ପୁନରୁଦ୍ଧାର କରିବାରେ ବ୍ରତୀ ହେଲେ । ସେ ସର୍ବ ପ୍ରଥମେ ପୌରୁଷ ପ୍ରଦୀପ୍ତ ନୃତ୍ୟ ଶୈଳୀ "ଏକଖାର ନୃତ୍ୟ" ଏବଂ "ପାଇକନାଚ" ଇତ୍ୟାଦିର ପୁନଃପ୍ରତିଷ୍ଠା ନିମନ୍ତେ ଚେଷ୍ଟିତ ହେଲେ । ଏହି ପାଇକ ନୃତ୍ୟ ପ୍ରଥମେ ୧୯୫୮ରେ ଦିଲ୍ଲୀଠାରେ ପ୍ରଦର୍ଶିତ ହୋଇ ସାଧାରଣତନ୍ତ୍ର ଦିବସରେ ରାଷ୍ଟ୍ରପତିଙ୍କର ସ୍ୱତନ୍ତ୍ର ପୁରସ୍କାର ଲାଭ କରିଥିଲା । ପରେ ୧୯୬୧ ମସିହାରେ ପୁନଶ୍ଚ ସାଧାରଣତନ୍ତ୍ର ଦିବସରେ

ଦିଲ୍ଲୀଠାରେ 'ଦଣ୍ଡ ଚଢ଼େୟା' ନୃତ୍ୟ ପ୍ରଦର୍ଶନ କରି ସମସ୍ତଙ୍କୁ ଚମତ୍କୃତ କରି ପାରିଥିଲେ । ଏହା ବ୍ୟତୀତ ଶ୍ରୀ ସାହୁ ଅନ୍ୟାନ୍ୟ ଲୋକ ନୃତ୍ୟ ଘୁମୁରା, ଲରିଡ, ଫଟୋବ୍ୟ ଇତ୍ୟାଦିର ଗବେଷଣାରେ ମଧ୍ୟ ଲିପ୍ତ ରହିଥିଲେ । ଏହି ସମସ୍ତ ମଧ୍ୟରେ ସେ ମଧ୍ୟ ଗୁରୁ ପଙ୍କଜ ଚରଣ ଦାସଙ୍କ ନିକଟରୁ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ ଶିକ୍ଷା କରିଥିଲେ । ଦକ୍ଷିଣ ଓଡ଼ିଶାର ରଣପା ପିନ୍ଧି ଚାଲୁଥିବା ଗୋପାଳମାନଙ୍କୁ ଦେଖି ଏହାକୁ ସେ ନୂତନ ଶୈଳୀ ଦେଇ ସୃଷ୍ଟି କଲେ । ସାମର୍ଥ୍ୟ, ଦୁଃସାହସ ଏବଂ କୌଶଳର ପ୍ରତୀକ ଏହି ପ୍ରସିଦ୍ଧ ରଣପା ଲୋକନୃତ୍ୟ ଶ୍ରୀ ସାହୁଙ୍କର ସୃଜନୀ ପ୍ରତିଭାର ଚରମ ଅଭିବ୍ୟକ୍ତି । ଏହି ଲୋକନୃତ୍ୟ ତାଙ୍କୁ ବହୁ ପ୍ରଶଂସାର ଅଧିକାରୀ କରିଅଛି ।

ଏକଦା ମଞ୍ଚର ପାଇକେଲରେ ସର୍କସ ଦେଖାଉଥିବା ଏହି ଅସାମାନ୍ୟ ପ୍ରତିଭା, ନିଜର କୃତିତ୍ୱ ନିମନ୍ତେ ଜୀବନରେ ବହୁବାର ସମ୍ମାନିତ ହୋଇଅଛନ୍ତି । ପ୍ରଥମେ ଲୋକ-ନୃତ୍ୟ ଗବେଷକ ଭାବରେ ୧୯୬୫ ମସିହାରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସମ୍ମାନିତ ହେବାପରେ ସେ ରାଜ୍ୟସ୍ତରରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା କୃତୀ କଳାକାର ହିସାବରେ ପୁରସ୍କୃତ ଏବଂ ସମ୍ମାନିତ ହୋଇଥିଲେ । ୧୯୭୮ ସେପ୍ଟେ-ମ୍ବର ମାସରେ ଶ୍ରୀ ସାହୁ ବିଦେଶ ଭ୍ରମଣ କରି ନିଜସ୍ୱ କଳାର ଚମତ୍କାରିତା ପ୍ରଦର୍ଶନ କରିଥିଲେ । ଏହି ଦେଶମାନଙ୍କ ମଧ୍ୟରେ ଭୁଟାନ, ସିରିଆ, ଆବୁଧାବି ଓ ୟେମେନ୍ ଇତ୍ୟାଦିର ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଶା ରାଜ୍ୟର ଲୋକନୃତ୍ୟକୁ କଳାତ୍ମକ ରୂପରେ ସଜାଇ ପାଇଥିବା ଏହି ଜନପ୍ରିୟ କଳାକାର ଜଣେ ବିରଳ ବ୍ୟକ୍ତିତ୍ୱ । ସଦା ହାସ୍ୟମୟ ମୁହଁ ଓ ଉଜ୍ଜ୍ୱଳ ଚକ୍ଷୁ ତାଙ୍କ ବ୍ୟକ୍ତିତ୍ୱର ଏକ ବିଶେଷ ଆକର୍ଷଣ । ଏକାଧାରରେ ଶାସ୍ତ୍ରୀୟ ନୃତ୍ୟ ଶିଳ୍ପୀ, ଗାୟକ, ବାଦକ, ଏବଂ ଲୋକନୃତ୍ୟର ଗବେଷକ ଭାବରେ ସେ ରାଜ୍ୟବାସୀଙ୍କ ମନ ମଧ୍ୟରେ ସର୍ବଦା ବଞ୍ଚିରହିବେ ।

●



## ନିମାଇଁ ଚରଣ ହରିଚନ୍ଦନ

**କେନ୍ଦ୍ରାପଡ଼ା, କଟକ**

**ଜନ୍ମ – ୧୯୦୧, ଜୁଲାଇ ୯**

ଭଜନ, ଚମ୍ପୂ, ଚଉପଦୀ, ଛାନ୍ଦ ଇତ୍ୟାଦି ସେଉଁ ଯୋଗଜନ୍ମା କଳାକାରଙ୍କ କଣ୍ଠରୁ ସ୍ଫୁରିତ ହୋଇ ଓଡ଼ିଶାର ଜନମାନସରେ ଆନନ୍ଦର ଲହରୀ ଖେଳାଇ ଦେଉଥିଲା ସେହି ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, କଟକ ଜିଲ୍ଲାର କେନ୍ଦ୍ରାପଡ଼ାଠାରେ ପ୍ରସିଦ୍ଧ ନରେନ୍ଦ୍ର ଜମିଦାର ବଂଶରେ ୧୯୦୧ ମସିହା ଜୁଲାଇ ମାସ ୯ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ବୃନ୍ଦାବନ ଚନ୍ଦ୍ର ହରିଚନ୍ଦନ । ତାଙ୍କର ଜନ୍ମ ସମୟକୁ ପରିବାରର ଶୋଚନୀୟ ଆର୍ଥିକ ଦୁରବସ୍ଥା କାରଣରୁ ତାଙ୍କର ଶିକ୍ଷା ମଧ୍ୟ ଇଂରାଜୀ ସ୍ତରରୁ ହିଁ ଶେଷ ହୋଇଯାଇଥିଲା । ତାଙ୍କର ପିତୃବ୍ୟ ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନ ତତ୍କାଳୀନ ବିଶିଷ୍ଟ ସଙ୍ଗୀତଜ୍ଞ ଥିଲେ ଏବଂ ତାଙ୍କରି ପ୍ରେରଣାରେ କିଶୋର ନିମାଇଁ ମାତ୍ର ୧୪ ବର୍ଷ ବୟସରେ ଓଡ଼ିଶୀ ହିନ୍ଦୁସ୍ଥାନୀ ଓସ୍ତାଦମାନଙ୍କ ନିକଟରୁ ସଙ୍ଗୀତ ଶିକ୍ଷା କଲେ । ତାଙ୍କ କଣ୍ଠ ସ୍ୱରର ଅପୂର୍ବ ଲାଳିତ୍ୟ ତାଙ୍କର ବିଶେଷତ୍ୱ । ଆଠଗଡ଼ ରାଜ୍ୟରେ ବିବାହ କରିବା ପରେ ୧୯୨୪ରେ ସେ ସେହି ରାଜ୍ୟର ରାଜଗାୟକଭାବେ ନିଯୁକ୍ତ ହେଲେ । ଏହି ସଙ୍ଗୀତପ୍ରେମୀ ରାଜା ତାଙ୍କୁ ସେହି ସମୟରେ 'ରାଜ ସଙ୍ଗୀତଜ୍ଞ'; ଉପାଧିରେ ପ୍ରଥମେ ଭୂଷିତ କରିଥିଲେ ।

ତାଙ୍କର କଣ୍ଠରେ ୧୯୩୩ ମସିହାରେ ପ୍ରଥମ ଓଡ଼ିଆ ଗୀତର ରେକର୍ଡ ପ୍ରସ୍ତୁତ କଲେ 'ହିଜ ମାଷ୍ଟର୍ସ ଭଏସ' ରେକର୍ଡ କମ୍ପାନୀ । କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର ବିତଳକୁ ଆଲିଙ୍ଗନ... ତାଙ୍କୁ ଓଡ଼ିଶାର ଦୂରପଲ୍ଲୀରେ ପହଞ୍ଚାଇ ଦେଲା । ଏହି ରେକର୍ଡର ଆଶାତୀତ ସଫଳତା ହେତୁ ପରେ ପରେ ତାଙ୍କର ଆହୁରି ଅନେକ ଲୁପ୍ତପ୍ରାୟ ଓଡ଼ିଶୀ ସଙ୍ଗୀତର ରେକର୍ଡ ପ୍ରସ୍ତୁତ ହେଲା । ଏହି ସବୁ ରେକର୍ଡ ଜଣାଇଦେଲା ସେ ଓଡ଼ିଆ ଜନ-

ଚେତନାର ଏକ ଅଂଶ ହୋଇଗଲେ ସବୁଦିନ ପାଇଁ । କମୀମାନେ ତାଙ୍କୁ ବାଣୀକଣ୍ଠ ଉପାଧିରେ ଭୂଷିତ କଲେ ।

ଆକାଶବାଣୀ କଲିକତା କେନ୍ଦ୍ରରେ ଓଡ଼ିଆ କାର୍ଯ୍ୟକ୍ରମ ଆରମ୍ଭ ହେବାପରେ ସେ ପ୍ରଥମ ଓଡ଼ିଆ ଗାୟକ ଭାବରେ ତହିଁରେ ଯୋଗ ଦେଲେ ୧୯୩୪ ମସିହାରେ । ଆକାଶବାଣୀ କଟକ ଉଦ୍‌ଘାଟିତ ହେଲା ୧୯୪୭ ମସିହା ଡିସେମ୍ବର ମାସରେ ଏବଂ ଏଥିରେ ସେ ହରିଚରଣ ଗାୟକ ଭାବରେ ଯୋଗଦାନ କଲେ । 'ବଦନ୍ତି ଚନ୍ଦ୍ରାମଣି'ରୁ ସେ ପ୍ରଥମ କରି ଶ୍ରୀରାଧା ବାତୁଲୀ ପ୍ରେମ ରସାଭୂଳା ଗାନ କରି ଆକାଶବାଣୀ କଟକ କେନ୍ଦ୍ରରେ ତାଙ୍କର କାର୍ଯ୍ୟ ଆରମ୍ଭ କରିଥିଲେ ।

ପାଞ୍ଚ ଋଚିତ ଏହି କଳାକାର ୧୯୩୭ ମସିହାରେ ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ ଗ୍ରନ୍ଥ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ପୁରୀର ଗଜପତିଙ୍କଠାରୁ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । 'ଉତ୍କଳ ସଙ୍ଗୀତ ସମାଜ', 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଏବଂ ଜାମସେଦ୍‌ପୁରର 'ଉତ୍କଳ ବାନ୍ଧବ ସମିତି' ଇତ୍ୟାଦି ବହୁ ଅନୁଷ୍ଠାନରୁ ତାଙ୍କୁ ସମ୍ବର୍ଦ୍ଧନା ଏବଂ ମାନପତ୍ର ମିଳିଛି ।

୧୯୬୭ ମସିହାରେ ଭାରତ ସରକାରଙ୍କ ତରଫରୁ ତାଙ୍କୁ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କରାଯାଇଥିଲା । ୧୯୬୪ ମସିହାରେ କେନ୍ଦ୍ରୀୟ ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ଅଭିନନ୍ଦନ କରିଥିଲେ ।

ଶେଷ ଜୀବନରେ ହରିଚରଣ ୧୯୭୧ ମସିହାଠାରୁ ପୁରୀ ସହରରେ ଅବସ୍ଥାନ କରୁଥିଲେ । ଏହି ସମୟରେ ପ୍ରତ୍ୟହ ସେ ମନ୍ଦିରକୁ ଯାଇ ଶ୍ରୀ ବଡ଼ଠାକୁରଙ୍କ ଆଗରେ ଦଶୋ ଟିଭଜନ ଏବଂ ଜଣାଣ ଗାନ କରୁଥିଲେ । ୧୯୮୩ ମସିହା ଜୁଲାଇ ମାସ କୋଡ଼ିଏ ତାରିଖ ଦିନ ହରିଶୟନ ଏକାଦଶୀ ଦିନ ଚିରନିଦ୍ରାରେ ଶୟନ କରି ହରିଙ୍କ ସହ ଏକ ହୋଇଗଲେ ।

ତାଙ୍କ କୋକିଳ କଣ୍ଠରୁ ରସାଳ ସଙ୍ଗୀତର ମଧୁର ଝଙ୍କାର ୧୯୩୩ ମସିହାଠାରୁ ୧୯୮୩ ମସିହା ପର୍ଯ୍ୟନ୍ତ ଦୀର୍ଘ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ଓଡ଼ିଆ ପ୍ରାଣରେ ନବ ଜାଗରଣ ଓ ପୁଲକ ଆଣୁଥିଲା । ଏହି ଅନୁଭବ ସାଧକ ଶିଳ୍ପୀ, କଳାପିପାସୁ ଏବଂ ପରମ ଭକ୍ତ ଥିଲେ । ତାଙ୍କ ପରେ ତାଙ୍କ ଶୂନ୍ୟସ୍ଥାନ ଅବଶ୍ୟ ଅପୂରଣୀୟ । କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ତାଙ୍କର ସୁଲଳିତ କଣ୍ଠରୁ ମହାପ୍ରଭୁଙ୍କର ଭଜନ ରେକର୍ଡ ଦ୍ୱାରା ପରିବେଷଣ କରାଯାଉଥିବ, ସେତେଦିନ ସେ ଅମର ହୋଇ ଓଡ଼ିଶାର ପୁରପଲ୍ଲୀରେ ଜୀବିତ ହୋଇ ରହିଥିବେ । 'ଜୟ ଜଗନ୍ନାଥ' ।

●

## ୯ ମଞ୍ଚଶ୍ରୀ ରାଧାରାଣୀ ଦେବୀ
### ପୁରୀ



ସ୍ୱର୍ଗତା ରାଧାରାଣୀ ଦେବୀ ଓଡ଼ିଆ ରଙ୍ଗମଞ୍ଚ ଆନ୍ଦୋଳନର ପ୍ରଥମ ନାରୀ ଅଭିନେତ୍ରୀ ଭାବରେ ସୁପରିଚିତା । ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗ ଲାଗି ସେବକା ଭାବରେ ଶ୍ରୀକ୍ଷେତ୍ରର ୬ ପାଣ ଦେବଦାସୀଙ୍କ ପାଳିତା କନ୍ୟା ରୂପେ ତାଙ୍କ ଶିଳ୍ପୀ ଜୀବନ ଦିନେ ଉତ୍ସର୍ଗୀକୃତ ଥିଲା । ପ୍ରଥମ ଜୀବନରେ କଳା ଠାକୁରଙ୍କ ଧୂପଚନ୍ଦନ ମଧ୍ୟରେ ମାହାରୀ ରାଧାରାଣୀ ନିବେଦିତାର ରୂପାନୁରାଗରେ ଆତ୍ମସ୍ଥ ହୋଇଥିଲେ ମଧ୍ୟ ପଣ୍ଡିତର ତାଡ଼ନାରେ ଶ୍ରୀମନ୍ଦିର ମଧ୍ୟରୁ ଟାଣି ହୋଇ ଆସିଥିଲେ ରଙ୍ଗମଞ୍ଚ ମଧ୍ୟକୁ ।

ଓଡ଼ିଆ ରଙ୍ଗମଞ୍ଚ ଆନ୍ଦୋଳନର ପ୍ରଥମ ନାରୀ ଅଭିନେତ୍ରୀ ରୂପେ ରାଧାରାଣୀ ନୂତନ ଧାରାରେ ଗଢଣିଲା ହେଲେ । ତାଙ୍କର ବାଲ୍ୟ ସଙ୍ଗୀତ ଗୁରୁ ସ୍ୱର୍ଗତ ରାଧାରମଣ କବିରାଜଙ୍କ ପ୍ରଯୋଜିତ 'ସାକ୍ଷୀ ଗୋପିନାଥ' ନାଟକରେ ରାଧା ଭୂମିକାରେ ତାଙ୍କର ଅଭିନୟ ସମସ୍ତଙ୍କୁ ୧୯୩୫ ମସିହାରେ ମୁଗ୍ଧୀଭୂତ କଲା । ଆଗ୍ରା 'ଆର୍ଟ ଷ୍ଟାର ଥିଏଟର୍' ପ୍ରଯୋଜିତ ନାଟକ 'ସୁଦାମା'ରେ 'ରୁକ୍ମିଣି', ଶ୍ରୀ ଦୁର୍ଗାରେ 'କାମକଳା' ଭୂମିକାର ଅଭିନୟ ତାଙ୍କୁ ମଞ୍ଚ ଅଭିନେତ୍ରୀର ସ୍ୱୀକୃତି ପ୍ରଦାନ କଲା । ସ୍ୱର୍ଗତ ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସ ଦଳରେ 'ଯଶୋଦା' ଭୂମିକାରେ ତାଙ୍କର ପ୍ରାଣସ୍ପର୍ଶୀ ଅଭିନୟ ସମସ୍ତଙ୍କୁ ବାତ୍ସଲ୍ୟ ରସରେ ଆପ୍ଲୁତ କରି ପାରିଥିଲା । ୬ ଦେବ ଗୋସ୍ୱାମୀଙ୍କ ସହ କଲମ୍ବିଆ ରେକର୍ଡ଼ କମ୍ପାନୀ ପ୍ରସ୍ତୁତ ରେକର୍ଡରେ ଦ୍ୱୈତ ସଙ୍ଗୀତ 'ଆଗୋ ଗୋପ ନାଗରୀ, ଯେବେ ହୋଇବୁ ଯାଉ···' ଯେ ଶୁଣିଛି ସେଇ ହିଁ କେବଳ ତାଙ୍କ ସଙ୍ଗୀତମୟ ଜୀବନକୁ ସନ୍ଦର୍ଶନ କରିପାରିଛି ।

୧୯୩୭ଠାରୁ ଶିଳ୍ପୀ ରାଧାରାଣୀ ଅନ୍ନପୂର୍ଣ୍ଣା ଥିଏଟର ଏ ଗ୍ରୁପ୍‌କୁ ନିଜର କର୍ମକ୍ଷେତ୍ର ରୂପେ ସୁଦୀର୍ଘ ତିରିଶ ବର୍ଷ ଧରି ଆବୋରି ନେଇଥିଲେ । ଓଡ଼ିଶାରେ ପେସାଦାର ନାଟ୍ୟ କଳାର ପରମ୍ପରାକୁ ବଜାୟ ରଖିବାରେ ତାଙ୍କର ତ୍ୟାଗ ଓ ଅବଦାନ ତାଙ୍କୁ ବହୁ ସମ୍ମାନର

ଅଧିକାରିଣୀ କରିଛି । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ପ୍ରଯୋଜିତ ଶତାଧିକ ନାଟକ ମଧ୍ୟରୁ ଜୀବନ୍ତ, ଚକାଖିଆ, ବେନାମୀ, କୋଣାର୍କରେ ସର, ମାନଭଞ୍ଜନରେ ଲଳିତା, ଆଲିବାବାରେ ମର୍ଜିନା, ଧର୍ମପତ୍ନୀ, ସୁଭଦ୍ରାରେ ଏବଂ ରାଜାହରିଶ୍ଚନ୍ଦ୍ରରେ ଶୈବ୍ୟା ଭୂମିକାରେ ପ୍ରାଣସ୍ପର୍ଶୀ ଅଭିନୟ ନିମନ୍ତେ ସେ ଆଜି ବି କାଳଜୟୀ କଳାକାର ଭାବରେ ଅଗଣିତ ଦର୍ଶକମାନଙ୍କ ମନକୁ ଭାବସ୍ନିଗ୍ଧ କରେ ।

ତାଙ୍କର ଅଭିନୀତ ଓଡ଼ିଆ ଚଳଚ୍ଚିତ୍ର 'ସୀତା ବିବାହ' ଏବଂ ଶେଷ ଚଳଚ୍ଚିତ୍ର 'ଚିଲିକା ତୀରେ' ।

ଉତ୍କଳର 'ମଞ୍ଚ ବନ୍ଦନା' ମଞ୍ଚରୁ ଓଡ଼ିଆ ମଞ୍ଚ ଆନ୍ଦୋଳନର ଅନ୍ୟତମା ଅଭିନେତ୍ରୀ ରାଧାରାଣୀଙ୍କୁ 'ମଞ୍ଚଶ୍ରୀ' ଉପାଧିରେ ସମ୍ମାନିତ କରିଥିଲେ । ୧୯୭୯ ମାର୍ଚ୍ଚ ମାସ ୨୯ ତାରିଖରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ତାଙ୍କୁ ରାଜ୍ୟ ପ୍ରଶସ୍ତି ସମ୍ମାନ ପ୍ରଦର୍ଶନ କରାଯାଇଛି । ଏଥିପୂର୍ବରୁ ୧୯୬୭ ମସିହା ଅକ୍ଟୋବର ୮ ତାରିଖରେ କଳାବିକାଶ କେନ୍ଦ୍ର ରଜତ ଜୟନ୍ତୀ ତଥା ଓଡ଼ିଆ ନାଟକ ଶତାବ୍ଦୀ ଉତ୍ସବରେ ତାଙ୍କୁ ବିଶେଷ ଭାବରେ ସମ୍ମାନିତ ଓ ଅଭିନନ୍ଦିତ କରି ଏ ଜାତି କୃତାର୍ଥ ଲଭିଛି ।

ଯେଉଁ ଶିଳ୍ପୀର ଖିଆଲ ସର୍ବସ୍ୱ ଜୀବନ ଦିନେ ରାଜକୀୟ ଆଡ଼ମ୍ବରର ବର୍ଣ୍ଣାଢ୍ୟ ଆଟୋପରେ କୁସୁମାକୀର୍ଣ୍ଣ ଥିଲା, ପ୍ରାଚୁର୍ଯ୍ୟର କଷଟି ପଥରରେ ପରଖି ବସିଲେ ସେ ଥିଲେ ଯଥାର୍ଥରେ ମଞ୍ଚରାଣୀ 'ରାଧାରାଣୀ'—ଓଡ଼ିଆ ନାଟ୍ୟପ୍ରେମୀ ଜନତାର ହୃଦୟର ରାଣୀ ।

# ଶ୍ରୀ ମଦନ ମୋହନ ଲେଙ୍କା

## ବାରିପଦା, ମୟୂରଭଞ୍ଜ

ଜନ୍ମ—୧୯୧୪ ଜୁନ୍ ୧୦



ଯେଉଁମାନଙ୍କର ନୃତ୍ୟ ଯଶ୍‌ରୁ ମୟୂରଭଞ୍ଜର କୋଣ ଅନୁକୋଣ ମୁଖରିତ ହୋଇଛି, ଯେଉଁମାନେ ଛଉନୃତ୍ୟରେ ମଦମତ୍ତ ହୋଇ ତାର ଝଙ୍କାରରେ ସମସ୍ତଙ୍କର ମନକୁ କିଣିନେଇ ପାରିଛନ୍ତି ସେଇ ଛଉନୃତ୍ୟ ଗୁରୁମାନଙ୍କ ମଧ୍ୟରେ ମୟୂରଭଞ୍ଜ ଛଉଶୈଳୀର ଅନ୍ୟତମ ଶ୍ରେଷ୍ଠ ଗୁରୁ ହେଲେ ଶ୍ରୀ ମଦନ ମୋହନ ଲେଙ୍କା । ଜୁନ୍ ୧୦ ତାରିଖ ୧୯୧୪ରେ ତାଙ୍କର ଜନ୍ମ ବାରିପଦାର ବାଗୁ ସାହିରେ । ସ୍ୱର୍ଗତ ରାଧାମୋହନ ଲେଙ୍କା ଏବଂ ଶକୁନ୍ତଳା ଦେବୀଙ୍କର ସେ ଥିଲେ ଏକମାତ୍ର ପୁତ୍ର । ମାତ୍ର ପନ୍ଦରବର୍ଷ ବୟସରୁ ଛଉନୃତ୍ୟର ରସାଳ ବିଭବ ମଧ୍ୟରେ ନିଜକୁ ହଜାଇ ଦେଇ ସାଧାରଣ ଶିକ୍ଷାକୁ ପାଣେଠି ଦେଲେ କିଶୋର ମଦନମୋହନ । ତତ୍କାଳୀନ ଗୁରୁ ° ରଘୁନାଥ ସିଂହବାବୁ, ° ଚନ୍ଦ୍ରମୋହନ ତରାଇ, ° ବୈଷ୍ଣବଚରଣ ବାବୁ ଏବଂ ° ରାମଚନ୍ଦ୍ର ଦାଶ ( ପୂର୍ବତନ ପୋଲିସ୍ ଆଇ. ଜି. ଓଡ଼ିଶା ), ଏମାନଙ୍କ ନିକଟରୁ ସେ ମୟୂରଭଞ୍ଜ ଶୈଳୀରେ ଛଉନୃତ୍ୟ ଶିକ୍ଷାକଲେ ।

ମଞ୍ଚ ଉପରେ ତାଙ୍କର ପ୍ରଥମ ପ୍ରଦର୍ଶନ ହେଲା ୧୯୨୯ ମସିହାରେ ଛଉନୃତ୍ୟ ମାଧ୍ୟମରେ । ପରେ ପରେ ଶ୍ରୀ ଲେଙ୍କା 'କଥାକଳି' ନୃତ୍ୟର ସୂକ୍ଷ୍ମ ଶୈଳୀସବୁକୁ ଆୟତ୍ତ କରିଥିଲେ ° ଗୁରୁ କେଶବ ଦାସଙ୍କ ନିକଟରୁ । ଦୀର୍ଘ ଦୁଇ ଘଣ୍ଟା ଧରି ଶ୍ରୀ ଲେଙ୍କା ନିଜର କଳା ପ୍ରଦର୍ଶନ କରି ସମସ୍ତ ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖୁଥିଲେ ।

ସଫଳତାର ସ୍ୱାଦ ପ୍ରଥମେ ଶ୍ରୀ ଲେଙ୍କା ଆସ୍ୱାଦନ କଲେ ୧୯୫୮ ମସିହାରେ, ତାଳଚେର ରାଜାସାହେବଙ୍କ ନିକଟରୁ ସ୍ୱର୍ଣ୍ଣପଦକ ଲାଭକରି ତାଙ୍କର ନୃତ୍ୟ 'ଗରୁଡ଼ ବାହନ' ନିମନ୍ତେ । ତତ୍ପରେ ୧୯୬୫ ମସିହାରେ ସେ ରୌପ୍ୟ ପଦକ ଏବଂ ୧୯୬୭ ମସିହାରେ

ମୁନାଗାର ସ୍ୱର୍ଣ୍ଣପଦକ ଲାଭ କଲେ। ୧୯୩୭ ମସିହାରେ 'ସେପିକ ସେପିକା' ନୃତ୍ୟ ନିମନ୍ତେ କଣିକା ରାଜାଙ୍କଠାରୁ ସ୍ୱର୍ଣ୍ଣପଦକ, ୧୯୩୯ ରେ କେନ୍ଦ୍ରାପଡ଼ା ଜମିଦାରଙ୍କ ନିକଟରୁ 'ନବର ନୋକା' ନିମନ୍ତେ ସ୍ୱର୍ଣ୍ଣ ପଦକ ଏବଂ ସର୍ବଶେଷରେ ତାଙ୍କର ଶ୍ରେଷ୍ଠକୃତ 'କୈଳାସଲୀଳା' ନିମନ୍ତେ ମୟୂରଭଞ୍ଜ ମହାରାଜାଙ୍କ ନିକଟରୁ ପୁରସ୍କାର ଏବଂ ନିଷ୍କର ଜାଗିର ଲାଭକଲେ।

୧୯୪୯ ମସିହାରେ ମୟୂରଭଞ୍ଜ ଓଡ଼ିଶା ସହ ମିଶିବା ପରେ ପୃଷ୍ଠପୋଷକତା ଅଭାବରୁ ଛଉନୃତ୍ୟ ବିଲୁପ୍ତ ହେବା ଅବସ୍ଥାକୁ ଆସିବା ସମୟରେ ତାକୁ ନୂତନ ରୂପରେଖ ଦେଇ ସଜାଡ଼ି ଦର୍ଶକମାନଙ୍କ ଆଗକୁ ଆଣିବାକୁ ମୟୂରଭଞ୍ଜ ମହାରାଜା ଶ୍ରୀ ଲେଙ୍କାଙ୍କ ଉପରେ ସମସ୍ତ ଦାୟିତ୍ୱ ନ୍ୟସ୍ତ କଲେ।

ଘୋର ଆର୍ଥିକ ଅନାଟନରୁ ଛଉନୃତ୍ୟକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଶ୍ରୀ ରମେଶ ଚନ୍ଦ୍ର ମହାପାତ୍ର ଅଧ୍ୟକ୍ଷତାରେ ଗଠିତ ଛଉନୃତ୍ୟ ଦଳ 'ମୟୂରଭଞ୍ଜ ଛଉନୃତ୍ୟ ପ୍ରତିଷ୍ଠାନ' ନାମରେ ବର୍ତ୍ତିତ ହେଲା। ଏଥିରେ ଶ୍ରୀ ଲେଙ୍କା ଜଣେ ସର୍ବମାନ୍ୟ ସକ୍ରିୟ ସଭ୍ୟ ଥିଲେ। ଶ୍ରୀ ଲେଙ୍କାଙ୍କର ସାମର୍ଥ୍ୟ ସ୍ୱୀକୃତି ଲାଭ କଲା ଓ ସେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ସାଧାରଣ ସଭ୍ୟଭାବରେ ମୟୂରଭଞ୍ଜ ଛଉନୃତ୍ୟର ପ୍ରତିନିଧି ଭାବରେ ଯୋଗଦାନ କଲେ। ପରେ ପରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଏବଂ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର ନୃତ୍ୟ ପରୀକ୍ଷକ ହେବାର ଗୌରବ ଅର୍ଜନ କରିଥିଲେ। ଏହି ସମସ୍ତ ମଧ୍ୟରେ ବାରିପଦା ଉତ୍ତର ସାହିର ଛଉନୃତ୍ୟ ପ୍ରତିଷ୍ଠାନରେ ରହି ସେ ଏହି ଲୋକନୃତ୍ୟର ପୁରାତନ ଶୈଳୀସବୁକୁ ପୁନରୁଦ୍ଧାର କରିବାରେ ଚେଷ୍ଟିତ ହେଲେ।

ନିଜର ଅସାମାନ୍ୟ କୃତିତ୍ୱ ନିମନ୍ତେ ଶ୍ରୀଯୁକ୍ତ ଲେଙ୍କା ପ୍ରଥମେ ସମ୍ମାନିତ ହେଲେ ମୟୂରଭଞ୍ଜ ଛଉନୃତ୍ୟ ପ୍ରତିଷ୍ଠାନ ଦ୍ୱାରା ୧୯୭୨ ମସିହାରେ ଏବଂ ୧୯୭୯ ମସିହାରେ ଲାଭକଲେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର।

ତାଙ୍କର କୃତୀ ଛାତ୍ରଙ୍କ ମଧ୍ୟରେ ଗୁରୁ ଶ୍ରୀ ହରି ନାୟକ, ପ୍ରସନ୍ନ କୁମାର ଚୌଧୁରୀ ସୁନ୍ଦର ମୋହନ ନାୟକ ଇତ୍ୟାଦିଙ୍କ ନାମ ଉଲ୍ଲେଖଯୋଗ୍ୟ।

ଶ୍ରୀ ଲେଙ୍କା କେନ୍ଦ୍ରୀୟ ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଲାଭ କରନ୍ତି ୧୯୮୭ ମସିହାରେ।

## ଶ୍ରୀ ମନୋରଞ୍ଜନ ଦାଶ

**ଝାରକଟା ପାଟଣା, କଟକ**

**ଜନ୍ମ—୧୯୨୧, ଜୁଲାଇ ୨୫**



ଓଡ଼ିଆ ନାଟକକୁ ମଧ୍ୟଯୁଗରୁ ଆଧୁନିକ ଯୁଗକୁ ଟାଣି ନେଇଥିବା କୃତବିଦ୍ୟ ନାଟ୍ୟକାର, ଅଭିନେତା ଏବଂ ସାହିତ୍ୟରଥୀ ଶ୍ରୀ ମନୋରଞ୍ଜନ ଦାଶ ୧୯୨୧ ମସିହା ଜୁଲାଇ ମାସ ୨୫ ତାରିଖରେ କଟକ ଜିଲ୍ଲାର ଝାରକଟା ପାଟଣାଠାରେ ସ୍ୱର୍ଗତ ଆର୍ତ୍ତବନ୍ଧୁ ଦାଶ ଏବଂ ସୁଲୋଚନା ଦେବୀଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । କୁଜଙ୍ଗ ଚନ୍ଦ୍ରବିହାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ଶିକ୍ଷା ସମାପ୍ତ କରି ଶ୍ରୀ ଦାଶ କଟକର ରେଭେନ୍ସା ମହାବିଦ୍ୟାଳୟରୁ ୧୯୪୨ରେ କଳାବିଦ୍ୟାରେ ସ୍ନାତକ ଉପାଧି ଲାଭ କରିଥିଲେ । ଏଥିପୂର୍ବରୁ ଶ୍ରୀ ଦାଶ ୧୯୪୭ରେ 'ଜନସଂସ୍କୃତି ସଙ୍ଘ'ର ଅନ୍ୟତମ ପ୍ରତିଷ୍ଠାତା ଥିଲେ ଏବଂ ୧୯୪୮ରେ ଆକାଶବାଣୀ ଦିଲ୍ଲୀ କେନ୍ଦ୍ରରେ ଯୋଗଦାନ କରିଥିଲେ । ପରେ ୧୯୫୦ରେ 'ଇଉନାଇଟେଡ୍ ଆର୍ଟିଷ୍ଟ'ର ପ୍ରତିଷ୍ଠା କରିବା ସହ ୧୯୫୩ରେ ଓଡ଼ିଆ ଚଳଚ୍ଚିତ୍ର 'ଆମରି ଗାଁ ଝିଅ' ନିମନ୍ତେ ଉପନିର୍ଦ୍ଦେଶକ ଏବଂ ସଂଳାପ ଲେଖକ ଭାବେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ୧୯୫୪ ମସିହାରେ ଓଡ଼ିଆ ଚଳଚ୍ଚିତ୍ର 'କେଦାରଗୌରୀ' ନିମନ୍ତେ ସହ ନିର୍ଦ୍ଦେଶକ, ସଂଳାପ ଏବଂ ଚିତ୍ରନାଟ୍ୟ ଲେଖକ ଭାବେ କାର୍ଯ୍ୟ କରିଥିଲେ । ୧୯୫୫ରେ ଆଇନ ବିଦ୍ୟାରେ ମଧୁସୂଦନ ଆଇନ ମହାବିଦ୍ୟାଳୟରୁ ସ୍ନାତକ ଉପାଧି ଲାଭକରି ୧୯୫୮ ମସିହା ପର୍ଯ୍ୟନ୍ତ ଓକିଲାତି କରିଥିଲେ ଏବଂ ସେହି ବର୍ଷ ଆକାଶବାଣୀ କଟକ କେନ୍ଦ୍ରରେ ଯୋଗଦାନ କରି ତହିଁରେ ୧୯୬୦ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀ ଦାଶ ବହୁ ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇ କାର୍ଯ୍ୟ କରିଛନ୍ତି । ତନ୍ମଧ୍ୟରେ ୧୯୬୨ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ସାଧାରଣ ଏବଂ କାର୍ଯ୍ୟକାରୀ ସଭାର ସଦସ୍ୟ, ୧୯୬୩ରୁ ୧୯୬୭ ପର୍ଯ୍ୟନ୍ତ କେନ୍ଦ୍ର ସାହିତ୍ୟ ଏକାଡେମୀର ସାଧାରଣ ଏବଂ କାର୍ଯ୍ୟକାରୀ ସଭାର ସଦସ୍ୟ, ୧୯୬୪ରୁ ୧୯୭୧ ପର୍ଯ୍ୟନ୍ତ ଓଡ଼ିଶାର ସାହିତ୍ୟ ଏକାଡେମୀ, ସଙ୍ଗୀତ ନାଟକ ଏକାଡେମୀ ଏବଂ ଲଳିତ କଳା ଏକାଡେମୀର ଏକକ ସମ୍ପାଦକ, ୧୯୬୮ରୁ

୧୯୭୯ ପର୍ଯ୍ୟନ୍ତ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀର କାର୍ଯ୍ୟକାରୀ ସଭାର ସଦସ୍ୟ ହୋଇଥିଲେ । ଏତଦ୍‌ବ୍ୟତୀତ ଶ୍ରୀ ଦାଶ ବହୁ ସାଂସ୍କୃତିକ ଅନୁଷ୍ଠାନର ସର୍ବୋଚ୍ଚ କର୍ତ୍ତା ଭାବେ କାର୍ଯ୍ୟଭାର ତୁଲାଇଥିବା ବେଳେ ସମ୍ପ୍ରତି ୧୯୮୩ ମସିହାଠାରୁ କେନ୍ଦ୍ର ସାହିତ୍ୟ ଏକାଡେମୀର ଓଡ଼ିଆ ବିଭାଗରେ ଉପଦେଷ୍ଟା ଭାବେ ଅଦ୍ୟାବଧି କାର୍ଯ୍ୟରତ ।

ବହୁମୁଖୀ ପ୍ରତିଭାସମ୍ପନ୍ନ ଏହି ନାଟ୍ୟକାର ନିଜର ବାଲ୍ୟଜୀବନରୁ ନାଟ୍ୟକଳା ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ପ୍ରଥମେ ୧୯୪୨ରେ ମଞ୍ଚ ଅଭିନୟ ଜରିଆରେ ଏହି ଜଗତ ମଧ୍ୟକୁ ପ୍ରବେଶ କରିଥିଲେ । ୧୯୫୭ରେ ତାଙ୍କ ଲିଖିତ ପ୍ରଥମ ନାଟକ 'ଯୌବନ' ଆତ୍ମପ୍ରକାଶ କଲ ଅନ୍ନପୂର୍ଣ୍ଣା ଥିଏଟର ରଙ୍ଗମଞ୍ଚରେ ଅଭିନୀତ ହୋଇ । ପରବର୍ତ୍ତୀ ସମୟରେ ତାଙ୍କ ରଚିତ ନାଟକ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ଅଗଷ୍ଟ ନଅ, ବନ୍ଦିନୀ ଜନନୀ, ଆଗାମୀ, ଅବରୋଧ, ଜନ୍ମମାଟି, ବନହଂସୀ, ଅରଣ୍ୟ ଫସଲ, ସାଗର ମନ୍ଥନ, ଅମୃତସ୍ୟ ପୁତ୍ର, କାଠଘୋଡ଼ା ଏବଂ ଶବଦଲିପି ଆଦି ଉଲ୍ଲେଖଯୋଗ୍ୟ । ଏହି ନାଟକସବୁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସାଂସ୍କୃତିକ ଅନୁଷ୍ଠାନମାନଙ୍କ ଦ୍ୱାରା ମଞ୍ଚସ୍ଥ ହୋଇ ରାଜ୍ୟ ଏବଂ ରାଜ୍ୟ ବାହାରେ ଆଲୋଡ଼ନ ସୃଷ୍ଟି କରିଅଛି ।

ଓଡ଼ିଶାର ନାଟ୍ୟ ଜଗତକୁ ନିଜର ବିଶେଷ ଅବଦାନ ଯୋଗୁ ଶ୍ରୀଯୁକ୍ତ ଦାଶଙ୍କୁ ଜୀବନର ବିଭିନ୍ନ ସମୟରେ ବହୁ ସାଂସ୍କୃତିକ ସରକାରୀ ଓ ବେସରକାରୀ ଅନୁଷ୍ଠାନମାନଙ୍କ ତରଫରୁ ସମ୍ମାନ, ଉପାୟନ ଓ ଉପାଧି ଦିଆ ଯାଇଅଛି । ତନ୍ମଧ୍ୟରେ ୧୯୭୧ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ନାଟକ 'ଅରଣ୍ୟ ଫସଲ ପାଇଁ', ୧୯୬୪ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଏକାଙ୍କିକା ସଂଗ୍ରହ 'ଶ୍ରେଷ୍ଠ ନାଟକ' ପାଇଁ, ୧୯୮୧ରେ ଦିଲ୍ଲୀ ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ନାଟକ ରଚନା ନିମନ୍ତେ, ନାଟକ 'ନନ୍ଦୀକେଶରୀ' ନିମନ୍ତେ ସମ୍ମାନସୂଚକ ଶାରଳା ପୁରସ୍କାର (୧୯୯୦), ୧୯୯୨ରେ ରାଜ୍ୟପାଳଙ୍କ ସମ୍ମାନସୂଚକ ତାମ୍ରଫଳକ ପାଇବାପାଇଁ ଯୋଗ୍ୟ ବିବେଚିତ ହେବା ଶ୍ରୀ ଦାଶଙ୍କ ନାଟ୍ୟକାର ଜୀବନର ଗୋଟିଏ ଲେଖାଏଁ ମାଇଲ ଖୁଣ୍ଟ । ଏତଦ୍‌ବ୍ୟତୀତ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ଦାଶଙ୍କର ନାଟ୍ୟ ଜଗତକୁ ସମୃଦ୍ଧ କରିବା ପ୍ରଚେଷ୍ଟାକୁ ସମ୍ମାନ ଦେଇ ୧୯୭୮-୭୯ ବର୍ଷରେ ତାଙ୍କୁ ସମ୍ବର୍ଦ୍ଧିତ କରି ନିଜକୁ ଗୌରବାନ୍ୱିତ କରିଛନ୍ତି । ସମ୍ପ୍ରତି ଶ୍ରୀ ଦାଶ କଟକସ୍ଥ ବର୍ତ୍ତମାନ କମ୍ପାଉଣ୍ଡସ୍ଥିତ ନିଜ ବାସଭବନରେ ଅବସ୍ଥାନ କରି ସାହିତ୍ୟ ଚର୍ଚ୍ଚାରେ ନିମଗ୍ନ ।

●



## ୰ ବୈଦ୍ୟନାଥ ଗାୟକ ରତ୍ନଶର୍ମା

**ନଗରଡିହ, ଗଞ୍ଜାମ**

**ଜନ୍ମ—୧୯୨୧, ଅଗଷ୍ଟ ୨୩**

ଓଡ଼ିଶାର ଅନ୍ୟତମ ଶ୍ରେଷ୍ଠ ଲୋକନାଟ୍ୟ କଳା 'ଦାସକାଠିଆ'କୁ ସର୍ବଜନପ୍ରିୟ କରାଇବାରେ ଯେଉଁମାନେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ସ୍ୱର୍ଗତ ଶ୍ରୀ ବୈଦ୍ୟନାଥ ଗାୟକ ରତ୍ନଶର୍ମାଙ୍କ ନାମ ସର୍ବାଦୌ ସ୍ମରଣୀୟ । ଏହି କଳାକାରଙ୍କର ଜନ୍ମ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଛତ୍ରପୁର ତାଲୁକସ୍ଥ ନଗରଡିହ ଗ୍ରାମରେ ୧୯୨୧ ମସିହା ଅଗଷ୍ଟ ମାସ ତେଇଶ ତାରିଖରେ । ତାଙ୍କର ପିତାଙ୍କ ନାମ ୰ ସୋମନାଥ ଶତପଥୀ ଏବଂ ମାତାଙ୍କ ନାମ ୰ କମଳା ଶତପଥୀ ।

ଦାସକାଠିଆ କଳାର ପ୍ରବଳ ଆକର୍ଷଣରେ ପଡ଼ି ଶ୍ରୀ ରତ୍ନଶର୍ମା ନିଜର ସାଧାରଣ ଶିକ୍ଷାକୁ ପଞ୍ଚମ ଶ୍ରେଣୀରୁ ସମାପ୍ତ କରିଦେଇ ୧୯୨୯ ମସିହାରେ ଗଞ୍ଜାମ ଜିଲ୍ଲାର ଟଣ୍ଡ୍ରା ଗ୍ରାମକୁ ଯାଇ ସେଠାରେ ଗାୟକରତ୍ନ ୰ କୃଷ୍ଣଚନ୍ଦ୍ର ସାହୁଙ୍କ ନିକଟରୁ ଦାସକାଠିଆ ଶିକ୍ଷା କଲେ । ଦୁଇବର୍ଷ ଶିକ୍ଷାଲାଭ କଲାପରେ ଶ୍ରୀ ରତ୍ନଶର୍ମା ତାଙ୍କର ସହୋଦର ଭାଇ ଶ୍ରୀ ସୀମସେନ ଶତପଥୀଙ୍କୁ ପାଳିଆ କରି ନିଜେ ଗାୟକ ଭୂମିକା ନେଇ ଦାସକାଠିଆର ପ୍ରଦର୍ଶନ ବିଭିନ୍ନ ଗ୍ରାମାଞ୍ଚଳରେ କରିବାକୁ ଆରମ୍ଭକଲେ । ତାଙ୍କର ସୁଲଳିତ କଣ୍ଠସ୍ୱର, ପାଣ୍ଡିତ୍ୟପୂର୍ଣ୍ଣ ଉପସ୍ଥାପନା ତଥା ସରଳ ଭାଷାବିନ୍ୟାସ ଶିକ୍ଷିତ ଅଶିକ୍ଷିତ ସମସ୍ତଙ୍କର ବୋଧଗମ୍ୟ ହେଲା । ଫଳରେ ସେ ଦାସକାଠିଆ ପରିବେଷଣରେ ବେଶ୍ ଖ୍ୟାତି ଅର୍ଜନ କଲେ ।

୧୯୭୬ ମସିହାରେ ସେ ପ୍ରଥମ ଜଣ 'କବିରାଜ' ରାଜ ଦରବାରରୁ ଗାୟକ ରତ୍ନଶର୍ମା ଉପାଧି ସହ ମକରକୁଣ୍ଡଳ ପ୍ରାପ୍ତ ହୋଇଥିଲେ । ସେହିଦିନଠାରୁ ସେ ନିଜର 'ଶତପଥୀ' ସଞ୍ଜ୍ଞା ତ୍ୟାଗ କରି ଶ୍ରୀ ବୈଦ୍ୟନାଥ ଗାୟକ ରତ୍ନଶର୍ମା ନାମରେ ପରିଚିତ ହେଲେ ଏବଂ ଆଜିଦିନ ସେହି ମକର କୁଣ୍ଡଳ ତାଙ୍କର ସାଥୀ ହୋଇ ରହିଲା ।

୧୯୫୪ ମସିହା ଅଗଷ୍ଟ ୧୫ ତାରିଖରେ ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ବିଭାଗ ତରଫରୁ ଭୁବନେଶ୍ୱରଠାରେ ଦାସକାଠିଆ ପରିବେଷଣ କରି ସରକାରଙ୍କ ଦ୍ୱାରା ଚର୍ଚ୍ଚିତ ହୋଇଥିଲେ । ତା' ପର ବର୍ଷ ୧୯୫୫ ମସିହାରେ ଓଡ଼ିଶା ଲୋକସମ୍ପର୍କ ବିଭାଗ ଦ୍ୱାରା ଆୟୋଜିତ ଦାସକାଠିଆ ଓ ପାଲା ପ୍ରତିଯୋଗିତାରେ ସେ ନିଜର ସାମର୍ଥ୍ୟ ପ୍ରଦର୍ଶନ କରି ପ୍ରଥମ ସ୍ଥାନ ଅଧିକାର କଲେ । ସେହି ସମୟରେ ସେ ଓଡ଼ିଶା ସରକାରଙ୍କର ଙ୍କିରଣ ଭାବେ ପଞ୍ଚବାର୍ଷିକ ଯୋଜନା ତଥା ଅନ୍ୟାନ୍ୟ ଯୋଜନାର ତଥ୍ୟକୁ ଗୀତ ଆକାରରେ ଗାନ କରି ସେହି ତଥ୍ୟସବୁକୁ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିଥିଲେ ।

୧୯୫୭ ମସିହା ତାଙ୍କ ଜୀବନର ଏକ ମାଇଲ୍ ଖୁଣ୍ଟ । ଏହି ବର୍ଷ ସେ ଆକାଶବାଣୀ କାର୍ଯ୍ୟକ୍ରମରେ ଭାଗନେବା ନିମନ୍ତେ ଆକାଶବାଣୀ କଟକଙ୍କ ଦ୍ୱାରା ସ୍ୱୀକୃତି ଲାଭ କଲେ ଏବଂ ଖୁବ୍ କମ୍ ସମୟ ମଧ୍ୟରେ ପ୍ରଥମ ଶ୍ରେଣୀ କଳାକାରର ମର୍ଯ୍ୟାଦା ଲାଭ କଲେ ।

୧୯୫୭ ମସିହାରେ ସର୍ବଭାରତୀୟ ସ୍ତରରେ ଦିଲ୍ଲୀ ଆକାଶବାଣୀ ଦ୍ୱାରା ଆୟୋଜିତ ଲୋକନୃତ୍ୟ ସଙ୍ଗୀତ ପ୍ରତିଯୋଗିତାରେ ଆକାଶବାଣୀ କଟକଙ୍କ ତରଫରୁ ଅଂଶଗ୍ରହଣ କରି ପ୍ରଥମ ସ୍ଥାନ ଅଧିକାର କଲେ ଏବଂ ତତ୍କାଳୀନ ରାଷ୍ଟ୍ରପତି ସ୍ୱର୍ଗତ ରାଜେନ୍ଦ୍ର ପ୍ରସାଦଙ୍କ ନିକଟରୁ 'ବିଜୟ ଘଣ୍ଟି' ନାମକ ନିଶାଣ ପୁରସ୍କାର ସ୍ୱରୂପ ଲାଭ କରିଥିଲେ ।

୧୯୬୮ ମସିହାରେ ସେ ସାଧାରଣତନ୍ତ୍ର ଦିବସ ଉତ୍ସବରେ ଯୋଗଦାନ କରି ବହୁ ପ୍ରଶଂସିତ ହୋଇଥିଲେ । ଶ୍ରୀ ଗାୟକ ରତ୍ନଶର୍ମାଙ୍କ ଚେଷ୍ଟା ଫଳରେ 'ଦାସକାଠିଆ କାଠି' ଭାରତ ସରକାରଙ୍କ ବାଦ୍ୟ ଗନ୍ତାଘରେ ରହି ଏକ ବାଦ୍ୟଯନ୍ତ୍ରର ସ୍ୱୀକୃତି ଲାଭ କରିଥିଲା ।

୧୯୮୨ ମସିହା ମାର୍ଚ୍ଚ ୧୪ ତାରିଖରେ ସେ କେନ୍ଦ୍ରୀୟ ସଙ୍ଗୀତ ନାଟକ ଏକାଡେମୀ ତରଫରୁ ପୁରସ୍କୃତ ହୋଇଥିଲେ । ଏହା ପୂର୍ବରୁ ୧୯୭୮-୭୯ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଗାୟକରତ୍ନ ଶର୍ମାଙ୍କୁ ଓଡ଼ିଆ ସାହିତ୍ୟ ଅବଦାନ ନିମନ୍ତେ ସମ୍ମାନିତ ଏବଂ ପୁରସ୍କୃତ କରାଯାଇଥିଲା । ଶେଷ ଜୀବନରେ ଶ୍ରୀ ରତ୍ନଶର୍ମା ଏହି ପରମ୍ପରାର ଉନ୍ନତିକଳ୍ପେ ନିଜସ୍ୱ ପ୍ରଚେଷ୍ଟାରେ 'ଉତ୍କଳ ଦାସକାଠିଆ ପରିଷଦ' ଗଠନ କରିଥିଲେ ଏବଂ ନିଜ ଜୀବନ କାଳ ମଧ୍ୟରେ ପ୍ରାୟ ପନ୍ଦରଟି ଦଳକୁ ଏହି ପାରମ୍ପରିକ କଳା ଶିକ୍ଷା ଦେଇ ଏହାର ପ୍ରଚାର ଏବଂ ପ୍ରସାର ନିମନ୍ତେ ନିଜର ଜୀବନ ଉତ୍ସର୍ଗ କରିଥିଲେ । ଆତତାୟୀ ହସ୍ତରେ ନିହତ ହେବା ଫଳରେ ଓଡ଼ିଶାର ଗ୍ରାମ୍ୟସାହିତ୍ୟ ରଚନା ଓ ପରିବେଷଣ କ୍ଷେତ୍ରରେ ଯେଉଁ ଅପୂରଣୀୟ କ୍ଷତି ଘଟିଲା ତାହା ଆଉ ସହଜରେ ପୂରଣ ହେବାର ନୁହେଁ ।

# ୰ କ୍ଷିତୀଶ ଚନ୍ଦ୍ର ମୈତ୍ର
## ବକ୍ସି ବଜାର, କଟକ

### ଜନ୍ମ—୧୯୦୬ ମସିହା

ଓଡ଼ିଶାର ମୁଷ୍ଟିମେୟ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତଜ୍ଞଙ୍କ ମଧ୍ୟରେ ସ୍ୱର୍ଗତ କ୍ଷିତୀଶ ଚନ୍ଦ୍ର ମୈତ୍ର ନିର୍ବିବାଦରେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଶ୍ରୀ ମୈତ୍ର ବାଲେଶ୍ୱରଠାରେ ୧୯୦୬ ମସିହା ଅକ୍ଟୋବର ଅଠର ତାରିଖରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ତାଙ୍କର ପ୍ରାରମ୍ଭିକ ଶିକ୍ଷା କଟକର ପି. ଏମ୍. ଏକାଡେମୀ ବିଦ୍ୟାଳୟରେ ଆରମ୍ଭ ହୋଇଥିଲା । ସେଠାରୁ ଉଚ୍ଚ ଇଂରାଜୀ ଶିକ୍ଷା ଶେଷ କରି ସେ ୧୯୨୮ ମସିହାରେ କଟକର ରେଭେନ୍‌ସା କଲେଜରୁ ସ୍ନାତକ ଡିଗ୍ରୀ ହାସଲ କଲେ । ପରବର୍ତ୍ତୀ ସମୟରେ ସେ ଆଇନ୍ କଲେଜରେ ଦୁଇବର୍ଷ ପଢ଼ି ମଧ୍ୟ କୌଣସି କାରଣରୁ ପରୀକ୍ଷା ଦେଇପାରି ନ ଥିଲେ । ତତ୍ପରେ ସରକାରୀ ତାଲିମ ମହାବିଦ୍ୟାଳୟରେ ଶିକ୍ଷାଲାଭ କରି ୧୯୩୨ ମସିହାରେ "ଡିପ୍ଲୋମା ଇନ୍ ଏଜୁକେଶନ୍" ଲାଭ କଲେ । ଶିକ୍ଷା ସମାପ୍ତି ପରେ ଶ୍ରୀ ମୈତ୍ର କିଛି ମାସ ପାଇଁ ବାଲେଶ୍ୱର ଜିଲ୍ଲା ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ ମଧ୍ୟ ସଙ୍ଗୀତର ଆହ୍ୱାନକୁ ଏଡ଼ାଇ ନ ପାରି ୧୯୩୩ରେ ଲକ୍ଷ୍ନୌ ଗ୍ଲଲିଆସି ସେଠାରେ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତ ପାଞ୍ଚବର୍ଷ ଧରି ଶିକ୍ଷା କଲେ । "ଭାତଖଣ୍ଡେ ସଙ୍ଗୀତ ବିଦ୍ୟାପୀଠ"ରେ ଶାସ୍ତ୍ରୀୟ ସଙ୍ଗୀତରେ ସେ ପ୍ରସିଦ୍ଧ ପଣ୍ଡିତ ୰ ଜି. ଏନ୍. ନାଟୁ ଏବଂ ଏସ୍. ଏନ୍. ରତନ୍‌ଜ୍ଞାନ କରଙ୍କଠାରୁ ଶିକ୍ଷା ଲାଭ କରିବାର ସୁଯୋଗ ପାଇଥିଲେ । ପରେ ୧୯୩୮ରେ କଲିକତାକୁ ଆସି ସେଠାରେ ବିଖ୍ୟାତ ଓସ୍ତାଦ୍ ଫୟାଜ୍ ଖାଁ ଓ ବଡ଼େ ଗୁଲାମ ଅଲ୍ଲି ଖାଁ, ପ. ଓଁକାର ନାଥ ଠାକୁର, ଏବଂ ଅନ୍ୟମାନଙ୍କ ସଙ୍ଗୀତ ଶୁଣି ତାହିଁରୁ ମଧ୍ୟ ଶିକ୍ଷା କରିବାକୁ ଚେଷ୍ଟା କରିଥିଲେ ।

ଶେଷରେ ୧୯୪୨ ମସିହାରେ କଟକ ଫେରିଆସି "ଉତ୍କଳ ସଙ୍ଗୀତ ସମାଜ" ଅଧୀନରେ ଗ୍ଲରିବର୍ଷ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ତତ୍ପରେ ସେ ବାଲେଶ୍ୱର ଜିଲ୍ଲାର ଜମାଲପୁରଠାରେ ଥିବା 'ବିଶ୍ୱନାଥ ଏକାଡେମୀ'ରେ ଉପପ୍ରଧାନ ଶିକ୍ଷକ ରୂପେ ଯୋଗ ଦେଇ ସେଠାରେ ଦେଢ଼ବର୍ଷ କାର୍ଯ୍ୟ କରିଥିଲେ । ପରେ ସେ ବି. ଏମ୍. ହୋଗରାଇ ହାଇସ୍କୁଲରେ ଉପପ୍ରଧାନ ଶିକ୍ଷକ ରୂପେ ଯୋଗ ଦେଇ ସାଢ଼େ ତିନିବର୍ଷ କାର୍ଯ୍ୟ କରିବା ପରେ ପୁନର୍ବାର କଟକ ଫେରିଆସିଲେ । ସେହି ବର୍ଷ ସେ ଓଡ଼ିଶାର କଳା ସଂସ୍କୃତିର ପ୍ରାଣକେନ୍ଦ୍ର କଳାବିକାଶ କେନ୍ଦ୍ରରେ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷକ ଭାବରେ ଯୋଗଦେଲେ । ଏଠାରେ ସେ ଦୀର୍ଘ ଆଠବର୍ଷ କାର୍ଯ୍ୟ କରିବା ପରେ ନିଜେ ଇସ୍ତଫା ପ୍ରଦାନ କରି ଚାଲି-

ଯାଇ ଆକାଶବାଣୀ କଟକଙ୍କ ଅଡ଼ିସନ୍ ବୋର୍ଡର ସଦସ୍ୟ ଭାବରେ କୋଡ଼ିଏ ବର୍ଷ କାର୍ଯ୍ୟ କରିଥିଲେ । ପରେ ଶାସ୍ତ୍ରୀୟ ସଙ୍ଗୀତ କାର୍ଯ୍ୟକ୍ରମର ପରିଚାଳକ ଭାବେ ଦୀର୍ଘ ଅଠର ବର୍ଷ କାର୍ଯ୍ୟ କରିବା ପରେ ୧୯୬୮ ମସିହାରେ ସେ ସେବାନିବୃତ୍ତ ହୋଇ କଟକରେ ବାସ କରୁଥିଲେ ।

ତାଙ୍କର ଅଗାଧ ଶାସ୍ତ୍ରୀୟ ସଙ୍ଗୀତ ଜ୍ଞାନ ଏବଂ ଉତ୍କର୍ଷ ପୂର୍ଣ୍ଣ ଶିଳ୍ପୀ ଜୀବନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ୧୯୭୯-୮୦ ବର୍ଷରେ ସମ୍ମାନିତ, ସମ୍ମାନିତ ଏବଂ ପୁରସ୍କୃତ କରିଛନ୍ତି ।

ତାଙ୍କର ମହାପ୍ରୟାଣରେ ଆମ ରାଜ୍ୟର ତଥା ଦେଶର ଶାସ୍ତ୍ରୀୟ ସଙ୍ଗୀତ କ୍ଷେତ୍ରରେ ଯେଉଁ ଅପୂରଣୀୟ କ୍ଷତି ଘଟିଲା ତାହା ଆଉ ପୂରଣ ହେବାର ନୁହେଁ ।

●



## ଶ୍ରୀ ଲକ୍ଷ୍ମୀନାରାୟଣ ପାତ୍ର

ଗୁଡ଼ିଆଲି, ଗଞ୍ଜାମ

ଜନ୍ମ—୧୯୧୭, ଏପ୍ରିଲ୍ ୧୩

ଓଡ଼ିଶାର ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ରଥୀ ଶ୍ରୀ ଲକ୍ଷ୍ମୀନାରାୟଣ ପାତ୍ର ୧୯୧୭ ମସିହା ଏପ୍ରିଲ୍ ମାସ ତେର ତାରିଖ ଦିନ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଗୁଡ଼ିଆଲି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ସ୍ୱର୍ଗୀୟ ପିତା ରଘୁନାଥ ପାତ୍ର ପ୍ରାଚୀନ ସଙ୍ଗୀତ (ଚମ୍ପୂ, ଚଉପଦୀ, ଛାନ୍ଦ ଇତ୍ୟାଦି)ର ପ୍ରଧାନ ଉପାସକ ଥିବାରୁ ତାହାଁର ବିଶେଷ ପ୍ରଭାବ ବାଳକ ଲକ୍ଷ୍ମୀନାରାୟଣଙ୍କ ଉପରେ ପଡ଼ିଥିଲା । ଫଳରେ ମାତ୍ର ପଞ୍ଚମ ଶ୍ରେଣୀରୁ ସ୍କୁଲ ପଢ଼ାକୁ ସାଙ୍ଗ କରି ପ୍ରଥମ କରି ପିତାଙ୍କ ଆୟୋଜିତ ଏକ ପୌରାଣିକ ନାଟକରେ 'ଭକ୍ତ ପ୍ରହ୍ଲାଦ' ଭୂମିକାରେ ଅଭିନୟ କରନ୍ତି । ତାପରେ ଆଉ ପଛକୁ ଫେରି ଚାହିଁ ନାହାନ୍ତି ସିଏ । ଏହି ସମୟରେ ତାଙ୍କର ପ୍ରଥମ ନାଟ୍ୟଗୁରୁ ଥିଲେ ସ୍ୱର୍ଗତ ଜଗନ୍ନାଥ ସାହୁ । ପରେ ପରେ ସ୍ୱନାମଧନ୍ୟ ନାଟ୍ୟାଗ୍ରଣୀ ରଘୁନାଥ ପଣ୍ଡାଙ୍କ ଦ୍ୱାରା 'କିଶୋର ଚନ୍ଦ୍ର ନାଟ୍ୟ ସଙ୍ଘ' ନାମରେ ଏକ ରାସଦଳ ସୃଷ୍ଟି ହେବା ପରେ ସେ ତହିଁରେ ଯୋଗଦାନ କଲେ । ଏହି ସମୟରେ ତାଙ୍କର ଗୁରୁ ଥିଲେ ପ୍ରଖ୍ୟାତ ନଟ ଶ୍ରୀ ନରସିଂହ ନନ୍ଦ ଏବଂ ସ୍ୱର୍ଗତ ଗୋବିନ୍ଦ ଚନ୍ଦ୍ର ଶୂରଦେଓ ।

'କିଶୋର ଚନ୍ଦ୍ର ନାଟ୍ୟ ସଙ୍ଘ'ରେ ତିନିବର୍ଷ ଅଭିନୟ କଲାପରେ ସେ ୧୯୩୫ ମସିହାରେ ଅନ୍ନପୂର୍ଣ୍ଣା ନାଟ୍ୟମଣ୍ଡଳୀରେ ଯୋଗଦାନ କଲେ । ଏହାର ସ୍ରଷ୍ଟା ଥିଲେ 'ଖଣ୍ଡିଆଲକୋଟ' ଶାସନର ସ୍ୱର୍ଗତ ସୋମନାଥ ଦାସ ଏବଂ ପରିଚାଳକ ଥାଆନ୍ତି ୰ ବାଉରିବନ୍ଧୁ ମହାନ୍ତି ।

ତାଙ୍କର ପେଶାଦାର ଜୀବନର ପ୍ରଥମ କୃତିତ୍ୱ ହେଲା 'ଶ୍ରୀକୃଷ୍ଣ ଲୀଳା' ନାଟକରେ 'ବସୁଦେବ'ର ଭୂମିକା; ମାତ୍ର ୧୭ ବର୍ଷ ବୟସରେ ସେହି ନାଟ୍ୟମଣ୍ଡଳୀର ପରିଚାଳନାଭାର ସେ ଗ୍ରହଣ କରି ତହିଁରେ ନିଜ ନିର୍ଦ୍ଦେଶନାରେ 'ଭକ୍ତର ଭଗବାନ' ଏବଂ 'କଂସବଧ'

ଇତ୍ୟାଦି ନାଟକ ଅଭିନୟ କରାଇଥିଲେ । ଏହି ନାଟ୍ୟମଣ୍ଡଳୀ ପୂର୍ବରୁ ଅପେରା ଭାବରେ କାର୍ଯ୍ୟ କରୁଥିଲା, ମାତ୍ର ଶ୍ରୀ ପାତ୍ରଙ୍କ ଦାୟିତ୍ୱ ଗ୍ରହଣ ପରେ ଏହା 'ଅନ୍ନପୂର୍ଣ୍ଣା ଥିଏଟର' ନାମରେ ପରିଚିତ ହେଲା ଏବଂ ଅପେରା ପରିବର୍ତ୍ତେ ଦୃଶ୍ୟସଜ୍ଜା ମଧ୍ୟରେ ନାଟକ ସବୁ ଅଭିନୀତ ହେବାକୁ ଲାଗିଲା । ସେହିଦିନଠାରୁ ସେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ନିର୍ଦ୍ଦେଶକ ଏବଂ ଅଭିନେତା ଭାବରେ କାର୍ଯ୍ୟ କରିଆସୁଛନ୍ତି ।

ତାଙ୍କ ନିର୍ଦ୍ଦେଶିତ ସବୁ ସଫଳ ନାଟକର ପ୍ରଯୋଜନା ମଧ୍ୟରେ ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷଙ୍କ ଲିଖିତ ନାଟକ 'ଲକ୍ଷହୀରା' ସର୍ବଶ୍ରେଷ୍ଠ ବୋଲି ତାଙ୍କର ମତ । ଅନ୍ୟ ନାଟକସବୁ ହେଲା କଂସା କବାଟ, ଝିଅ କଉଡ଼ି, ସ୍ୱର୍ଣ୍ଣ ଚମ୍ପା, ଦେଖିଲେ ଜାଣିବେ, ଦେବଯାନୀ, ଝିମିଟି ଖେଳ, ବଳିଦାନ, ଧାତକୀ ପ୍ରଶ୍ନ, ଏକଛତ୍ରବାଦ ଇତ୍ୟାଦି ।

ଅଭିନୟ ସହ ନିର୍ଦ୍ଦେଶନା ଓ ପରିଚାଳନା ଇତ୍ୟାଦି କରିବା ସଙ୍ଗେ ସଙ୍ଗେ ଶ୍ରୀ ପାତ୍ର ଅବସର ସମୟରେ ନାଟକର ବିଷୟବସ୍ତୁ ଲେଖିବାରେ ମଧ୍ୟ କିଛି ସମୟ ଦିଅନ୍ତି । ଏହି ଅବସର ବିନୋଦନରୁ ଯିଏ ସୃଷ୍ଟି ହୋଇଛି କଂସାକବାଟ, ସ୍ୱର୍ଣ୍ଣଚମ୍ପା, ଝିଅକଉଡ଼ି ଇତ୍ୟାଦି ବହୁଚର୍ଚ୍ଚିତ ସଫଳ ନାଟକ ସବୁ ।

ଦୀର୍ଘ ଏକାବନ ବର୍ଷ ନାଟ୍ୟ ଜଗତରେ କଟାଇବାପରେ ଓଡ଼ିଶାର ରଙ୍ଗମଞ୍ଚର ଅଧଃପତନରେ ସେ ବିଶେଷ ମ୍ରିୟମାଣ । ତାଙ୍କର ସୃଷ୍ଟି ଅଗଣିତ ଗୁଣଗ୍ରାହୀ ଅଛନ୍ତି ।

ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୭୯-୮୦ ବର୍ଷରେ ଏହି ବହୁମୁଖୀ ପ୍ରତିଭାଦୀପ୍ତ କଳାକାରଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।

# ସ୍ୱର୍ଗତ ଜଗବନ୍ଧୁ ସାହୁ

## ଚନ୍ଦ୍ରକାଟବନ୍ଧା, ବାଲେଶ୍ୱର

### ଜନ୍ମ—୧୯୧୪, ଜାନୁୟାରୀ ୧୯

ପ୍ରସିଦ୍ଧ ଯନ୍ତ୍ର ସଙ୍ଗୀତଜ୍ଞ, ସଙ୍ଗୀତାଚାର୍ଯ୍ୟ ° ଜଗବନ୍ଧୁ ସାହୁଙ୍କର ଜନ୍ମ ବାଲେଶ୍ୱର ଜିଲ୍ଲାର ଭଦ୍ରଖ ନିକଟବର୍ତ୍ତୀ 'ଚନ୍ଦ୍ରକାଟବନ୍ଧା' ଗ୍ରାମରେ ୧୯୧୪ ମସିହା ଜାନୁୟାରୀ ମାସ ଊଣେଇଶି ତାରିଖରେ । ତାଙ୍କର ପିତାଙ୍କ ନାମ ଥିଲା ° ଗୋବିନ୍ଦ ସାହୁ । ଆବାଲ୍ୟରୁ ଆର୍ଥିକ ଦୁରବସ୍ଥା ଯୋଗୁ ସେ ବିଦ୍ୟାଳୟ ଶିକ୍ଷାରୁ ବଞ୍ଚିତ ହେଲେ ଏବଂ ବିଭୁଦତ୍ତ ପ୍ରତିଭାକୁ ଆଶ୍ରୟ କରି ଜଗବନ୍ଧୁ ନିଜ ଗ୍ରାମର ଯାତ୍ରାଦଳରେ ଅଭିନୟ କଲେ । ତାଙ୍କର ଲଳିତ କଣ୍ଠସ୍ୱର ଦର୍ଶକ ପ୍ରାଣକୁ ବିମୋହିତ କଲା । କୈଶୋର ଓ ଯୌବନରେ ସେ ସଙ୍ଗୀତାଚାର୍ଯ୍ୟ ° ମନ ମୋହନ ସାବତଶର୍ମାଙ୍କର ଶିଷ୍ୟତ୍ୱ ଗ୍ରହଣକରି ସଙ୍ଗୀତର ସବୁ ବିଭାଗରେ ପାରଦର୍ଶିତା ହାସଲ କଲେ । ୧୯୩୮ ମସିହାରେ ସେ ନିଖିଳ ବଙ୍ଗ ସଙ୍ଗୀତ ପ୍ରତି-ଯୋଗିତାରେ ଯୋଗ ଦେଇ 'କୀର୍ତ୍ତନ'ରେ ପ୍ରଥମସ୍ଥାନ ଅଧିକାର କରିଥିଲେ । କୀର୍ତ୍ତନ ବଙ୍ଗୀୟମାନଙ୍କର ସ୍ୱକୀୟ ସଙ୍ଗୀତ ହେଲେ ମଧ୍ୟ ସେହି କୀର୍ତ୍ତନରେ ବହୁ ପ୍ରତିଦ୍ୱନ୍ଦ୍ୱୀଙ୍କୁ ପରାସ୍ତ କରି ଜଗବନ୍ଧୁ ସେଦିନ ଯେଉଁ ଗୌରବସମ୍ପଦ ଓଡ଼ିଶାକୁ ନେଇ ଆସିଲେ, କେବଳ ଇତିହାସହିଁ ତା'ର ମୂଲ୍ୟ କଳନା କରିବ ।

ଏହାପରେ ସେ କିଛିଦିନ ପାଟନାରେ ସଙ୍ଗୀତ ଶିକ୍ଷା ଏବଂ ଶିକ୍ଷକତା କରି ସ୍ୱ ସ୍ଥାନକୁ ଫେରି ଆସିଲେ ଏବଂ ୧୯୪୨ ମସିହାଠାରୁ ° ମନମୋହନଙ୍କ ଉତ୍ତରାଧିକାରୀ ରୂପେ ଭଦ୍ରଖ ଉଚ୍ଚଇଂରାଜୀ ବିଦ୍ୟାଳୟରେ ସଙ୍ଗୀତ ଶିକ୍ଷକରୂପେ ମୃତ୍ୟୁ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ।

° ଜଗବନ୍ଧୁ ସାହୁଙ୍କର ସଙ୍ଗୀତ ପ୍ରତିଭା ଥିଲା ବହୁମୁଖୀ । ଖେୟାଲ୍, ଠୁମ୍‌ରି, କୀର୍ତ୍ତନ ଓ ଭଜନ ଗାୟନ ସଙ୍ଗେ ବେହେଲା, ଏସରାଜ୍, ସିତାର ଏବଂ ସରୋଦ୍ ଇତ୍ୟାଦି ତାର ବାଦ୍ୟ ସହ ତବଲା ବାଦନ ଏବଂ ନୃତ୍ୟ ବିଦ୍ୟାରେ ସେ ସମଭାବରେ ପାରଦର୍ଶୀ ଥିଲେ । ସଂକ୍ଷେପରେ କହିବାକୁ ଗଲେ ତାଙ୍କଠାରେ ଏକାଧାରରେ ଗୀତ, ବାଦ୍ୟ ଏବଂ ନୃତ୍ୟର ତ୍ରିବେଣୀ ସଙ୍ଗମ ଘଟି ତାଙ୍କୁ ପୂର୍ଣ୍ଣ 'ସଙ୍ଗୀତ'ରେ ପରିଣତ କରିଥିଲା ।

ସ୍ୱର୍ଗତ ସାହୁ କିଛି କାଳ ଆକାଶବାଣୀ କଟକ କେନ୍ଦ୍ରରେ ଜଣେ ବେହେଲା ବାଦକ ଭାବରେ କାର୍ଯ୍ୟ କରିଥିଲେ । ତାଙ୍କର ଉଚ୍ଚକୋଟୀର ବାଦନଶୈଳୀ ସମସ୍ତଙ୍କୁ ଆକୃଷ୍ଟ

କରିବାରେ ସକ୍ଷମ ହୋଇଥିଲେ । ସାରା ଓଡ଼ିଶାର ବହୁ ସ୍ଥାନରୁ ଇଚ୍ଛୁକ ଶିକ୍ଷାର୍ଥୀମାନଙ୍କର ଭିଡ଼ ସର୍ବଦା ତାଙ୍କ ନିକଟରେ ଲାଗି ରହୁଥାଏ । ଓଡ଼ିଶାର ପ୍ରାୟ ସମସ୍ତ ଲବ୍‌ଧପ୍ରତିଷ୍ଠ ସଙ୍ଗୀତଜ୍ଞ ଶ୍ରୀ ସାହୁଙ୍କୁ ପ୍ରବୀଣ ଆଚାର୍ଯ୍ୟର ମର୍ଯ୍ୟାଦା ଦେଇଥାନ୍ତି ।

ଓଡ଼ିଶାରେ ଶାସ୍ତ୍ରୀୟ ସଙ୍ଗୀତର ବିକାଶ ନିମନ୍ତେ ଶ୍ରୀ ସାହୁ 'ସଙ୍ଗୀତ ସହଚର' ନାମକ ଏକ ଗ୍ରନ୍ଥକୁ ଦୁଇଟି ଭାଗରେ ପ୍ରକାଶ କରିଛନ୍ତି । ଏହି ପୁସ୍ତକ ଦୁଇଟିରେ ବହୁ ଶାସ୍ତ୍ରୀୟ ସଙ୍ଗୀତ ଏବଂ ରାଗ ରାଗିଣୀର ଲକ୍ଷଣମାନ ସରଳଭାବରେ, ମାତ୍ର ଶାସ୍ତ୍ରୀୟ ପଦ୍ଧତିରେ ସନ୍ନିବେଶିତ ହୋଇ ଜନସମାଜରେ ବିଶୁଦ୍ଧ ସଙ୍ଗୀତ ଶିକ୍ଷାର ପଥ ସୁଗମ କରି-ଯାଇଛି । ନିଜ ଜୀବଦଶାରେ ଶ୍ରୀ ସାହୁ ବହୁ ସଙ୍ଗୀତ ପ୍ରତିଯୋଗିତାରେ ବିଚାରକ ଭାବରେ କାର୍ଯ୍ୟ କରିବା ସହ ଅଗଣିତ ସଙ୍ଗୀତ ସମ୍ମେଳନରେ ଅଂଶଗ୍ରହଣ କରିଛନ୍ତି । ଏତଦ୍‌ବ୍ୟତୀତ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପରୀକ୍ଷକ ଭାବରେ ବହୁବର୍ଷ କାର୍ଯ୍ୟ କରିବା ସହ ଶେଷ ଜୀବନ ପର୍ଯ୍ୟନ୍ତ 'ମନମୋହନ ସଙ୍ଗୀତ ପରିଷଦ' ର ଅଧ୍ୟକ୍ଷ ଏବଂ ନିର୍ଦ୍ଦେଶକ ଥିଲେ । ତାଙ୍କର ବାଦନରେ ପ୍ରସ୍ତୁତ ବହୁ ରେକର୍ଡ ମଧ୍ୟ ରହିଅଛି ।

ଜୀବନର ଶେଷଭାଗରେ ପ୍ରବଳ ଶ୍ୱାସ ରୋଗରେ ଆକ୍ରାନ୍ତ ହୋଇ ବାଧ୍ୟରେ ସେ ସଙ୍ଗୀତ ଜଗତରୁ ଅବସର ନେଲେ । ସାହୁ ପରେ ପରେ ସେ ଏ ଦୁନିଆର ଜଞ୍ଜାଳରୁ ମଧ୍ୟ ଅବସର ଗ୍ରହଣ କଲେ । ଓଡ଼ିଶାର ଶାସ୍ତ୍ରୀୟ ସଙ୍ଗୀତକୁ ତାଙ୍କର ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ସାହୁଙ୍କୁ ୧୯୭୯-୮୦ ବର୍ଷ ନିମନ୍ତେ ସମ୍ମାନିତ ଏବଂ ପୁରସ୍କୃତ କରିଅଛନ୍ତି ।

●

# ସ୍ୱର୍ଗତ ଅର୍ଜୁନ ପଣ୍ଡା

## ଦରଡ଼ା, ପୁରୀ

### ଜନ୍ମ—୧୯୦୬, ଫେବୃୟାରୀ ୩

ସୁପ୍ରାଚୀନ ଓଡ଼ିଶୀ ନୃତ୍ୟ ଓ ଗୋଟିପୁଅ ନୃତ୍ୟ ଗୁରୁ ଭାବରେ ସ୍ୱର୍ଗତ ଅର୍ଜୁନ ପଣ୍ଡା ବିଶେଷ ଭାବରେ ପରିଚିତ । ପଣ୍ଡା ୧୯୦୬ ମସିହା ଫେବୃୟାରୀ ମାସ ୩ ତାରିଖ ଦିନ ପୁରୀ ଜିଲ୍ଲାର ବାଲିପାଟଣା ଥାନା ଅନ୍ତର୍ଗତ ଦରଡ଼ା ମୌଜାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ଗୌରାଙ୍ଗ ଚରଣ ପଣ୍ଡା । ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲେ ମଧ୍ୟ ସଙ୍ଗୀତ ଓ ନୃତ୍ୟ ପ୍ରତି ତାଙ୍କର ସହଜାତ ଆକର୍ଷଣ ତାଙ୍କୁ ତାଙ୍କ ପାଠରେ ୧୯୧୯ ମସିହାରେ ମଧ୍ୟ ଇଂରାଜୀ ଶିକ୍ଷା ଶେଷ କରିବା ପରେ ପୂର୍ଣ୍ଣଚ୍ଛେଦ ପକାଇ ଦେଇଥିଲା । ୧୯୩୨ ମସିହାରେ ସେ ପୁରୀ ଯାଇ ସେଠାରେ ଗଜପତିଙ୍କ ସଙ୍ଗୀତ ଶିକ୍ଷକ ୰ ସୋମନାଥ ମହାପାତ୍ରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହି ନୃତ୍ୟ ଓ ସଙ୍ଗୀତରେ ପୂର୍ଣ୍ଣ ତାଲିମ୍ ନେବାର ସୁଯୋଗ ପାଇଥିଲେ ।

ନିଜର ସଙ୍ଗୀତ ଶିକ୍ଷା ଶେଷ ହେବା ପରେ ସେ ୧୯୪୫ରେ ନିଜର ଏକ ଗୋଟିପୁଅ ଦଳ ଗଢ଼ି ସେମାନଙ୍କୁ ତାଲିମ ଦେଲେ ଏବଂ ବିଭିନ୍ନ ସ୍ଥାନରେ ଏକ ଭ୍ରାମ୍ୟମାଣ ଦଳ ଭାବରେ ନିଜର କଳା ପ୍ରଦର୍ଶନ କରି ଦର୍ଶକମାନଙ୍କୁ ବିମୋହିତ କଲେ । ଏହି ସମୟରେ ସେ ଗୋଟିପୁଅ ନୃତ୍ୟ ଉପରେ ବିଶେଷ ଗବେଷଣା କରିବା ନିମନ୍ତେ କେନ୍ଦ୍ର ସରକାରଙ୍କ ନିକଟରୁ ଆର୍ଥିକ ଅନୁଦାନପ୍ରାପ୍ତ ହୋଇ ପୁରୀ ଜିଲ୍ଲାର ଉମ୍ପିଶଶୋଣାଠାରେ ଗବେଷଣା କାର୍ଯ୍ୟ କରିଥିଲେ ।

ସମୟକ୍ରମେ ତାଙ୍କ ଦ୍ୱାରା ଗଠିତ ଏହି ଗୋଟିପୁଅ ନାଟ୍ୟଦଳ ୧୯୫୬-୫୭ ସାଲରେ ଭାରତର ପ୍ରସିଦ୍ଧ ନଗରୀ ବମ୍ବେ, ଦିଲ୍ଲୀ, କାଶ୍ମୀର ଓ କଲିକତା ଇତ୍ୟାଦି ସ୍ଥାନମାନଙ୍କରେ ସରକାରୀ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ବିଶେଷ ସୁନାମ ଅର୍ଜନ କରିଥିଲେ । ତାଙ୍କ ପ୍ରତିଷ୍ଠିତ ଗୋଟିପୁଅ ନାଟ୍ୟଦଳ ଦୀର୍ଘଦିନ ଧରି ଓଡ଼ିଶା ସରକାରଙ୍କ ଉଭୟ ସଙ୍ଗୀତ ନାଟକ ମହାବିଦ୍ୟାଳୟ ଏବଂ ସଂସ୍କୃତି ବିଭାଗ ତରଫରୁ ୧୯୬୪-୬୫ ମସିହା ଠାରୁ ଅନୁଦାନ ଲାଭ କରି ଆସୁଅଛି ।

ସ୍ୱର୍ଗତ ଶ୍ରୀ ପଣ୍ଡା ନିଜର ଦୀର୍ଘ ଜୀବନକାଳ ମଧ୍ୟରେ ଗୋଟିପୁଅ ନୃତ୍ୟଶୈଳୀରେ ଆଠୋଟି ପିଲଙ୍କୁ ସମ୍ପୂର୍ଣ୍ଣ ଶିକ୍ଷା ଦେଇ ଭବିଷ୍ୟତ ନିମନ୍ତେ ଅନ୍ତତଃ ଆଠୋଟି ଗୁରୁ ସୃଷ୍ଟି କରିଯାଇଛନ୍ତି । ତାଙ୍କର ଏହି ନୃତ୍ୟଶୈଳୀ ନିମନ୍ତେ ବିଶେଷ ଅବଦାନ ପାଇଁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ସ୍ୱର୍ଗତ ଅର୍ଜୁନ ପଣ୍ଡାଙ୍କୁ ୧୯୭୯-୮୦ ବର୍ଷରେ ସମ୍ମାନିତ ଏବଂ ସମ୍ବର୍ଦ୍ଧିତ କରିଅଛନ୍ତି ।

●



## ଶ୍ରୀ ମହାଦେବ ରାଉତ

ଡମ୍ବିଶପେଣା, ପୁରୀ

ଜନ୍ମ—୧୯୨୪, ଅଗଷ୍ଟ ୨୭

ଓଡ଼ିଶୀ ସଙ୍ଗୀତ ଜଗତର ଅନ୍ୟତମ ବିଶିଷ୍ଟ ଗୁରୁ ଶ୍ରୀ ମହାଦେବ ରାଉତଙ୍କ ଜନ୍ମ ୧୯୨୪ ମସିହା ଅଗଷ୍ଟ ମାସ ୨୭ ତାରିଖ ପୁରୀ ଜିଲ୍ଲାର ଡମ୍ବିଶପେଣା ଗ୍ରାମରେ। ତାଙ୍କ ପିତାଙ୍କ ନାମ ଲିଙ୍ଗରାଜ ରାଉତ ଏବଂ ମାତାଙ୍କ ନାମ ସୁଲୋଚନା ଦେବୀ । ପିଲାଟି ଦିନରୁ ନୃତ୍ୟ, ବାଦ୍ୟ ଓ ଗୀତ ପ୍ରତି ତାଙ୍କର ପ୍ରବଳ ଆଗ୍ରହ ଦେଖି ତାଙ୍କ ମାତା ତାଙ୍କୁ ନିଜ ଗ୍ରାମର ପ୍ରତିଭାବାନ୍ ନାଟ୍ୟାଚାର୍ଯ୍ୟ ୰ ଚନ୍ଦ୍ରଶେଖର ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ ଥିବା ଆଖଡ଼ାରେ ନୃତ୍ୟ ଶିକ୍ଷା ପାଇଁ ମାତ୍ର ଛଅ ବର୍ଷ ବୟସରେ ଛାଡ଼ି ଦେଇଥିଲେ । ପଣ୍ଡିତ ୰ ଚନ୍ଦ୍ରଶେଖର ପଟ୍ଟନାୟକଙ୍କ ମାର୍ଗଦର୍ଶନ ହିଁ ପରବର୍ତ୍ତୀ ସମୟରେ ଏହି ଶିଳ୍ପୀଙ୍କ କଳାମୟ ଜୀବନକୁ ସରସ ଓ କଳାମୟ କରିତୋଳିଛି । ଗୁରୁ ୰ ବାଞ୍ଛାନିଧି ପଟ୍ଟନାୟକଙ୍କ ନିକଟରୁ ନୃତ୍ୟ ଶିକ୍ଷା କରିବା ସହ ଗୁରୁ ୰ ମଣି ମହାପାତ୍ରଙ୍କ ନିକଟରୁ ପ୍ରାଚୀନ ଓଡ଼ିଶୀ ଶୈଳୀର ମର୍ଦ୍ଦଳ ବାଦନ ଶିକ୍ଷା କରିଥିଲେ । ପରେ ୧୯୫୦ ମସିହାରେ ସେ ପୁରୀର ପ୍ରସିଦ୍ଧ ପଖାଉଜ ବାଦକ ୰ ସିଂହାରୀ ଶ୍ୟାମସୁନ୍ଦର କରଙ୍କର ଶିଷ୍ୟତ୍ୱ ଗ୍ରହଣ କରି ପ୍ରାୟ ଦଶବର୍ଷ କାଳ ତାଙ୍କ ନିକଟରୁ ଶାସ୍ତ୍ରୀୟ ପଖାଉଜ ବାଦନ ଶିକ୍ଷା କରିଥିଲେ । ୧୯୫୩ ମସିହାରେ ତାଙ୍କ ଚେଷ୍ଟାରେ କଟକର 'ନେସ୍‌ନାଲ୍ ମିଉଜିକ୍ ଆସୋସିଏସନ୍' ପ୍ରତିଷ୍ଠିତ ହେଲା ଏବଂ ଶ୍ରୀ ରାଉତ ତହିଁରେ ଶିକ୍ଷକ ରହିଥିଲେ । ତତ୍ପରେ ସେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରୁ ସଙ୍ଗୀତରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ । ପରେ ପରେ ସେ 'କଳା ପରିଷଦ' ଗଞ୍ଜାମ, 'ସମ୍ବଲପୁର କଳା ପରିଷଦ', 'ଠାକୁର ବାବା' ଆଶ୍ରମ, କୋରାପୁଟ, 'ଭଞ୍ଜ କଳା କେନ୍ଦ୍ର,' 'କବିଚନ୍ଦ୍ର କଳାକେନ୍ଦ୍ର' ଓ 'ଓଡ଼ିଶୀ ଗବେଷଣା କେନ୍ଦ୍ର' ଭୁବନେଶ୍ୱର ଠାରେ ନୃତ୍ୟ ଓ ବାଦ୍ୟ ଶିକ୍ଷାଦାନ କରି ବହୁ ପ୍ରଶଂସାର ଅଧିକାରୀ ହୋଇଅଛନ୍ତି । ଏତଦ୍‌ବ୍ୟତୀତ ଶ୍ରୀ ରାଉତ ଆକାଶବାଣୀ, କଟକ ଏବଂ ଦୂରଦର୍ଶନ, କଟକରେ ଓଡ଼ିଶୀ ମର୍ଦ୍ଦଳ ବାଦନ ଶୈଳୀ ଦ୍ୱାରା ଖ୍ୟାତି ଲାଭ କରିଅଛନ୍ତି ।

ଶ୍ରୀ ରାଉତ ନିଜ ଜୀବନକାଳ ମଧ୍ୟରେ ଅଦ୍ୟାବଧି ବହୁ ନୃତ୍ୟନାଟିକାର ସଂଯୋଜନା କରି ଓଡ଼ିଶୀ ଜଗତରେ ନିଜର ସ୍ଥାନକୁ ସୁଦୃଢ଼ କରିପାରିଅଛନ୍ତି । ତାଙ୍କ ନିର୍ଦ୍ଦେଶିତ ଓ ପ୍ରଯୋଜିତ ନୃତ୍ୟମାନଙ୍କ ମଧ୍ୟରେ ମାନିନୀ, ଶରତରାସ, କୃଷ୍ଣ ଭକତା, କୋଣାର୍କ, ପଞ୍ଚ ପୁଷ୍ପ, ପଣସ୍ତ ବାଳୁଙ୍ଗା, ତମସ୍ୱିନୀ, କୁମାର ସମ୍ଭବ ଏବଂ ମିଶ୍ରଲଳିତ ଇତ୍ୟାଦି ଉଲ୍ଲେଖଯୋଗ୍ୟ ।

୧୯୭୨ ମସିହାଠାରୁ ଗୁରୁ ଶ୍ରୀ ରାଉତ ରାଉରକେଲାସ୍ଥିତ କବିଚନ୍ଦ୍ର କଳା କେନ୍ଦ୍ରରେ ମୁଖ୍ୟ ପ୍ରାଧ୍ୟାପକ ଭାବରେ ନିଜର ଏକକ ପ୍ରଚେଷ୍ଟାରେ ପଶ୍ଚିମ ଓଡ଼ିଶାରେ ଓଡ଼ିଶୀ ନୃତ୍ୟ ସଙ୍ଗୀତର ପ୍ରଚାର ଏବଂ ପ୍ରସାରରେ ଲାଗିଥିଲେ । ନୃତ୍ୟ ଏବଂ ପଖାଉଜ ବାଦନକୁ ସରଳ ଭାବରେ ଶିକ୍ଷା ଦେବାରେ ଶ୍ରୀଯୁକ୍ତ ରାଉତ ବିଶେଷ ଯୋଗ୍ୟତା ପ୍ରଦର୍ଶନ କରିଅଛନ୍ତି ।

ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତ ପ୍ରତି ତାଙ୍କର ଅବଦାନ ନିମନ୍ତେ ଗୁରୁ ଶ୍ରୀ ରାଉତ ଅନେକ ବାର ବିଭିନ୍ନ ଅନୁଷ୍ଠାନ ତରଫରୁ ସମ୍ମାନିତ ଏବଂ ପୁରସ୍କୃତ ହୋଇଅଛନ୍ତି । ୧୯୭୯-୮୦ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଶ୍ରୀଯୁକ୍ତ ରାଉତଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ଅଧୁନା ଗୁରୁ ଶ୍ରୀ ରାଉତ ଭାରତ ସରକାରଙ୍କ ନିକଟରୁ ମାସିକ ଭତ୍ତା ପାଇ ନିଜ ଗ୍ରାମରେ ଥିବା 'ଚନ୍ଦ୍ରଶେଖର ଗୋଟିପୁଅ କଳା ସଂସଦ'ରେ ଗୋଟିପୁଅ ନୃତ୍ୟ, ଓଡ଼ିଶୀ ମର୍ଦ୍ଦଳ ଏବଂ ଶାସ୍ତ୍ରୀୟ ପଖାଉଜ ବାଦନ, ନିଜର ଶିଷ୍ୟ ଶିଷ୍ୟାମାନଙ୍କୁ, ଶିକ୍ଷା ଦେଉଅଛନ୍ତି ।

ଓଡ଼ିଶୀ ନୃତ୍ୟରେ ବିଭିନ୍ନ ଶାସ୍ତ୍ରୀୟ ଅଙ୍ଗ ସବୁର ପ୍ରଦର୍ଶନର ବିଭାଗୀକରଣ କରିବାରେ ଗୁରୁ ଶ୍ରୀ ରାଉତ ଯେଉଁ ଉଚ୍ଚ ଶାସ୍ତ୍ରୀୟ ଜ୍ଞାନ ଓ ଅଧ୍ୟବସାୟର ପରାକାଷ୍ଠା ପ୍ରଦର୍ଶନ କରିଅଛନ୍ତି, ସେଇଥିପାଇଁ ତାଙ୍କର ନାମକୁ ବାଦ୍‌ଦେଲେ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତର ଜଗତ ଅପୂର୍ଣ୍ଣ ମନେହେବ ।

●

# ଶ୍ରୀ ବ୍ୟୋମକେଶ ତ୍ରିପାଠୀ

## ପୁରୀ ସହର

### ଜନ୍ମ—୧୯୨୯, ଅଗଷ୍ଟ ୩

ଓଡ଼ିଶା ରଙ୍ଗମଞ୍ଚ ଆନ୍ଦୋଳନର ଅନ୍ୟତମ ମହାରଥୀ ନାଟ୍ୟମଞ୍ଚଶିଳ୍ପୀ ଶ୍ରୀ ବ୍ୟୋମକେଶ ତ୍ରିପାଠୀ ୧୯୨୯ ମସିହା ଅଗଷ୍ଟ ମାସ ତୃତୀୟ ତାରିଖ ଦିନ ପୁରୀ ସହରରେ ଜନ୍ମଗ୍ରହଣ କରିଥିଲେ । ପ୍ରାରମ୍ଭିକ ଶିକ୍ଷା ସମାପ୍ତି ପରେ ଶ୍ରୀ ତ୍ରିପାଠୀ କଲିକତାର ବିଦ୍ୟାସାଗର କଲେଜରୁ ୧୯୫୦ ମସିହାରେ ବିଜ୍ଞାନରେ ସ୍ନାତକ (ବି.ଏସ୍.ସି.) ଡିଗ୍ରୀ ହାସଲ କରିବା ପରେ ପୁରୀ ସହରକୁ ଫେରି ଆସିଲେ । ନିଜର ଛାତ୍ର ଜୀବନରୁ ଶ୍ରୀ ତ୍ରିପାଠୀ ଗଳ୍ପ ଲେଖାଲେଖି କରିବା ଆରମ୍ଭ କରିଥିଲେ । ତାଙ୍କର ବହୁ ଲେଖା ୧୯୫୧ ଏବଂ ୧୯୫୨ ମସିହାରେ 'ଆସନ୍ତାକାଲି' ଏବଂ 'ସମାବେଶ'ରେ ପ୍ରକାଶ ପାଇଥିଲା । ନାଟ୍ୟ ଜଗତ ପ୍ରତି ତାଙ୍କର ଜନ୍ମଗତ ମୋହ ତାଙ୍କୁ ଦିଲ୍ଲୀର 'ଏସିଆନ୍ ଥିଏଟର ଇନ୍‌ଷ୍ଟିଚ୍ୟୁଟ୍' ମଧ୍ୟକୁ ଟାଣି ନେଇଥିଲା । ସେ ସେଠାରୁ ୧୯୫୯ରେ 'ନାଟକ ଡିପ୍ଲୋମା' ହାସଲ କରି ଫେରିବା ପରେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ରଙ୍ଗମଞ୍ଚରେ ଯୋଗଦାନ କଲେ ଏବଂ ସେଠାରେ ୧୯୬୪ ମସିହା ପର୍ଯ୍ୟନ୍ତ ଲେଖକ ଓ ଅଭିନେତା ରୂପେ କାର୍ଯ୍ୟ କରିଥିଲେ । ଏହି ସମୟରୁ ହିଁ ତାଙ୍କର ସୁଦୀର୍ଘ ନାଟ୍ୟଜୀବନ ଆରମ୍ଭ ହୋଇଥିଲା । ସେ ଜୀବନର ଭିନ୍ନଭିନ୍ନ ସମୟରେ ଓଡ଼ିଶାର ସବୁ ପେଶାଦାର ରଙ୍ଗମଞ୍ଚରେ ଅଭିନେତା, ନିର୍ଦ୍ଦେଶକ ଏବଂ ନାଟ୍ୟକାର ଭାବେ କାର୍ଯ୍ୟ କରିଛନ୍ତି । ଶ୍ରୀ ତ୍ରିପାଠୀ ୧୯୬୪ରୁ ୧୯୬୬ ପର୍ଯ୍ୟନ୍ତ 'ଜନତା ରଙ୍ଗମଞ୍ଚ' କଟକରେ, ୧୯୬୬ରୁ ୧୯୬୮ ପର୍ଯ୍ୟନ୍ତ 'କଳାଶ୍ରୀ ଥିଏଟର', କଟକରେ, ପୁନଶ୍ଚ ୧୯୬୮ରୁ ୧୯୭୦ ପର୍ଯ୍ୟନ୍ତ ଜନତା ରଙ୍ଗମଞ୍ଚରେ ଏବଂ ୧୯୭୦ ମସିହା ଠାରୁ ଅଦ୍ୟାବଧି ଅନ୍ନପୂର୍ଣ୍ଣା ଏ'ଗ୍ରୁପ୍, ପୁରୀ ରଙ୍ଗମଞ୍ଚରେ କାର୍ଯ୍ୟରତ । ଆଜି ସୁଦ୍ଧା ଶ୍ରୀ ତ୍ରିପାଠୀ ଅନ୍ୟୂନ କୋଡ଼ିଏଟି ପେଶାଦାର ନାଟକରେ ସଫଳ ନିର୍ଦ୍ଦେଶନା ଦେବା ବ୍ୟତୀତ ପ୍ରାୟ ଦଶହଜାର ରାତି ଅଭିନୟ କରିଛନ୍ତି । ଏତଦ୍‌ବ୍ୟତୀତ ଜଣେ ନାଟ୍ୟକାର ଭାବରେ ସେ ଅନେକ ନାଟକର ସ୍ରଷ୍ଟା । ତନ୍ମଧ୍ୟରେ ନାଟକ 'ଏକ ଦୁଇ ତିନି', 'ରାଜମୁକୁଟ' 'କଂସା କବାଟ', 'ସିଂହଦ୍ୱାର', 'ଜାଗରଣ', 'ଚୋରାକାନିଆଁ', 'ସୁନା ଫସଲ', 'ଅଖଣ୍ଡ ଜ୍ୟୋତି', 'ମାଟିର ସ୍ୱର୍ଗ', 'ହେମ ହରିଣୀ', 'ଗୋପନ କଥା', ଶ୍ରୀକୃଷ୍ଣ ଲୀଳା', 'ସତୀ ପରୀକ୍ଷା', 'ମୌନାବତୀ', 'ଉଲ୍‌କା' ଓ 'ସୁନା ଟିକଲି' ତାଙ୍କଦ୍ୱାରା ଲିଖିତ ଓ ଅଭିନୀତ ହୋଇଥିଲା । ୧୯୫୫ରେ ଲିଖିତ ତାଙ୍କର 'ବିଷର ମଣିଷ' ନାମକ ଏକ

ଉପନ୍ୟାସ ମଧ୍ୟ ରହିଅଛି । ୧୯୫୯ ମସିହାରେ ଅଭିନୀତ ନାଟକ 'ଏକ ଦୁଇ ତିନି' ତାଙ୍କର ପ୍ରଥମ ନାଟକ ।

ଜଣେ ସଫଳ ପତ୍ରିକା ସମ୍ପାଦକ ଭାବରେ ଶ୍ରୀ ତ୍ରିପାଠୀ ୧୯୫୬ ଠାରୁ ୧୯୫୭ ପର୍ଯ୍ୟନ୍ତ 'ତରଙ୍ଗ' ପତ୍ରିକା ( କଲିକତା ) ଏବଂ ୧୯୬୦ ଠାରୁ ୧୯୬୭ ପର୍ଯ୍ୟନ୍ତ ପୁରୀରୁ ପ୍ରକାଶିତ 'କଳାକାର' ପତ୍ରିକାର ସମ୍ପାଦକ ଭାବେ ମଧ୍ୟ କାର୍ଯ୍ୟ କରିଥିଲେ ।

ବହୁମୁଖୀ ପ୍ରତିଭାର ସମାହାର ଏହି ପେଶାଦାର କଳାକାରଙ୍କର କାର୍ଯ୍ୟକଳାପର ପରିସର ସମ୍ପ୍ରତି ଓଡ଼ିଆ ଚଳଚ୍ଚିତ୍ର ଏବଂ ଆକାଶବାଣୀ କାର୍ଯ୍ୟକ୍ରମ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଛି । ତାଙ୍କର ଆକାଶବାଣୀ ନାଟକ ମଧ୍ୟରେ 'କୋଦାର ଗୌରୀ', 'ଚକ୍ର ବିଜୟ' ଏବଂ 'ଏଇ ମୋର ପ୍ରଶ୍ନ' ନାଟକମାନ ଆକାଶବାଣୀ କଲିକତାର ଓଡ଼ିଆ କାର୍ଯ୍ୟକ୍ରମରେ ପରିବେଷିତ । ନିଜ ଜୀବନକାଳ ମଧ୍ୟରେ ଅଦ୍ୟାବଧି ସେ ପାଞ୍ଚଗୋଟି ଚଳଚ୍ଚିତ୍ର ନିର୍ଦ୍ଦେଶନା ଦେଇଛନ୍ତି । ଦଶଗୋଟି ଚଳଚ୍ଚିତ୍ରର ଚିତ୍ରନାଟ୍ୟ ଲେଖିଛନ୍ତି ଏବଂ ପଚିଶଗୋଟି ଚଳଚ୍ଚିତ୍ରରେ ବିଭିନ୍ନ ଭୂମିକାରେ ଅତ୍ୟନ୍ତ ଉଚ୍ଚକୋଟୀର ଅଭିନୟ କରି ବହୁ ପ୍ରଶଂସା ଲାଭ କରିଛନ୍ତି । ତାଙ୍କ ଅଭିନୀତ ଚଳଚ୍ଚିତ୍ରମାନଙ୍କ ମଧ୍ୟରୁ 'ଭାଇ ଭାଉଜ', 'ଘର ସଂସାର', 'ମମତା', ମୁକ୍ତି ଏବଂ ଦେବଯାନୀ ଚଳଚ୍ଚିତ୍ରଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ ।

ନିଜର କଳାର ପାରଦର୍ଶିତା ନିମନ୍ତେ ଶ୍ରୀ ତ୍ରିପାଠୀ ନିଜ ଜୀବନରେ ବହୁ ପ୍ରଶଂସା, ପୁରସ୍କାର ଏବଂ ସମ୍ମାନର ଅଧିକାରୀ ହୋଇଅଛନ୍ତି । ସେ ସବୁ ମଧ୍ୟରେ ୧୯୬୧ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ 'ବିଷୁବମିଳନ ପୁରସ୍କାର', ୧୯୬୩ ମସିହାରେ କେନ୍ଦ୍ର ସରକାରଙ୍କ ନାଟକ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର, ୧୯୬୪ ମସିହାରେ 'ନାଟ୍ୟ ସଞ୍ଜିବନୀ' ବ୍ରହ୍ମପୁର, ୧୯୬୫ ମସିହାରେ ସରକାରଙ୍କ ସଂସ୍କୃତି ବିଭାଗ ତରଫରୁ ଶ୍ରେଷ୍ଠ ଚଳଚ୍ଚିତ୍ର ନିର୍ଦ୍ଦେଶକ ପୁରସ୍କାର, ଚଳଚ୍ଚିତ୍ର ସାମ୍ବାଦିକସଂଘ ପୁରସ୍କାର, ୧୯୯୦ରେ ଓଡ଼ିଶା ପାଠକ ସଂସଦ 'ଶ୍ରୀ କ୍ଷେତ୍ର ଶ୍ରୀ' ପୁରସ୍କାର ଏବଂ ପୁରୀର ନିମ୍ବୁ ଉତ୍ସବ ପୁରସ୍କାର ଲାଭ କରିବାର ଗୌରବ ଅର୍ଜନ କରିଛନ୍ତି ।

ଓଡ଼ିଶା ପେଶାଦାର ରଙ୍ଗମଞ୍ଚ ଏବଂ ନାଟ୍ୟକଳା ପାଇଁ ତାଙ୍କର କୃତିତ୍ୱପୂର୍ଣ୍ଣ କାର୍ଯ୍ୟ ନିମନ୍ତେ ୧୯୭୯-୮୦ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି । ଓଡ଼ିଶାର ରଙ୍ଗମଞ୍ଚରେ ଆଧୁନିକ ଆଲୋକସଜ୍ଜା ଏବଂ ମଂଚମାୟା ସୃଷ୍ଟିକାରୀ ଭାବରେ ଶ୍ରୀ ବ୍ୟୋମକେଶ ତ୍ରିପାଠୀ ଓଡ଼ିଶାବାସୀଙ୍କ ମନ ମଧ୍ୟରେ ସବୁଦିନେ ବଞ୍ଚି ରହିଥିବେ ।

●

# ସ୍ୱର୍ଗତ ନିରଞ୍ଜନ କର

## ଦେଶପୁର, କଟକ

### ଜନ୍ମ—୧୯୧୦

ଓଡ଼ିଶାର ଅନ୍ୟତମ ଶ୍ରେଷ୍ଠ ଲୋକକଳା ପାଲାଗାୟନର ମୁଖ୍ୟପୁରୋଧା ଗାୟକ ଭାସ୍କର ୰ ନିରଞ୍ଜନ କର କଟକ ଜିଲ୍ଲା ଅନ୍ତର୍ଗତ କେନ୍ଦ୍ରାପଡ଼ା ସହର ନିକଟସ୍ଥ ଦେଶପୁର ଗ୍ରାମରେ ୧୯୧୦ ମସିହାରେ ଜନ୍ମଗ୍ରହଣ କରିଥିଲେ । ବାଣୀଙ୍କର ବରପୁତ୍ର ଲକ୍ଷ୍ମୀଙ୍କ କୃପାରୁ ବଞ୍ଚିତ ହେବାର ଇତିହାସ ଏ ମାଟିରେ କିଛି ନୂଆ ନୁହେଁ । ୰ କରଙ୍କ ଜୀବନରେ ଏହି ଇତିହାସର ପୁନରାବୃତ୍ତି ଘଟିଥିଲା । ଉତ୍କଟ ଦାରିଦ୍ର୍ୟ ହେତୁ ସାଧାରଣ ଶିକ୍ଷାରୁ ବଞ୍ଚିତ ହେବାପରେ ଜନ୍ମଗତ ପ୍ରତିଭା ଓ କଳା ପ୍ରତି ଅନୁରକ୍ତିକୁ ପାଥେୟ କରି ସେ ନିଜକୁ ଗୀତାଭିନୟ ଦଳରେ ମିଶାଇ ଦେଲେ । ମାତ୍ର ପରିବାରର ଆର୍ଥିକ ଦୂରବସ୍ଥାକୁ ଦୂର କରିବା ନିମନ୍ତେ ପନ୍ଦର ବର୍ଷ ବୟସରୁ ପଚିଶ ବର୍ଷ ବୟସ ପର୍ଯ୍ୟନ୍ତ ସେ କଲିକତାରେ ଶ୍ରମିକ ଭାବରେ କାମ କରିବା ସମୟରେ ପାଲା ପରିବେଷଣ ଶିକ୍ଷା କରିଥିଲେ । ତତ୍କାଳୀନ ବିଶିଷ୍ଟ ପାଲା ଗାୟକ ୰ ଦୁର୍ଯ୍ୟୋଧନ ପଣ୍ଡାଙ୍କଠାରୁ ପ୍ରେରଣା ଓ ଶିକ୍ଷା ଲାଭକରି ସେ ଓଡ଼ିଶାକୁ ଫେରି ପାଲାଗାୟନ ଆରମ୍ଭ କରିବା ସଙ୍ଗେ ସଙ୍ଗେ ନିଜର ପ୍ରଚେଷ୍ଟାରେ ସଂସ୍କୃତ ଶବ୍ଦକୋଷ, ବ୍ୟାକରଣ, ଉଦାହରଣ ଶ୍ଳୋକ ଏବଂ କାବ୍ୟ ଶିକ୍ଷା କରିଥିଲେ ।

ତାଙ୍କ ଜୀବନରେ ପ୍ରଥମ ବଡ଼ ସଫଳତା ଆସିଥିଲା ୧୯୩୯ ମସିହାରେ । ସେହି ବର୍ଷ ସେ ଆଠଗଡ଼ ରାଜଦରବାରରେ ଏକାଧିକ୍ରମେ ଅଠରକାଳ ରାତି ପାଲା ଗାୟନ କରି ରାଜ-ଦମ୍ପତିଙ୍କର ଶ୍ରଦ୍ଧାଭାଜନ ହେବା ସଙ୍ଗେ ସଙ୍ଗେ ପ୍ରଶଂସାପତ୍ର, ସୁବର୍ଣ୍ଣବଳୟ, ପଦକ ଏବଂ ପାଟଯୋଡ଼ ଇତ୍ୟାଦି ଲାଭ କରିଥିଲେ । ପରେ ଆଳି ରାଜାଙ୍କ ନିକଟରୁ ସ୍ୱର୍ଣ୍ଣବଳୟ, ପଦକ ଏବଂ କନିକା ରାଜାଙ୍କ ନିକଟରୁ ସ୍ୱର୍ଣ୍ଣପଦକ ଏବଂ ପ୍ରଶଂସାପତ୍ର ଲାଭ କରିବାର ସୌଭାଗ୍ୟ ତାଙ୍କର ହୋଇଥିଲା ।

୧୯୪୯ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କ ନିକଟରୁ 'ଗାୟକ ଶିରୋମଣି' ଏବଂ ୧୯୬୮ ମସିହାରେ ତତ୍କାଳୀନ ଓଡ଼ିଶା ଉଚ୍ଚଶିକ୍ଷା ନିର୍ଦ୍ଦେଶକ ପ୍ରଫେସର ରମାନାଥ ମହାନ୍ତି ଏବଂ ରେଭେନ୍ସା ମହାବିଦ୍ୟାଳୟର ଅଧ୍ୟକ୍ଷ ପ୍ରଫେସର୍ ଦେବେନ୍ଦ୍ର ଚନ୍ଦ୍ର ମିଶ୍ରଙ୍କ ନିକଟରୁ 'ଗାୟକ ଭାସ୍କର' ଉପାଧି ପ୍ରାପ୍ତ ହୋଇଥିଲେ । ୰ କର ଓଡ଼ିଶାର ଅନେକ ଖ୍ୟାତନାମା ମନୀଷି, ରାଜା ଓ ଜମିଦାରମାନଙ୍କ ନିକଟରୁ ପ୍ରଶଂସା ପତ୍ର ଏବଂ ଉପାୟନ ଲାଭ କରିଅଛନ୍ତି । ସମ୍ବଲପୁରଠାରେ ହୀରାକୁଦ ବନ୍ଧର ଉଦ୍‌ଘାଟନ ଉତ୍ସବରେ

ନିଜର କଳା ପ୍ରଦର୍ଶନ ନିମନ୍ତେ ଓଡ଼ିଶା ସରକାରଙ୍କ ନିକଟରୁ ସ୍ୱତନ୍ତ୍ର ପୁରସ୍କାର ମଧ୍ୟ ଲାଭ କରିଥିଲେ ।

ଓଡ଼ିଶା ବାହାରେ ବିଶେଷ କରି ବିହାର ଓ ପଶ୍ଚିମବଙ୍ଗରେ ଓଡ଼ିଆ ସାହିତ୍ୟକୁ ପାଲା ମାଧ୍ୟମରେ ହିନ୍ଦୀ ଓ ବଙ୍ଗଳା ଭାଷାରେ ବ୍ୟାଖ୍ୟାକରି ପରିବେଷଣ କରିବାରେ ସେ ଥିଲେ ସର୍ବପ୍ରଥମ ଓଡ଼ିଆ ।

ପାଲା ପରିବେଷଣ ବ୍ୟତୀତ, ପାଲା ଉପଯୋଗୀ କାବ୍ୟ ଓ ସଙ୍ଗୀତ ରଚନା କରିବା କ୍ଷେତ୍ରରେ ଶ୍ରୀ କର ସିଦ୍ଧହସ୍ତ ଥିଲେ । ତାଙ୍କ ରଚିତ ଅନେକ କାବ୍ୟକୃତି ସବୁ ଆଜି ବି ବହୁ ପାଲଗାୟକମାନଙ୍କ କଣ୍ଠରେ ଝଙ୍କୃତ ହେଉଛି । ଏହିସବୁ କାବ୍ୟକୃତିର ସାହିତ୍ୟିକ ମୂଲ୍ୟବୋଧ ଓଡ଼ିଶାର ବିଜ୍ଞ ସାହିତ୍ୟିକମାନଙ୍କ ଦ୍ୱାରା ଆଦୃତ ଏବଂ ଉଚ୍ଚ ପ୍ରଶଂସିତ । ନିଜର ଜୀବନକାଳ ମଧ୍ୟରେ ସେ ପ୍ରାୟ ତିରିଶ ଗୋଟି କାବ୍ୟକୃତି ରଚନା କରିଥିଲେ ମଧ୍ୟ ତନ୍ମଧ୍ୟରୁ ମାତ୍ର ଆଠଖଣ୍ଡ ପ୍ରକାଶିତ ।

ସ୍ୱର୍ଗତ କର ୧୯୫୭ ମସିହାଠାରୁ ୧୯୭୭ ମସିହା ପର୍ଯ୍ୟନ୍ତ 'ନିଖିଳ ଉତ୍କଳ ପାଲା ଗାୟକ ସଂଘ'ର ସଭାପତି ଥିଲେ ଏବଂ ପରେ 'ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଲା ଗାୟକ ପରିଷଦ'ର ଉପଦେଷ୍ଟା ଭାବରେ ଦାୟିତ୍ୱ ବହନ କରିଥିଲେ ।

ଓଡ଼ିଶାର ପ୍ରାଚୀନ ସାହିତ୍ୟର ପୁନୋରୁଦ୍ଧାର ତଥା ପରିବେଷଣରେ ନୂତନତ୍ୱ ନିମନ୍ତେ ୧୯୭୯-୮୦ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ତାଙ୍କୁ ସମ୍ବର୍ଦ୍ଧିତ, ସମ୍ମାନିତ ଏବଂ ପୁରସ୍କୃତ କରାଯାଇଛି । ତାଙ୍କର ଶେଷ ଜୀବନ ସେ ନିଜ ଗ୍ରାମରେ ହିଁ କଟାଇଥିଲେ । ଓଡ଼ିଶାର ପାଲାଗାୟନ କଳା ବଞ୍ଚିରହିଥିବା ପର୍ଯ୍ୟନ୍ତ ସମସ୍ତ ଓଡ଼ିଶାବାସୀ ଶ୍ରୀ ନିରଞ୍ଜନ କରଙ୍କ ନାମକୁ ଶ୍ରଦ୍ଧା ଓ ଭକ୍ତି ସହ ମନେପକାଉଥିବେ ।



## ଶ୍ରୀ ମାର୍କଣ୍ଡେୟ ମହାପାତ୍ର ଶର୍ମା

ପୁରୀସହର, ପୁରୀ

ଜନ୍ମ ୧୯୧୫, ଜୁଲାଇ ୧୮

ଓଡ଼ିଶୀ ସଙ୍ଗୀତ ଜଗତର ଅନ୍ୟତମ କୃତୀ ଶିଳ୍ପୀ ସଙ୍ଗୀତ ପ୍ରଭାକର ଶ୍ରୀ ମାର୍କଣ୍ଡେୟ ମହାପାତ୍ର ଶର୍ମା । ୧୯୧୫ ମସିହା ଜୁଲାଇ ୧୮ ତାରିଖ ଦିନ ପୁରୀ ସହରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ପଣ୍ଡିତ ନାରାୟଣ ମହାପାତ୍ର ଶର୍ମା ଏବଂ ମାତାଙ୍କ ନାମ ଥିଲା ଶ୍ରୀମତୀ ଲକ୍ଷ୍ମୀ ଦେବୀ । ୧୯୩୨ ମସିହାରେ ଶ୍ରୀ ମହାପାତ୍ର ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେଇ ପ୍ରବେଶିକା ପରୀକ୍ଷାରେ କୃତକାର୍ଯ୍ୟ ହେବାପରେ ଆଉ ଆଗକୁ ପଢ଼ିପାରି ନଥିଲେ । ଆର୍ଥିକ ଦୁରବସ୍ଥା କାରଣରୁ ସେ ବହୁ କମ୍ ବୟସରେ ୧୯୪୨ରୁ ସରକାରୀ ଚାକିରୀକୁ ନିଜର ଜୀବିକା ଭାବରେ ଗ୍ରହଣ କରି ନେଇଥିଲେ ମଧ୍ୟ ସଙ୍ଗୀତ ଶିକ୍ଷାକୁ ସର୍ବଦା ଗୁରୁତ୍ୱ ଦେଇଥିଲେ । ତାଙ୍କର ଚାକିରୀ ଜୀବନ ମଧ୍ୟରେ ସେ ସିଭିଲ୍ ଡିଫେନ୍ସ, ଯୋଗାଣ ବିଭାଗ, କୃଷି ବିଭାଗ, ଜିଲ୍ଲାବୋର୍ଡ଼, ଏବଂ ପୁରୀର ସାମନ୍ତ ଚନ୍ଦ୍ର ଶେଖର କଲେଜରେ କାର୍ଯ୍ୟ କରିଥିଲେ ।

ମାତ୍ର ପନ୍ଦର ବର୍ଷ ବୟସରୁ ତାଙ୍କର ସଙ୍ଗୀତ ଶିକ୍ଷା ପ୍ରଥମେ ତାଙ୍କର ପିତା ଏବଂ କକେଇଙ୍କଠାରୁ ଆରମ୍ଭ ହୋଇଥିଲେ ମଧ୍ୟ ଦୁର୍ଗତି ସିଂହାରୀ ଶ୍ୟାମ ସୁନ୍ଦର କରଙ୍କ ନିକଟରୁ ସେ ଓଡ଼ିଶୀ, ହିନ୍ଦୁସ୍ତାନୀ ଶାସ୍ତ୍ରୀୟ ସଙ୍ଗୀତ ଏବଂ ପଖାଉଜ ବାଦନ ୧୯୩୨ ମସିହାଠାରୁ ଶିକ୍ଷା କରିଥିଲେ । ପରବର୍ତ୍ତୀ ସମୟରେ ୧୯୫୮ ମସିହାରେ ଅଖିଳ ଭାରତୀୟ ଗନ୍ଧର୍ବମଣ୍ଡଳ ପୁନେରୁ 'ସିନିୟର ଡିପ୍ଲୋମା' ଲାଭ କରିବା ସହ ୧୯୫୧ ମସିହାରେ ପ୍ରୟାଗ ସଙ୍ଗୀତ ସମିତି, ଆହ୍ଲାବାଦ ଠାରୁ 'ସଙ୍ଗୀତ ପ୍ରଭାକର ଡିଗ୍ରୀ ( B.Mus. ) ଲାଭ କରିଥିଲେ । ସେ ପୁରୀର 'ସଙ୍ଗୀତ କଳା ପ୍ରତିଷ୍ଠାନ'ରେ ଓ ୧୯୫୮ ରୁ ୧୯୬୪ ପର୍ଯ୍ୟନ୍ତ ଓଡ଼ିଶା ସଙ୍ଗୀତ ପରିଷଦ ପୁରୀଠାରେ ସଙ୍ଗୀତ ଶିକ୍ଷକ ଭାବେ କାର୍ଯ୍ୟ କରିଥିଲେ । ୧୯୬୪ ରୁ ୧୯୭୭ ପର୍ଯ୍ୟନ୍ତ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର ଓଡ଼ିଶୀ ସଙ୍ଗୀତ ବିଭାଗରେ

ଅଧ୍ୟାପନା କାର୍ଯ୍ୟ ସୁରୁଚିପୂର୍ଣ୍ଣ ନିର୍ବାହ କରିଥିଲେ । ଆକାଶବାଣୀ କଟକ କେନ୍ଦ୍ରରେ ଓଡ଼ିଶୀ, ଚମ୍ପୂ, ଛାନ୍ଦ, ଜଣାଣ ଓ ଭଜନ ଆଦି ଅଦ୍ୟାବଧି ପରିବେଷଣ କରିବା ସଂଗେ ଆକାଶବାଣୀର 'ଓଡ଼ିଶୀ ସଙ୍ଗୀତ ଶିକ୍ଷା କାର୍ଯ୍ୟକ୍ରମ' ରେ ଏବେ ମଧ୍ୟ କର୍ମରତ । ଓଡ଼ିଶୀ ରିସର୍ଚ୍ଚ ସେଣ୍ଟର ଭୁବନେଶ୍ୱରରେ କୁଶଳୀ ଉପଦେଷ୍ଟା ଭାବରେ ଏବଂ ସାମୟିକ ପରିଦର୍ଶକ ଅଧ୍ୟାପକ ଭାବରେ ସେ ଦେଶର ବିଭିନ୍ନ ସଙ୍ଗୀତ ସଂସ୍ଥା ସହ ବିଶେଷ ଜଡ଼ିତ । ଏତଦ୍‌ବ୍ୟତୀତ ପ୍ରାଚୀନ କଳାକେନ୍ଦ୍ର, ଚଣ୍ଡୀଗଡ଼ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ପ୍ରବନ୍ଧ ତଥା ପରୀକ୍ଷକ ଓ ପ୍ରଶ୍ନକର୍ତ୍ତା ଭାବେ କାର୍ଯ୍ୟ କରିବା ସହ ଓଡ଼ିଶୀ ସଙ୍ଗୀତ ବିଶେଷଜ୍ଞ ଭାବରେ ଓଡ଼ିଶାର ବିଭିନ୍ନ ଅନୁଷ୍ଠାନରେ ପରୀକ୍ଷକର କାର୍ଯ୍ୟଭାର ମଧ୍ୟ ତାଙ୍କୁ ତୁଲାଇବାକୁ ପଡ଼ିଥାଏ । ଅଧୁନା ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ସଙ୍ଗୀତ ପଦ୍ଧତି ନିର୍ଦ୍ଧାରଣ ସମିତିର ସେ ଅନ୍ୟତମ ବିଶିଷ୍ଟ ସଦସ୍ୟ ଅଟନ୍ତି । ଶ୍ରୀ ମହାପାତ୍ର ଦୂରଦର୍ଶନ, କଟକର ମଧ୍ୟ ଜଣେ ସ୍ୱୀକୃତ କଳାକାର ଏବଂ ଅଧୁନା ପୁରୀର ଜୟଦେବ କଲ୍‌ଚରାଲ୍ ଏକାଡେମୀର ଅବୈତନିକ ଅଧ୍ୟକ୍ଷ ରୂପେ ଓଡ଼ିଶୀ ସଙ୍ଗୀତ ଧାରାର ପ୍ରଚାର ଏବଂ ପ୍ରସାରରେ ବ୍ୟସ୍ତ ।

ନିଜ ଜୀବନ କାଳ ମଧ୍ୟରେ ଶ୍ରୀ ମହାପାତ୍ର ନିଜର କୃତି ପାଇଁ ବିଭିନ୍ନ ସମୟରେ ବହୁଭାବରେ ସମ୍ମାନିତ ହୋଇଅଛନ୍ତି । ୧୯୮୦ ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ସମ୍ମାନ ଓ ପୁରସ୍କାର, ୧୯୮୬ ରେ 'ପ୍ରାଚୀନ କଳାକେନ୍ଦ୍ର' ଚଣ୍ଡୀଗଡ଼ଙ୍କ ଠାରୁ 'ସଙ୍ଗୀତ ନାୟକ' ଉପାଧି, ୧୯୮୩ ରେ 'ଶ୍ରୀକ୍ଷେତ୍ର କଳା ପ୍ରକାଶିକା' ପୁରୀଙ୍କ ତରଫରୁ 'ସଙ୍ଗୀତଭାସ୍କର' ଉପାଧି ଲାଭକରିବା ସହ 'କଳିଙ୍ଗ ଭାରତୀ ଭକ୍ତ ସାହିତ୍ୟ ସମିତି ପୁରସ୍କାର ଲାଭ କରିଥିଲେ । ପୁନଶ୍ଚ ୧୯୮୮ ରେ ଭୁବନେଶ୍ୱରର 'ଭାରତୀୟ ଧାତୁ ସାଧାରଣ ଦାତବ୍ୟ ପ୍ରତିଷ୍ଠାନ' ତରଫରୁ 'ଶାରଳା ପୁରସ୍କାର, ଏବଂ ୧୯୯୧ ରେ 'ଓଡ଼ିଶା ରାଜ୍ୟ ସାଂସ୍କୃତିକ ସଭା' ତରଫରୁ ରାଜ୍ୟପାଳଙ୍କ ତାମ୍ରଫଳକ ପ୍ରାପ୍ତ ହୋଇଥିଲେ ।

ନିଜର ଦୀର୍ଘ ଜୀବନ ମଧ୍ୟରେ ଶ୍ରୀ ମହାପାତ୍ର ଓଡ଼ିଶୀ ସଙ୍ଗୀତ ଉପରେ ବିଭିନ୍ନ ସନ୍ଦର୍ଭମାନ ଲେଖିବା ସହ 'ସଙ୍ଗୀତ ମାର୍କଣ୍ଡେୟ ଓଡ଼ିଶୀ ରାଗ ଗାୟନ ପଦ୍ଧତି' ଏବଂ 'ଭାରତୀୟ ସଙ୍ଗୀତ ଶାସ୍ତ୍ର ଦର୍ଶନ' ନାମରେ ଦୁଇଗୋଟି ଅତ୍ୟନ୍ତ ଉପାଦେୟ ସଙ୍ଗୀତ ଶାସ୍ତ୍ର ରଚନା କରିଅଛନ୍ତି ।

ଓଡ଼ିଶୀ ସଙ୍ଗୀତ ଆକାଶର ଏହି ଉଜ୍ଜ୍ୱଳ ଭାସ୍କର ଆହୁରି ଅନେକ ଦିନ ଓଡ଼ିଶାର ନବୀନ କଳାକାରମାନଙ୍କୁ ସୁଗମ ସାଧନା ପଥର ସନ୍ଧାନ ଏଇମିତି ଦେଇ ଚାଲିଥିବେ, ଏ ବିଶ୍ୱାସ ଆମ ସମସ୍ତଙ୍କର ରହିଛି ।

●

# ସ୍ୱର୍ଗତ ଉପେନ୍ଦ୍ର ତ୍ରିପାଠୀ
## ବିଜୟପୁରନଗର, କଟକ

(୧୮୯୦—୧୯୮୦)

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେଉଁ କେତେଜଣ କଣ୍ଠଶିଳ୍ପୀ ସ୍ୱୀୟ ପ୍ରତିଭା ବଳରେ ଉତ୍କଳୀୟ ସଙ୍ଗୀତକୁ ନୂତନ ଜୀବନ ଦେଇଥିଲେ ସେମାନଙ୍କ ମଧ୍ୟରେ ° ଉପେନ୍ଦ୍ର ତ୍ରିପାଠୀଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ୧୮୯୦ ମସିହା ଡିସେମ୍ବର ମାସ ଦୁଇ ତାରିଖ ଦିନ କଟକ ଜିଲ୍ଲାର ମହାକାଳପଡ଼ା ଥାନା ଅନ୍ତର୍ଗତ ବିଜୟପୁରନଗର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲ ° ଦଯ୍ୱାନିଧି ତ୍ରିପାଠୀ । ବାଲ୍ୟଶିକ୍ଷା ଆରମ୍ଭ କରି ସେ ନିଜ ଗ୍ରାମ ଚଟଶାଳୀ ପାଠ ଶେଷ କରି କେନ୍ଦ୍ରାପଡ଼ାର ° ଉମାନାଥ ମିଶ୍ରଙ୍କ ସଂସ୍କୃତ ଟୋଲରେ ସଂସ୍କୃତ ଅଧ୍ୟୟନ କରିଥିଲେ । ଏହି ସମୟରେ ବାଲ୍ୟବିବାହ ପ୍ରଥା ଅନୁଯାୟୀ ତାଙ୍କର ବିବାହ ମଧ୍ୟ ସମ୍ପନ୍ନ ହୋଇଥିଲା । ମାତ୍ର ତାଙ୍କର ଈଶ୍ୱରାଭିଳାଷୀ ମୁକ୍ତ ଆତ୍ମା ତାଙ୍କୁ ଘରେ ରହିବାକୁ ଦେଲାନି । ସଙ୍ଗୀତ ଶିକ୍ଷା କରିବା ମନ ନେଇ ସେ ୧୯୧୬ରେ ଗୃହ ତ୍ୟାଗ କରି ବହୁ ସ୍ଥାନ ବୁଲିଥିଲେ । ପରେ ଗୃହକୁ ପ୍ରତ୍ୟାବର୍ତ୍ତନ କରି ଆୟୁର୍ବେଦୀୟ ଔଷଧ ପ୍ରସ୍ତୁତ କରି ନିଜର ଗୁଜୁରାଣ ମେଣ୍ଟାଉଥିଲେ । ୧୯୨୪ରେ ତାଙ୍କ ନିଜ ଗ୍ରାମ ବିଜୟପୁରନଗରରେ ତତ୍କାଳୀନ ଜିଲ୍ଲାବୋର୍ଡ଼ ଦ୍ୱାରା ଖୋଲାଯାଇଥିବା ଏକ ଆୟୁର୍ବେଦ ଔଷଧାଳୟରେ କମ୍ପାଉଣ୍ଡର ଭାବେ କାର୍ଯ୍ୟ କରିଥିଲେ । ୧୯୩୦ରେ ନିଜ ପିତାଙ୍କ ମୃତ୍ୟୁ ପରେ ସେ ପୁନର୍ବାର ଦୀର୍ଘଦିନ ସାରା ଭାରତର ବହୁଆଡ଼ ବୁଲି ସଙ୍ଗୀତ ଶିକ୍ଷା ଓ ଚର୍ଚ୍ଚାରେ ସମୟ କଟାଇ କଟକ ଫେରିଆସିଲେ ଓ ବାଲିଅନ୍ତା ଜମିଦାରଙ୍କ ନିକଟରେ ରହି ସଙ୍ଗୀତ ଚର୍ଚ୍ଚା କରୁଥିଲେ । ଓଡ଼ିଶୀ ସଙ୍ଗୀତ ଜଗତର ବରିମଲ୍ଲୀ ଲୋକଲୋଚନକୁ ଆସିଲେ ପ୍ରଥମ କରି ଆୟୋଜିତ ଉତ୍କଳ ସଙ୍ଗୀତ ସମ୍ମିଳନୀରେ ଭାଗ ନେଇ । ସେହି ସମ୍ମିଳନୀରେ ତାଙ୍କର ସ୍ୱରଲାଳିତ୍ୟ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଥିଲା ।

ସେହି ସମୟକୁ କଟକ ଆକାଶବାଣୀ ପ୍ରତିଷ୍ଠିତ ହୋଇ ନ ଥିବାରୁ ଶ୍ରୀ ତ୍ରିପାଠୀ ଆକାଶବାଣୀର ସ୍ୱୀକୃତ କଳାକାର ଭାବରେ ଦିଲ୍ଲୀ ଏବଂ କଲିକତା ଆକାଶବାଣୀର କାର୍ଯ୍ୟକ୍ରମରେ ଭାଗ ନେଉଥିଲେ ।

ଜଣେ ପ୍ରତିଷ୍ଠିତ ଗାୟକ ଭାବରେ ° ତ୍ରିପାଠୀ ଜୀବନରେ ଓଡ଼ିଶା ବାହାରେ ବହୁ ପ୍ରଶଂସା ଓ ସମ୍ମାନ ଲାଭ କରିଥିଲେ । ୧୯୮୦-୮୧ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ° ତ୍ରିପାଠୀଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଥିଲେ । ୧୯୮୦ ମସିହା ଡିସେମ୍ବର ତିନି ତାରିଖ ଦିନ ନବେ ବର୍ଷ ବୟସରେ ତାଙ୍କର ମହାପ୍ରସ୍ଥାନ ଘଟିଲା ।

●

# ଶ୍ରୀମତୀ ପ୍ରିୟମ୍ବଦା ମହାନ୍ତି

### କଟକ



ଓଡ଼ିଶାର ସମସାମୟିକ ଓଡ଼ିଶୀ ନୃତ୍ୟ-ଶିଳ୍ପୀମାନଙ୍କ ମଧ୍ୟରେ ବରିଷ୍ଠ ପ୍ରାଣୀତତ୍ତ୍ୱବିତ୍ ଏବଂ ଓଡ଼ିଶୀ ନୃତ୍ୟ ଶିଳ୍ପୀ ଶ୍ରୀମତୀ ପ୍ରିୟମ୍ବଦା ମହାନ୍ତି ଅଗ୍ରଗଣ୍ୟା । କଟକ ସହରର ଏକ ସମ୍ଭ୍ରାନ୍ତ ପରିବାରରେ ତାଙ୍କର ଜନ୍ମ ହେଲେ ମଧ୍ୟ ନୃତ୍ୟ ପ୍ରତି ତାଙ୍କର ସହଜାତ ଆକର୍ଷଣ ତାଙ୍କୁ ସେ ଦିଗକୁ ଟାଣି ନେଇଥିଲା । ଯେଉଁ ସମୟରେ ସେ ନୃତ୍ୟ ଶିକ୍ଷା କରିଥିଲେ ସେତେବେଳେ ଓଡ଼ିଆ ସମାଜରେ ନାରୀ ନୃତ୍ୟର ପ୍ରଚାର ହୋଇନଥିଲା ଏବଂ ଏଥିପ୍ରତି ସମାଦର ମଧ୍ୟ ନଥିଲା । ଏଥିପାଇଁ ଶ୍ରୀମତୀ ମହାନ୍ତି ନିଜର ଲକ୍ଷ୍ୟରୁ ବିଚ୍ୟୁତ ହୋଇ ନ ଥିଲେ, ବରଂ ଅଧିକ ଜିଦ୍ ନେଇ ନୃତ୍ୟ ଶିକ୍ଷାରେ ବ୍ରତୀ ହୋଇଥିଲେ ।

ଅତି ବାଲ୍ୟାବସ୍ଥାରେ ସେ ପ୍ରଥମ ଗୁରୁ ୰ ବନବିହାରୀ ମାଇତିଙ୍କ ନିକଟରୁ ସାଧାରଣ ଭାବେ ନୃତ୍ୟ ଶିକ୍ଷା କରିଥିଲେ । ଏହାପରେ ସେ ସ୍ୱର୍ଗତ ସିଂହାରୀ ଶ୍ୟାମସୁନ୍ଦର କର, ଗୁରୁ ଶ୍ରୀ ପଙ୍କଜ ଚରଣ ଦାସ, ଗୁରୁ ଶ୍ରୀ କେଳୁ ଚରଣ ମହାପାତ୍ର ଏବଂ ସ୍ୱର୍ଗତ ଦେବପ୍ରସାଦ ଦାସଙ୍କ ନିକଟରୁ ଓଡ଼ିଶୀ ନୃତ୍ୟ ବିଧିବଦ୍ଧ ଶିକ୍ଷା ଲାଭ କରିଥିଲେ । ଓଡ଼ିଶା ତଥା ଓଡ଼ିଶା ବାହାରେ ଓଡ଼ିଶୀ ନୃତ୍ୟକୁ ପରିଚିତ କରାଇବା ଦିଗରେ ସେ ଜଣେ ଅଗ୍ରଣୀ ନୃତ୍ୟାଙ୍ଗନା । ସେ ୧୯୫୪ ମସିହା ଆନ୍ତଃ ବିଶ୍ୱବିଦ୍ୟାଳୟ ଯୁବ ଉତ୍ସବର ନୃତ୍ୟ ପ୍ରତି-ଯୋଗିତାରେ ଅଂଶ ଗ୍ରହଣ କରି ପ୍ରଥମଥର ପାଇଁ ଦିଲ୍ଲୀ ସହରରେ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ ଏବଂ ପୁରସ୍କାର ଲାଭ କରିଥିଲେ । ଏହାପରେ ବହୁ ପାଶ୍ଚାତ୍ୟ ଦେଶରେ ନୃତ୍ୟ ପରିବେଷଣ କରି ସେ ଖ୍ୟାତି ଅର୍ଜନ କରିଥିଲେ । ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ନିମନ୍ତେ ୧୯୮୦ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଏବଂ ୧୯୮୭ରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଛନ୍ତି । ଏତଦ୍ବ୍ୟତୀତ ଓଡ଼ିଶାର ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ତାଙ୍କୁ ସମ୍ମାନିତ ଏବଂ ପୁରସ୍କୃତ କରାଯାଇଛି ।

ସମ୍ପ୍ରତି ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣୀ ବିଜ୍ଞାନ ବିଭାଗରେ ପ୍ରଫେସର୍ ଭାବରେ ଅବସ୍ଥାପିତ ଏବଂ ବହୁ କଳା ଅନୁଷ୍ଠାନ ସହ ସଂପୃକ୍ତ । ଓଡ଼ିଶୀ ନୃତ୍ୟର ପ୍ରଚାର ଏବଂ ପୁନରୁତ୍ଥାନ କ୍ଷେତ୍ରରେ ନିଜର ବିଶେଷ ଅବଦାନ ନିମନ୍ତେ ଶ୍ରୀମତୀ ମହାନ୍ତି ଓଡ଼ିଶା ବାସୀଙ୍କର ସବୁଦିନେ ମନେ ରହିବେ ।

## ଶ୍ରୀ କମଲଲୋଚନ ମହାନ୍ତି

ଗନେଇ, କଟକ

ଜନ୍ମ—୧୯୨୧, ବୁଦ୍ଧ ପୂର୍ଣ୍ଣିମା



ଓଡ଼ିଶାର ରଙ୍ଗମଞ୍ଚ ଏବଂ ନାଟ୍ୟ ଆନ୍ଦୋଳନର ଅନ୍ୟତମ ପ୍ରଧାନ ପୁରୋଧା ଶ୍ରୀ କମଲଲୋଚନ ମହାନ୍ତି ୧୯୨୧ ମସିହା ପବିତ୍ର ବୁଦ୍ଧ ପୂର୍ଣ୍ଣିମା ଦିନ କଟକ ଜିଲ୍ଲାର ବାଲିକୁଦାସ୍ଥ ଗନେଇ ଗ୍ରାମରେ ଏକ କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ୰ ଅଭୟ ଚରଣ ମହାନ୍ତି ଏବଂ ମାତାଙ୍କ ନାମ ୰ ପାର୍ବତୀ ଦେବୀ । ତାଙ୍କ ପିତା ଜଣେ ନିମ୍ନ ପ୍ରାଥମିକ ଶିକ୍ଷକ ଥିଲେ ମାତ୍ର ଗ୍ରାମର ଯାତ୍ରାଦଳ ପାଇଁ ନାଟକ ସବୁ ଲେଖୁଥିଲେ । ଏହା ଶିଶୁ କମଲଲୋଚନଙ୍କୁ ନାଟ୍ୟଜଗତ ପ୍ରତି ଗଭୀର ଭାବରେ ଆକର୍ଷଣ କରିଥିଲା । ସେ ଅଲଣାହାଟ ମଧ୍ୟଇଂରାଜୀ ବିଦ୍ୟାଳୟରୁ ମାଇନର ପାସ୍ କରି କଟକ ପ୍ୟାରୀମୋହନ ଏକାଡେମୀରେ ୧୯୩୬ରେ ପ୍ରବେଶ କଲେ ଏବଂ ଉଚ୍ଚ ଇଂରାଜୀ ପାଠ ଶେଷ କରି ରେଭେନ୍ସା କଲେଜରେ ନାମ ଲେଖାଇ ଦ୍ୱିତୀୟ ବାର୍ଷିକ କଳା ଶ୍ରେଣୀର ପରୀକ୍ଷା ନ ଦେଇ ୧୯୪୨ ମସିହାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଲେ । ୧୯୪୭ରେ କୃଷି ବିଭାଗରେ ଚାକିରି ଆରମ୍ଭ କରି ୧୯୭୯ ମସିହାରେ କୃଷି ଉପନିର୍ଦ୍ଦେଶକ ଥାଇ ଅବସର ଗ୍ରହଣ କରିଥିଲେ ।

କୃଷି ସମ୍ବାଦ ସରବରାହ ଅଫିସର୍ ଭାବରେ କୃଷକମାନଙ୍କ ପାଇଁ ସେ ବିଭିନ୍ନ କୃଷିତତ୍ତ୍ୱ ଓ କୃଷି ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକସବୁ ଲେଖିଥିବା ବେଳେ ଆକାଶବାଣୀ ଏବଂ ଦୂରଦର୍ଶନ ନିମନ୍ତେ ମଧ୍ୟ ସେ ଅଜସ୍ର ପାଣ୍ଡୁଲିପି ପ୍ରସ୍ତୁତ କରିଛନ୍ତି ।

୧୯୫୮ରୁ ଶ୍ରୀ ମହାନ୍ତି ପେଷାଦାର ରଙ୍ଗମଞ୍ଚ ନିମନ୍ତେ ନାଟକ ଲେଖିବା ଆରମ୍ଭ କରିଥିଲେ । 'କିରଣୀ' ତାଙ୍କର ପ୍ରଥମ ନାଟକ ଭାବରେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । ଅଦ୍ୟାବଧି ଶ୍ରୀ ମହାନ୍ତି ଅନ୍ୟୂନ ପଚିଶିଖଣ୍ଡ ପୁସ୍ତକ ରଚନା କରିଛନ୍ତି ଓ ସେ ସମସ୍ତ ପ୍ରକାଶିତ । ଏହି ରଚନାଗୁଡ଼ିକ ନାଟକ, ଏକାଙ୍କିକା, ଗଳ୍ପ, ଉପନ୍ୟାସ, କୃଷି

ସାହିତ୍ୟ, ପ୍ରୌଢ଼ ଶିକ୍ଷା ଓ ଶିଶୁ ସାହିତ୍ୟ ବିଭାଗରେ ପରିବ୍ୟାପ୍ତ । ୧୯୫୪ରୁ ତାଙ୍କ ଲିଖିତ ନାଟକଗୁଡ଼ିକ ମଧ୍ୟରେ ସମାଧାନ, ନିର୍ଗୁଣୀ, ମାତୃମଙ୍ଗଳ କେନ୍ଦ୍ର, ଆଜାଦୀ, ମାଟି ନୁହେଁ ମୋ ମା, ମିମାଂସା, ସଂଗ୍ରାମ, ମାନଭଞ୍ଜନ, କଳାକାର, ଅଭ୍ୟୁଦୟ, ସ୍ୱାମୀ-ସ୍ତ୍ରୀ, ମଣିଷ, ସାବତ ମା, ଅମାବାସ୍ୟାର ଜହ୍ନ, ପାପପୁଣ୍ୟ, ଗ୍ରାମ ରହସ୍ୟ, ଆମ ଗାଁ, ଘରବାହୁଡ଼ା, ଗାଁ ମାଟି, ଡାକବଙ୍ଗଳା, ଭାଇ ଭଉଣୀ, ସୁବର୍ଣ୍ଣପୁର, ମଣିକାଞ୍ଚନ, ମିସ୍ ମଲ୍ଲିକ, ସୁମିତାର ସଂସାର, ଇତ୍ୟାଦିର ନାମ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ସେ ପାଞ୍ଚୋଟି ଏକାଙ୍କିକା (୧୯୬୩) ଏବଂ ଏକାଙ୍କିକା ତରଙ୍ଗ (୧୯୮୩) ମଧ୍ୟ ରଚନା କରିଛନ୍ତି ।

ଓଡ଼ିଶାରେ ପେଶାଦାର ରଙ୍ଗମଞ୍ଚର ଅବସ୍ଥା ଅବକ୍ଷୟ ଆଡ଼କୁ ଗତି କରୁଥିବା ଅବସ୍ଥାରେ ସେ ନିଜର ନିଷ୍ଠା ଦ୍ୱାରା ଭୁବନେଶ୍ୱରରେ ଏକାମ୍ର ଥିଏଟର ପ୍ରତିଷ୍ଠା କରିଥିଲେ । ଏହା ଏକ ଅର୍ଦ୍ଧପେଶାଦାର ରଙ୍ଗମଞ୍ଚ ଭାବରେ ଦଶବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିଥିଲେ ମଧ୍ୟ ଓଡ଼ିଶାରେ ନାଟ୍ୟକଳାର ପ୍ରସାର ଦିଗରେ ଏହା ତାଙ୍କର ଆନ୍ତରିକତାର ସୂଚନା ଦିଏ । ଏହି ସମୟରେ ଲୁପ୍ତ ପ୍ରାୟ ରାସଲୀଳାକୁ ପୁନର୍ଜୀବନ ଦାନ କରିବାକୁ ସେ ମଧ୍ୟ ଆଗେଇ ଆସିଥିଲେ । ସେ 'ମାନଭଞ୍ଜନ' ଏବଂ 'ବାଲ୍ୟଲୀଳା'କୁ ନୂତନ ଭାବରେ ସମ୍ପାଦନା କରି ପ୍ରସ୍ତୁତ କରିଥିଲେ । ଚଳଚ୍ଚିତ୍ର ଜଗତରେ ପ୍ରବେଶ କରି ସେ ଓଡ଼ିଆ ଚଳଚ୍ଚିତ୍ର 'ଘର ବାହୁଡ଼ା' ଏବଂ 'ଶ୍ରୀକୃଷ୍ଣ ରାସଲୀଳା'ର ଚିତ୍ରନାଟ୍ୟ ଏବଂ ସଂଳାପ ରଚନା କରିଥିଲେ ।

ଓଡ଼ିଶାର ରଙ୍ଗମଞ୍ଚ ଏବଂ ସାହିତ୍ୟ କ୍ଷେତ୍ରରେ ଅନବଦ୍ୟ ଅବଦାନ ନିମନ୍ତେ ଶ୍ରୀଯୁକ୍ତ ମହାନ୍ତି ବିଭିନ୍ନ ସ୍ତରରେ ବିଭିନ୍ନ ଭାବରେ ସମ୍ମାନିତ ଏବଂ ପୁରସ୍କୃତ । ୧୯୬୮ରେ ବିଷୁବ ମିଳନ ପୁରସ୍କାର, ୧୯୮୦ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର, ୧୯୮୩ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଉପାସ୍ୱନ, ୧୯୮୭ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଓ 'ସାରଳା ସାହିତ୍ୟ ସମ୍ବର୍ଦ୍ଧନା' ଏବଂ ୧୯୮୩ରେ ତାଙ୍କ ରଚିତ 'ଏକାଙ୍କିକା ତରଙ୍ଗ' ଲାଗି ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।

ଶ୍ରୀ ମହାନ୍ତି ଓଡ଼ିଶାର ନାଟ୍ୟ ଆନ୍ଦୋଳନ ଏବଂ ସାହିତ୍ୟ ନିମନ୍ତେ ଯେଉଁ ମହନୀୟ କାର୍ଯ୍ୟ କରିଅଛନ୍ତି, ସେଥି ନିମନ୍ତେ ସେ ସବୁଦିନେ ଆମର ପ୍ରେରଣାଦାତା ହିସାବରେ ମନେ ରହିବେ ।

●

# ଶ୍ରୀ ସୁକୁମାର ସାହୁ

**ଗୋପାଳ ଗାଁ, ବାଲେଶ୍ୱର**

**ଜନ୍ମ—୧୯୦୭, ଅଗଷ୍ଟ ୧୫**



ଓଡ଼ିଶାର ଅନ୍ୟତମ କଣ୍ଠଶିଳ୍ପୀ ଶ୍ରୀ ସୁକୁମାର ସାହୁ ୧୯୦୬ ମସିହା ଅଗଷ୍ଟ ୧୫ ତାରିଖରେ ବାଲେଶ୍ୱର ଜିଲ୍ଲାର ଗୋପାଳ ଗାଁଠାରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟାବସ୍ଥାରେ ଉତ୍କଳମଣି ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ଧର୍ମମୂଳକ ଏବଂ ଜାତୀୟତାମୂଳକ ସଙ୍ଗୀତ ଗାନ କରି ଛାତ୍ରମାନଙ୍କ ମଧ୍ୟରେ ଧର୍ମ ଓ ଜାତୀୟ ଚେତନା ବୃଦ୍ଧି କରିବା ଦିଗରେ ପ୍ରୟାସ କରିଥିଲେ ।

ସେହି ସମୟରେ ଭଦ୍ର ପରିବାରରେ ସଙ୍ଗୀତ ଶିକ୍ଷା ନିଷିଦ୍ଧ ଥିଲାବେଳେ ସେ ନିଜେ ବହୁ ବାଧାବିଘ୍ନ ଓ କଷ୍ଟର ଶରବ୍ୟ ହୋଇ ମଧ୍ୟ ଭଦ୍ର ପରିବାରର କନ୍ୟା-ମାନଙ୍କୁ ସଙ୍ଗୀତ ଶିକ୍ଷା ଦେବା ନିମନ୍ତେ ଯତ୍ନବାନ୍ ହୋଇଥିଲେ । ପରେ ଓଡ଼ିଶାର ବିଶିଷ୍ଟ ସମାଜସେବୀ ୰ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ପ୍ରେରଣା ଓ ସାହାଯ୍ୟ ଲାଭ କରି 'ଓଡ଼ିଶା ସଙ୍ଗୀତ ସମ୍ମିଳନୀ' ବାଲେଶ୍ୱର ଠାରେ କରାଇଥିଲେ । ପରବର୍ତ୍ତୀ କାଳରେ ୧୯୫୪ରେ ଏଚ୍.ଏମ୍.ଭି ରେକର୍ଡ଼ କମ୍ପାନୀ ତାଙ୍କର ଅନେକ ଆଧୁନିକ ଗୀତ ରେକର୍ଡ଼ କରିଥିଲେ ଏବଂ ସେ ନିଜେ ଜଣେ ସଙ୍ଗୀତ ଗୁରୁ ରୂପେ ସମାଜରେ ସ୍ୱୀକୃତ ଲାଭ କରିବା ସହ ଆଦୃତ ମଧ୍ୟ ହୋଇଥିଲେ । ଜଣେ ସଙ୍ଗୀତ ରଚନାକାରୀ ଏବଂ ସ୍ୱରସଂଯୋଜକ ଭାବରେ ସେ ମଧ୍ୟ ପରିଚିତ । ସର୍ବ ପ୍ରଥମଥର ପାଇଁ ସେ ଓଡ଼ିଆ ମାସିକ ପତ୍ରିକାରେ ବିଭିନ୍ନ ସଙ୍ଗୀତର ସ୍ୱରଲିପି ପ୍ରକାଶ କରାଇଥିଲେ । ତାଙ୍କରି ଉଦ୍ୟମରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସଙ୍ଗୀତ 'କାନ୍ତ ସଙ୍ଗୀତ' ରୂପେ 'ଉତ୍କଳ ସମ୍ମିଳନୀ' ଓ ଅନ୍ୟାନ୍ୟ ସ୍ଥାନରେ ପରିଚିତ ହୋଇଥିଲା । କାନ୍ତକବିଙ୍କର ବହୁ ସଙ୍ଗୀତରେ ସ୍ୱର ସଂଯୋଜନା ସେ ନିଜେ କରି ତାହା ଗାନ କରିଥିଲେ । ଏତଦ୍‌ଭିନ୍ନ ବାଲେଶ୍ୱର ଛଉ ନୃତ୍ୟରେ ଆବହସଙ୍ଗୀତ ଏବଂ ମାର୍ଜିତ ସ୍ୱର ସଂଯୋଜନା କରି ସେ ଅନେକ ସଂସ୍କାର କରାଇଥିଲେ । ଶ୍ରୀ ସାହୁ ସର୍ବପ୍ରଥମେ ଓଡ଼ିଆରେ ତାଙ୍କ ନିଜ ରଚିତ କେତେକ ଅଦର୍ଶ ସଂଗୀତର ଏକ ଆକାର ମାର୍ଜିକ

ସ୍ୱରଲିପି ପୁସ୍ତକ ପ୍ରକାଶ କରିଛନ୍ତି, ଯାହା ଓଡ଼ିଆ ଭାଷାରେ ମାତ୍ରିକ ସ୍ୱରଲିପି ଭାବେ ଏବେସୁଦ୍ଧା ଏକମାତ୍ର ପୁସ୍ତକ । ଭାରତ ଚୀନ୍ ଯୁଦ୍ଧ ସମୟରେ ତାଙ୍କ ରଚିତ ଦେଶାତ୍ମବୋଧ ସଂଗୀତସବୁ ଓଡ଼ିଶା ସରକାରଙ୍କ ଦ୍ୱାରା ରେକର୍ଡ଼ କରାଯାଇ ଆକାଶବାଣୀ ଜରିଆରେ ସାରା ଓଡ଼ିଶାରେ ପ୍ରଚାର କରାଯାଇଥିଲା । ଦୀର୍ଘ ତିରିଶ ବର୍ଷ କାଳ ସେ ଦୁଇଟି ଉଚ୍ଚ ବାଳିକା ବିଦ୍ୟାଳୟରେ ସଂଗୀତ ଶିକ୍ଷକ ରୂପେ କାର୍ଯ୍ୟ କରିଥିଲେ । ତାଙ୍କ ସଂଗୀତ ଉପରେ ବହୁ ପ୍ରବନ୍ଧ ଓଡ଼ିଶାର ପତ୍ରପତ୍ରିକାରେ ପ୍ରକାଶ ପାଇଁ ତାଙ୍କୁ ଅନେକ ପ୍ରଶଂସା ଆଣି ଦେଇଥିଲା ।

ଶ୍ରୀଯୁକ୍ତ ସାହୁ ନିଜ ଜୀବନରେ ଓଡ଼ିଶାର ବହୁ ସାଂସ୍କୃତିକ ସଂସ୍ଥା ଦ୍ୱାରା ସମ୍ବର୍ଦ୍ଧିତ ଏବଂ ମାନପତ୍ର ଦ୍ୱାରା ସମ୍ମାନିତ । ୧୯୮୧-୮୨ ବର୍ଷରେ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ସେ ପୁରସ୍କୃତ ଏବଂ ସମ୍ମାନିତ ।

ବାଲେଶ୍ୱରରେ ସଂଗୀତକୁ ବଙ୍ଗଳା ଗୀତର ପ୍ରଭାବରୁ ମୁକ୍ତ କରିବା ଦିଗରେ ଏକମାତ୍ର ଓଡ଼ିଆ ସଙ୍ଗୀତ ଶିଳ୍ପୀ ଭାବରେ ତାଙ୍କର ଯେଉଁ ଅବଦାନ ରହିଛି, ତାହାକୁ କେହି କେବେହେଲେ ଭୁଲିପାରିବେ ନାହିଁ ।

●



## ନିତାଇ ପାଲିତ୍

**ନିମଚଉଡ଼ି, କଟକ**

ଜନ୍ମ—୧୯୨୩, ମାର୍ଚ୍ଚ ୮

ଓଡ଼ିଶା ନାଟ୍ୟ ଓ ଚଳଚ୍ଚିତ୍ର ଜଗତର ପ୍ରଖ୍ୟାତଯଶା ପ୍ରଯୋଜକ ଏବଂ ନିର୍ଦ୍ଦେଶକ ୬ ନିତାଇ ପାଲିତ୍ ୧୯୨୩ ମସିହା ମାର୍ଚ୍ଚମାସ ୮ ତାରିଖ ଦିନ କଟକ ସହରସ୍ଥ ନିମଚଉଡ଼ି-ଠାରେ ଏକ ସମ୍ଭ୍ରାନ୍ତ ବଙ୍ଗାଳୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ରେଭେନ୍ସା କଲେଜିଏଟ୍ ବିଦ୍ୟାଳୟରୁ ମାଟ୍ରିକ୍ୟୁଲେସନ୍ ପାସ୍ କରିବା ପରେ ସେ ଆଉ ଉଚ୍ଚତର ଶିକ୍ଷାଲାଭ କରି ନ ଥିଲେ ମଧ୍ୟ ନାଟ୍ୟ ନିର୍ଦ୍ଦେଶନା ଏବଂ ଅନୁବାଦ କ୍ଷେତ୍ରରେ ନିଜର ବିଶେଷ ପାରଦର୍ଶିତା ପ୍ରଦର୍ଶନ କରିଥିଲେ । ୧୯୫୦ରେ ସେ ପ୍ରଥମେ 'ଅଗଷ୍ଟ-୯' ନାଟକରେ ନିର୍ଦ୍ଦେଶନା ଦେଇ ତାଙ୍କର ଦୀର୍ଘ କଳାକାର ଜୀବନର ଆରମ୍ଭ କରିଥିଲେ । ଏହି ସମୟରେ ସେ 'ଇଉନାଇଟେଡ୍ ଆର୍ଟିଷ୍ଟସ୍' ଏବଂ 'ନେମ୍‌ନାଲ୍ ମିଉଜିକ୍ ଆସୋସିଏସନ୍' ସହ ଘନିଷ୍ଠଭାବରେ ସଂପୃକ୍ତ ରହିଥିଲେ । ତାଙ୍କର ଅନ୍ୟ ନିର୍ଦ୍ଦେଶିତ ନାଟକମାନଙ୍କ ମଧ୍ୟରେ 'ବେଗମ୍‌କୋଠି', 'ସନ୍ଧାନୀ', 'ଘରଠାକୁର', 'ମାଟିର ମଣିଷ', 'ଅର୍ଦ୍ଧାଙ୍ଗିନୀ' ଇତ୍ୟାଦି ପ୍ରଣିଧାନଯୋଗ୍ୟ । ନାଟକ ବ୍ୟତୀତ ସେ ନୃତ୍ୟନାଟିକା 'ରାମାୟଣ' ଏବଂ 'ମଥୁରା ବିଜୟ'ର ସଫଳ ପ୍ରଯୋଜକ ଭାବରେ ପ୍ରଶଂସା ଲାଭ କରିଥିଲେ । ସର୍ବଭାରତୀୟ ସ୍ତରର ପ୍ରତିଯୋଗିତା ପାଇଁ ସେ ପାଞ୍ଚୋଟି ନାଟକ ଇଂରାଜୀରେ ଅନୁବାଦ କରିଥିଲେ । ଆକାଶବାଣୀ, କଟକ କେନ୍ଦ୍ରର ଶ୍ରେଷ୍ଠ ବେତାର ନାଟକ ନିର୍ବାଚନ ନିମନ୍ତେ ସେ ତିନିବର୍ଷ ପାଇଁ ବିଚାରକ ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ ।

୧୯୫୬ ରେ ଚିତ୍ର ନିର୍ମାଣ କ୍ଷେତ୍ରରେ ପଦାର୍ପଣ କଲାପରେ ସେ ଦୁଇଟି ଟେଲିଫିଲ୍ମ ମଧ୍ୟ କଟକ ଦୂରଦର୍ଶନ ନିମନ୍ତେ ପ୍ରସ୍ତୁତ କରିଥିଲେ । ତନ୍ମଧ୍ୟରେ 'ଉଷା' ଟେଲିଫିଲ୍ମର ନାମ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ସେ କେତୋଟି ପ୍ରାମାଣିକ ଚିତ୍ର ମଧ୍ୟ ପ୍ରସ୍ତୁତ କରିଥିଲେ ।

ଚଳଚ୍ଚିତ୍ର ନିର୍ଦ୍ଦେଶନା କ୍ଷେତ୍ରରେ ସେ ପ୍ରଥମେ କେଦାରଗୌରୀ ଚଳଚ୍ଚିତ୍ରର ନିର୍ଦ୍ଦେଶନା ଦେଇଥିଲେ । ସେହି ଚଳଚ୍ଚିତ୍ରରେ ସେ ଏକ ବିଶେଷ ଭୂମିକାରେ ଅଭିନୟ କରି ନିଜର ଅଭିନୟ ପ୍ରତିଭାର ପରିଚୟ ଦେଇଥିଲେ । ୧୯୬୬ ରେ 'ଭାଇଭାଇ' ଚଳଚ୍ଚିତ୍ରର ନିର୍ଦ୍ଦେଶନା, ୧୯୬୧ ରେ 'ମା' ଚଳଚ୍ଚିତ୍ର, ୧୯୬୩ ରେ 'ମଲ୍ଲଜହ୍ନ' ଚଳଚ୍ଚିତ୍ରର ନିର୍ଦ୍ଦେଶନା ଦେଇଥିଲେ । ଏହି 'ମଲ୍ଲଜହ୍ନ' ଚଳଚ୍ଚିତ୍ର ୧୯୬୫ ରେ ଶ୍ରେଷ୍ଠ ଆଞ୍ଚଳିକ ଚଳଚ୍ଚିତ୍ର ରୂପେ ପୁରସ୍କୃତ ହୋଇ ରାଷ୍ଟ୍ରପତିଙ୍କ ରୌପ୍ୟପଦକ ଲାଭ କରିଥିଲା ।

ଏତଦ୍‌ବ୍ୟତୀତ ପାଲିତଙ୍କ ନିର୍ଦ୍ଦେଶିତ ଚଳଚ୍ଚିତ୍ରସବୁ ହେଲା କିଏ କାହାର, ବନ୍ଧନ, ଧରିତ୍ରୀ, ମନଆକାଶ, କୃଷ୍ଣ ସୁଦାମା, ବନ୍ଧୁ ମହାନ୍ତି, ଅନୁରାଗ (ପ୍ରଯୋଜିତ), କିଏ ଜିତେ କିଏ ହାରେ, ରମ୍ଭାଅରକ୍ଷିତ, ଓ ଜନ୍ମ ଆଗା ଜନ୍ମ ସ୍ୱପ୍ନ (ଅସମ୍ପୂର୍ଣ୍ଣ) ଏ ପାଲିତଙ୍କର କେତେକ ଶିଶୁ ଚଳଚ୍ଚିତ୍ର ଓ ସଙ୍ଗୀତ ଉପରେ ମଧ୍ୟ କ୍ଷୁଦ୍ର ଚଳଚ୍ଚିତ୍ର ରହିଛି ।

ନିଜର ବହୁମୁଖୀ କଳା ପ୍ରତିଭା ନିମନ୍ତେ ଏ ପାଲିତ୍ ନିଜ ଜୀବନକାଳ ମଧ୍ୟରେ ବହୁ ପୁରସ୍କାର ଓ ସମ୍ମାନ ଲାଭ କରିବାର ସୌଭାଗ୍ୟ ଅର୍ଜନ କରିଅଛନ୍ତି । ୧୯୭୨-୭୩ରେ 'ବନ୍ଧନ' ଚଳଚ୍ଚିତ୍ର ପାଇଁ ରାଜ୍ୟ ସରକାରଙ୍କଠାରୁ ସେ ଶ୍ରେଷ୍ଠ ନିର୍ଦ୍ଦେଶକ ରୂପେ ପୁରସ୍କାର ପାଇଥିଲେ ।

୧୯୭୫ ରେ ଧରିତ୍ରୀ, ଓ ମନଆକାଶ ଚଳଚ୍ଚିତ୍ର ନିମନ୍ତେ ସେ ଶ୍ରେଷ୍ଠ ନିର୍ଦ୍ଦେଶକର ପୁରସ୍କାର ରାଜ୍ୟ ସରକାରଙ୍କ ନିକଟରୁ ଲାଭ କରିଥିଲେ । ପୁନଶ୍ଚ 'ବନ୍ଧୁମହାନ୍ତି' ଚଳଚ୍ଚିତ୍ର ନିମନ୍ତେ ଶ୍ରେଷ୍ଠ ନିର୍ଦ୍ଦେଶକର ପୁରସ୍କାର ଓ ୧୯୮୧-୮୨ ରେ ନାଟକ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ପୁରସ୍କାର ଲାଭ କରିଥିଲେ । ସେହିବର୍ଷ ଓଡ଼ିଆ ଚଳଚ୍ଚିତ୍ରକୁ ତାଙ୍କର ଅବଦାନ ପାଇଁ ଓଡ଼ିଶା ସରକାରଙ୍କ ସର୍ବୋଚ୍ଚ 'ଜୟଦେବ ପୁରସ୍କାର' ପାଇବାପାଇଁ ସେ ଯୋଗ୍ୟ ବିବେଚିତ ହୋଇଥିଲେ ଏବଂ ୧୯୮୯ରେ 'ଓଫଜା' ପ୍ରଦତ୍ତ 'ମୋହନ ସୁନ୍ଦର ଦେବ ଗୋସ୍ୱାମୀ' ପୁରସ୍କାର ଲାଭ କରିଥିଲେ ।

ସମସ୍ତଙ୍କର ଅତି ଆଦରର 'ନିତାଇ ଦା' ଆଜି ଆଉ ଆମ ମଧ୍ୟରେ ନଥିଲେ ମଧ୍ୟ ତାଙ୍କର ଅମର ଆତ୍ମା ଆସନ୍ତା କାଲିର କଳାକାରମାନଙ୍କୁ ମାର୍ଗଦର୍ଶନ କରି ଚାଲିଥିବ ଏ ବିଶ୍ୱାସ ଆମର ରହିଛି ।



# ଗୁରୁ ଶ୍ରୀ ଧ୍ରୁବଚରଣ ରଥ

**ଘଣ୍ଟିଆଳ, କଟକ**

**ଜନ୍ମ—୧୯୧୭, ଏପ୍ରିଲ୍ ୧୫**

ଓଡ଼ିଶାର ଅନ୍ୟତମ ପ୍ରବୀଣ ତବଲାବାଦକ ଶ୍ରୀଯୁକ୍ତ ଧ୍ରୁବଚରଣ ରଥ ୧୯୧୭ ମସିହା ଏପ୍ରିଲ ମାସ ୧୫ ତାରିଖରେ କଟକ ଜିଲ୍ଲାର ଯାଜପୁର ସହର ନିକଟସ୍ଥ ଘଣ୍ଟିଆଳ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ୰ ଲଛମନ ରଥ ଏବଂ ମାତାଙ୍କ ନାମ ଥିଲା ୰ କୁଞ୍ଜୀ ଦେବୀ ।

ଆବାଲ୍ୟରୁ ସଙ୍ଗୀତ ପାଗଳ ଶ୍ରୀ ରଥ ନିଜର ପ୍ରାଥମିକ ଶିକ୍ଷା ଗାଁ ଚଟଶାଳୀ ସ୍ତରରୁ ହିଁ ଶେଷ କରି ଦେଇଥିଲେ । ତାଙ୍କର ପିତା ଜଣେ ବିଶିଷ୍ଟ ପଖାଉଜ ବାଦକ ତଥା ମୃଦଙ୍ଗ ବାଦକ ଥିବାରୁ, ବାଳକ ଧ୍ରୁବ ନିଜ ପିତାଙ୍କ ନିକଟରୁ ପଖାଉଜ ଏବଂ ମୃଦଙ୍ଗ ବାଦନ ଶିକ୍ଷା ଆରମ୍ଭ କରି କଳାକ୍ଷେତ୍ରକୁ ପ୍ରବେଶ କରିଥିଲେ । ପରେ ପରେ ସେ ଗୃହ ତ୍ୟାଗ କରି ଉତ୍ତର ଭାରତୀୟ ଶୈଳୀର ତବଲାବାଦନ ଗୁରୁ ୰ ରଘୁନାଥ ମଲ୍ଲିକ (କଲିକତା), ଗୁରୁ ୰ ବଲାଇ ଚନ୍ଦ୍ର ଦାସ (କଲିକତା), ୰ ଓସ୍ତାଦ୍ ଶଫାଓ୍ୱାତ୍ ହୋସେନ୍ ଖାଁ (ବାଂଲାଦେଶ) ମାନଙ୍କ ନିକଟରୁ ଶିକ୍ଷା ଲାଭ କରିବାପରେ କଟକ ଫେରିଆସିଥିଲେ ଏବଂ କଟକ ଆକାଶବାଣୀ କେନ୍ଦ୍ର ସ୍ଥାପିତ ହେବା ସଙ୍ଗେ ସଙ୍ଗେ ସେ ପରୀକ୍ଷା ଦେଇ ଶାସ୍ତ୍ରୀୟ ତବଲା ବାଦକ ଭାବରେ ୧୯୪୮ ଠାରୁ ଆକାଶବାଣୀର ସ୍ୱୀକୃତ କଳାକାର ହେଲେ । ଶ୍ରୀ ରଥଙ୍କର ତବଲ ଶିକ୍ଷା ସମ୍ବନ୍ଧରେ କୌଣସି ଅନୁଷ୍ଠାନ ସ୍ଥାପିତ ହୋଇ ନଥିବାରୁ ସେ ଗୁରୁମାନଙ୍କ ଗୃହକୁ ଯାଇ ତବଲା ବାଦନ ଶିକ୍ଷା କରୁଥିଲେ ଏବଂ ନିଜ ଗୃହରେ ଦୀର୍ଘ ସମୟ ଧରି ଅଭ୍ୟାସ କରୁଥିଲେ ।

ଶ୍ରୀ ରଥ କଲିକତାଠାରେ ବଙ୍ଗାଳୀ ଏବଂ ଓଡ଼ିଆ ପିଲମାନଙ୍କୁ ତବଲା ବାଦନ ଶିକ୍ଷା ଦେଇ ନିଜର କର୍ମମୟ ଜୀବନ ଆରମ୍ଭ କରିଥିଲେ । ଓଡ଼ିଶାରେ ଆକାଶବାଣୀର କେନ୍ଦ୍ର ନ ଥିବାରୁ ସେ ୧୯୪୫ରେ କଲିକତାସ୍ଥ ଆକାଶବାଣୀ କେନ୍ଦ୍ରର ଓଡ଼ିଆ ବିଭାଗ

ଆରମ୍ଭ ହେବା ପରେ ସେ ତହିଁରେ ସ୍ୱୀକୃତ ତବଲଚି ଭାବରେ ଯୋଗଦାନ କରିଥିଲେ । ୧୯୭୭ ମସିହାରେ ଆକାଶବାଣୀ କଟକରୁ ସେ ଅବସର ଗ୍ରହଣ କରି ନିଜର ତୁଳସୀ-ପୁରସ୍ଥିତ ବାସଭବନରେ ଅବସ୍ଥାନ କରୁଅଛନ୍ତି ।

ଓଡ଼ିଶା ତଥା ଭାରତର ବହୁ ପ୍ରତିଷ୍ଠିତ ଶାସ୍ତ୍ରୀୟ ଗାୟକ ଗାୟିକାମାନଙ୍କ ସହ ତବଲା ପରିବେଷଣ କରି ଶ୍ରୀ ରଥ ଉଚ୍ଚ ପ୍ରଶଂସିତ । ସେ ସଙ୍ଗତ ଦେଇଥିବା କଳାକାର-ମାନଙ୍କ ମଧ୍ୟରେ ବଡ଼େ ଗଫୁରଖାଁ ସାହେବ୍, ଛୋଟେ ଗଫୁର୍ ଖାଁ ସାହେବ୍, ଶ୍ରୀ ବିନୋଦ ଗାଙ୍ଗୁଲି, ଶ୍ରୀ ଗୁରୁ ରାଓ ଦେଶପାଣ୍ଡେ, ଶ୍ରୀ ବିନାୟକ ରାଓ ପଟ୍ଟବର୍ଦ୍ଧନ ଶ୍ରୀ ରମେଶ ନାଦକରନି, କ୍ଷିତୀଶ ଚନ୍ଦ୍ର ମୈତ୍ର, ସୁନନ୍ଦା ପଟ୍ଟନାୟକ ଏବଂ କୁଣ୍ଡଳୀକ ନାରାୟଣ ରାଓ ଏବଂ ବିଶିଷ୍ଟ ବଂଶୀବାଦକ ହରିପ୍ରସାଦ ଚୌରାସିଆଙ୍କ ନାମ ଉଲ୍ଲେଖଯୋଗ୍ୟ ।

ନିଜର ଯୋଗ୍ୟତା ନିମନ୍ତେ ଶ୍ରୀଯୁକ୍ତ ରଥ ୧୯୮୨ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ, ସମ୍ବର୍ଦ୍ଧିତ । ଏହା ବ୍ୟତୀତ ସେ 'କଳା ବିନୋଦ' ସାଂସ୍କୃତିକ ଅନୁଷ୍ଠାନ ତଥା ଅନ୍ୟାନ୍ୟ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହୋଇଅଛନ୍ତି । ଆଜିର କଳାକାରମାନଙ୍କ ନିମନ୍ତେ ବାର୍ତ୍ତା ଦେଇ ଶ୍ରୀ ରଥ କୁହନ୍ତି "ଯେ କୌଣସି କ୍ଷେତ୍ରରେ ନିପୁଣତା ଆଣିବାକୁ ହେଲେ ସାଧନାର ଆବଶ୍ୟକତା ରହିଛି । କଳାକୁ ଆୟତ୍ତ କରିବାକୁ ହେଲେ ଏକାନ୍ତ କଠୋର ସାଧନା ଆବଶ୍ୟକ । ସାଧନାପାଇଁ ଏକନିଷ୍ଠ ଆତ୍ମସଂଯମ ଆବଶ୍ୟକ । ଆଗାମୀ ଯୁଗର କଳାକାରମାନେ ଆତ୍ମସଂଯମୀ ହୁଅନ୍ତୁ, ପ୍ରଭୁଙ୍କ ନିକଟରେ ଏତିକି ପ୍ରାର୍ଥନା ।"

## ✝ ଲାଲମୋହନ ପାତ୍ର
### ବାଘଡ଼ାବେଡ଼, ମୟୂରଭଞ୍ଜ

(୧୯୦୮—୧୯୮୯)



ଓଡ଼ିଶାର କଳା ଓ ସଂସ୍କୃତି କ୍ଷେତ୍ରରେ ମୟୂରଭଞ୍ଜ ଜିଲ୍ଲାର ଛଉନୃତ୍ୟ ଆନ୍ତର୍ଜାତୀୟ ସ୍ତରରେ ଚର୍ଚ୍ଚା ନିମନ୍ତେ ଯଥେଷ୍ଟ ଖୋରାକ ଯୋଗାଇ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିବାବେଳେ ଏଥିପାଇଁ ଛଉନୃତ୍ୟର ବରିଷ୍ଠ ଗୁରୁ ✝ ଲାଲମୋହନ ପାତ୍ରଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ । ✝ ପାତ୍ର ୧୯୦୮ ମସିହା ମାର୍ଚ୍ଚ ମାସ [illegible] ତାରିଖରେ ମୟୂରଭଞ୍ଜ ଜିଲ୍ଲାର ବାଘଡ଼ାବେଡ଼ଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମାତାଙ୍କ ନାମ ଥିଲା ✝ କୃଷ୍ଣ ପାତ୍ର ଏବଂ ✝ କାଞ୍ଚନ ପାତ୍ର ।

ପିତାଙ୍କର ନୃତ୍ୟ ସଙ୍ଗୀତ ପ୍ରତି ଆଗ୍ରହ ଓ ନିଜ ବଡ଼ଭାଇ ଛଉନୃତ୍ୟର ଗାୟକ ସ୍ୱର୍ଗତ ଶ୍ରୀନିବାସ ପାତ୍ରଙ୍କ ପ୍ରେରଣା, ମାତୃହୀନ ଲାଲମୋହନଙ୍କୁ ଆବାଲ୍ୟରୁ ଛଉନୃତ୍ୟ ଓ ଗୀତ ପ୍ରତି ଆକୃଷ୍ଟ କଲା । ତତ୍କାଳୀନ ଢୋଲ ମାଷ୍ଟର ଦ୍ୱାରି କୁଅଁରଙ୍କ ସହଯୋଗରୁ ପ୍ରାୟ ଦଶବର୍ଷ ବୟସ ବେଳକୁ ଗୀତ ଗାଇବା, ବଂଶୀ, ଢୋଲ ଓ ଧୂମସା ଆଦି ବଜାଇବା ଶିଖି ନେଇଥିଲେ । ୧୯୨୯ରୁ ସେ ବିଭିନ୍ନ ଛଉ ନୃତ୍ୟରେ ଭାଗ ନେଇଥିଲେ । ତତ୍କାଳୀନ ଉତ୍ତର ସାହିର ଦାୟିତ୍ୱରେ ଥିବା ଗୁରୁ ✝ ରଘୁନାଥ ସିଂ ବାବୁ, ନୃତ୍ୟ ଗୁରୁ ✝ ଚନ୍ଦ୍ରମୋହନ ତରାଇ ଓ ସଙ୍ଗୀତ ଗୁରୁ ✝ କାର୍ତ୍ତିକ ଚନ୍ଦ୍ର ପାଲଙ୍କ ପ୍ରେରଣାରୁ ଛଉନୃତ୍ୟର ସବୁ ବିଭାଗକୁ ଭଲ ଭାବରେ ଶିଖି ପାରିବାର ସୁଯୋଗ ସେତିକି ପାଇଲେ, ନିଜର ଆଗ୍ରହଜନିତ ପ୍ରେରଣା ହେତୁ, ଆହୁରି ଅନେକ କିଛି ନିଜସ୍ୱ ସୃଷ୍ଟି ତହିଁରେ ଯୋଗକରି ଅନ୍ୟାନ୍ୟ ସ୍ଥାନରେ, ରାଜୁଡ଼ା କଟକଣା ସତ୍ତ୍ୱେ, ଛଉନୃତ୍ୟ ଶିକ୍ଷାଦାନ କରିବାରେ ବ୍ୟସ୍ତ ରହିଥିଲେ । ୧୯୩୫ ଓ ୧୯୩୬ରେ ବାରିପଦା ରାଜବାଟୀରେ 'ଅମର ବିଳାସ' ଓ 'ସୁଷମା ମାଳତୀ' ଆଦି ନାଟକ ପରିବେଷଣ କରାଇ ପୁରସ୍କୃତ ହୋଇଥିଲେ ।

ଛଉନୃତ୍ୟ ଏବଂ ସଙ୍ଗୀତର ଜଣେ ଆଜୀବନ ସାଧକ ଓ ମୟୂରଭଞ୍ଜର ପୁରପଲ୍ଲୀରେ ପ୍ରିୟ ନାଲୁ ସାର୍ ଓ ନାଲ୍‌ବାବୁ ଭାବରେ ପରିଚିତ ଶ୍ରୀ ପାଣି ନିଜ ଘରେ ଖୁଆଇ ପିଆଇ, ମନାଇ ଅନେକ ଶିଷ୍ୟଙ୍କୁ ଛଉନୃତ୍ୟ ଶିକ୍ଷା ଦେଉଥିଲେ । ପ୍ରଥମ ଥର ଲାଗି ମହିଳାମାନଙ୍କୁ ଛଉନୃତ୍ୟ ଶିକ୍ଷା ଦେବା ନିମନ୍ତେ ଚେଷ୍ଟିତ ହୋଇ ସେ ସେଥିରେ ସଫଳକାମ ହୋଇଥିଲେ । ତାଙ୍କର ସୃଷ୍ଟ ଅସଂଖ୍ୟ ଶିଷ୍ୟଶିଷ୍ୟା ଆଜି ଜୀବନର ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ । ଛଉନୃତ୍ୟର ସଙ୍ଗୀତ, ନୃତ୍ୟ, ପୋଷାକ ଓ ପରିବେଷଣ ଆଦି ବିଭିନ୍ନ ବିଭାଗକୁ ସେ ମାର୍ଜିତ କରି ପରିବେଷଣ କରାଇବାରେ ପାରଦର୍ଶିତା ଲାଭ କରିଥିଲେ ଏବଂ ଅନ୍ୟକୁ ଯଥାଯଥ ଶିକ୍ଷା ଦେଇ ପାରିଲା ଭଳି ଗୁରୁ ବା ବିଶେଷଜ୍ଞ ଭାବେ ଓସ୍ତାଦ୍ ଲାଲମୋହନ ପାଣି ଏକକ ଓ ଅତୁଳନୀୟ ପ୍ରତିଭା ।

ନିଜର କଳା ପ୍ରଦର୍ଶନ ନିମନ୍ତେ ସ୍ୱର୍ଗତ ପାଣି ଜୀବନରେ ବହୁବିଧ ସମ୍ମାନର ଅଧିକାରୀ ହୋଇଛନ୍ତି । ୧୯୮୮ରେ 'ଗୌହାଟୀ ଉଇଣ୍ଟର ଫେଷ୍ଟିଭାଲ', ୧୯୮୯ରେ ବମ୍ବେର 'ଅପନା ଉତ୍ସବ' ଭଳି ଅନେକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମରେ ସେ ଭାଗ ନେଇଛନ୍ତି । ବାରିପଦାଠାରେ ଛଉ ତାଲିମ କେନ୍ଦ୍ର ପ୍ରତିଷ୍ଠା ଓ ପରିଚାଳନା ତଥା ମୟୂରଭଞ୍ଜ ଛଉ ନୃତ୍ୟର ବିପର୍ଯ୍ୟସ୍ତ ଅବସ୍ଥାରେ ଏହାର ସୁରକ୍ଷା ପାଇଁ ଅଗ୍ରଣୀ ସୈନିକ ନାଲୁବାବୁ ମୟୂରଭଞ୍ଜର ଜିଲ୍ଲାପାଳ, ଓଡ଼ିଶାର ରାଜ୍ୟପାଳ, ବିଭିନ୍ନ ଅନୁଷ୍ଠାନ ଏବଂ ବ୍ୟକ୍ତି ବିଶେଷଙ୍କଠାରୁ ବିଭିନ୍ନ ସମୟରେ ପ୍ରଶଂସିତ ହୋଇଛନ୍ତି । ୧୯୫୬ରେ ତତ୍କାଳୀନ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦ ଓ ୧୯୫୮ରେ ମନ୍ତ୍ରୀ ସୋନାରାମ ସୋରେନ୍‌ଙ୍କ ଦ୍ୱାରା ସେ ପୁରସ୍କୃତ । ୧୯୭୯ରେ 'ନୁପୁର ସଂଗଠନ', ଖଡ଼ଗପୁର ଓ ୧୯୮୬ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଥିବା ବେଳେ ୧୯୮୩-୮୪ ଲାଗି କେନ୍ଦ୍ର ସରକାରଙ୍କଠାରୁ ଛଉ ସଙ୍ଗୀତରେ 'ଫେଲୋସିପ୍' ଲାଭ କରିଥିଲେ ।

ସ୍ୱର୍ଗତ ପାଣି ନିଜର ଜୀବଦ୍ଦଶାରେ ବାରିପଦାରେ ଉତ୍ତରସାହି ଓ ଦକ୍ଷିଣସାହି ଉଭୟରେ ଗୁରୁ ହେବାର ସ୍ୱୀକୃତି ଓ ସୁଯୋଗ ପାଇ ଦୀର୍ଘଦିନ ଉପଯୁକ୍ତ ଭାବେ ଯେଉଁ ସେବା କରି ଯାଇଛନ୍ତି ସେଥି ନିମନ୍ତେ ସେ ଚିରସ୍ମରଣୀୟ । ୧୯୮୯ ଫେବ୍ରୁଆରୀ ୨୧ ତାରିଖରେ ଶ୍ରୀ ପାଣି ଇହଧାମ ତ୍ୟାଗ କରିଥିଲେ ମଧ୍ୟ ତାଙ୍କର ତ୍ୟାଗପୂତ ଜୀବନର ଅଲିଭା କାହାଣୀ ଭବିଷ୍ୟତର ଛଉନୃତ୍ୟ ଶିଳ୍ପୀଙ୍କୁ ସବୁଦିନେ ସାହସ ଯୋଗାଉଥିବ ।



**ଶ୍ରୀ ଆନନ୍ଦ ଶଙ୍କର ଦାସ**
ବାରିପଦା, ମୟୂରଭଞ୍ଜ

ଜନ୍ମ—୧୯୨୯, ମାର୍ଚ୍ଚ ୨

ଓଡ଼ିଶାର ନାଟ୍ୟ ଆନ୍ଦୋଳନର ଅନ୍ୟତମ ପୁରୋଧା ନାଟ୍ୟକାର ଆନନ୍ଦଶଙ୍କର ଦାସ ୧୯୨୯ ମସିହା ମାର୍ଚ୍ଚ ମାସ ୨ ତାରିଖରେ ମୟୂରଭଞ୍ଜ ଜିଲ୍ଲାର ସଦର ମହକୁମା ବାରିପଦାଠାରେ ଜନ୍ମଗ୍ରହଣ କରିଥିଲେ । ୧୯୪୪ ରେ ବାରିପଦା ଉଚ୍ଚ ବିଦ୍ୟାଳୟରୁ ଉଚ୍ଚ ମାଧ୍ୟମିକ ଶିକ୍ଷାଲାଭ ପରେ ମେଦିନୀପୁର କଲେଜରେ ବିଜ୍ଞାନ ସ୍ନାତକ ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇ ଶିକ୍ଷା ତ୍ୟାଗ କରନ୍ତି ୧୯୪୯ ମସିହାରେ । ୧୯୫୩ ରୁ ୧୯୬୦ ମସିହା ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ଶିଳ୍ପ ବିଭାଗରେ କାର୍ଯ୍ୟ କରିବା ପରେ ବାରିପଦା ହସ୍ପିଟାଲ୍‌ରେ ୧୯୬୦ ରୁ ୧୯୮୭ ପର୍ଯ୍ୟନ୍ତ ଲାବୋରେଟାରୀ ଆସିଷ୍ଟାଣ୍ଟ ରୂପେ କାର୍ଯ୍ୟକରି ଅବସର ଗ୍ରହଣ କରିଛନ୍ତି । ୧୯୮୦ ମସିହାଠାରୁ ଅଦ୍ୟାବଧି ବାରିପଦା ସାହିତ୍ୟ ସଂସଦର ଉପସଭାପତି ରୂପେ କାର୍ଯ୍ୟ କରି ଆସୁଅଛନ୍ତି ।

ନିଜର କଲେଜ ଜୀବନରୁ ହିଁ ଶ୍ରୀ ଦାସ ନାଟକ ଲେଖିବା, ଅଭିନୟ କରିବା ଏବଂ ନିର୍ଦ୍ଦେଶନା ଦେବା ଆଦି ସମସ୍ତ ରଙ୍ଗମଞ୍ଚ କଳାରେ ନିପୁଣ ଥିବା ଯୋଗୁ ଜଣେ ବିଶିଷ୍ଟ ନାଟ୍ୟକାର ଭାବରେ ତାଙ୍କୁ ସବୁଆଡ଼ୁ ସ୍ୱୀକୃତି ମିଳିଛି । ୧୯୪୮ ରୁ ୧୯୮୯ ପର୍ଯ୍ୟନ୍ତ ତାଙ୍କ ଲିଖିତ ଓ ପ୍ରକାଶିତ ନାଟକଗୁଡ଼ିକ ମଧ୍ୟରେ ସମାଧି, ଯୌତୁକ, ଚନ୍ଦ୍ରବିନ୍ଦୁ, ଲୁହାଣି କୂଳ, ଚକାଭଉଁରୀ, ସନୁମଙ୍ଗର ଖେଳ, କପଟପାଶା, ଧର୍ମର ଅଭିଶାପ, ଫୁଲଶଯ୍ୟା, ଛଏ କଣ କାହିଁକି, ଦୁଇଟି ଆଖି, ଡାକ୍ତରଖାନା, ମୂଳଚନ୍ଦନ, କଉଡ଼ିଖେଳ, ସ୍ୱର୍ଗ ମର୍ତ୍ତ୍ୟ ପାତାଳ, ଉପହାର ଇତ୍ୟାଦିର ନାମ ଉଲ୍ଲେଖଯୋଗ୍ୟ । ଏହା ବାଦ୍ ସେ ବୁଲୁଓସ୍ତାଦ୍ (୧୯୫୮) ଓ ମଣିକାଞ୍ଚନ (୧୯୫୯) ନାମକ ଦୁଇଟି ଶିଶୁ ନାଟକର ମଧ୍ୟ ରଚୟିତା ।

ତାଙ୍କ ରଚିତ ଏକାଙ୍କିକା 'ଗୀତାପଣ୍ଡା' କଟକ ଆକାଶବାଣୀ କେନ୍ଦ୍ର ଦ୍ୱାରା ୧୯୮୯ ରେ ପ୍ରସାରିତ । ଶ୍ରୀ ଦାସ ନିଜେ ସର୍ବସାଧାରଣସ୍ତର ବା ଆନ୍ତର୍ଜାତିକ ସ୍ତରରେ ଅଭିନୟ ବା ନିର୍ଦ୍ଦେଶକ ରୂପେ ଆତ୍ମପ୍ରକାଶ ନ କରିଥିଲେ ମଧ୍ୟ ମୟୂରଭଞ୍ଜ, କେନ୍ଦୁଝର ଏବଂ ବାଲେଶ୍ୱର ଜିଲ୍ଲାରେ ଶତାଧିକ ନାଟକରେ ଅଭିନେତା ବା ନିର୍ଦ୍ଦେଶକ ଭାବରେ ଅଂଶ ଗ୍ରହଣ କରିଛନ୍ତି ।

ଶ୍ରୀ ଦାସଙ୍କର ବହୁ ଅପ୍ରକାଶିତ ନାଟକ, ଅନୁସୃତ ନାଟକ ଏବଂ ଏକାଙ୍କିକା ପାଣ୍ଡୁଲିପି ଆକାରରେ ରହିଅଛି । ଅପ୍ରକାଶିତ ନାଟକ ମଧ୍ୟରେ କୋହିନୂର, ଦାସୀ, ଶେଷଦେଖା, କରୁଣୀ, ନବଯୁଗର ନାରୀ, ଅଭିଶପ୍ତ, ଝିଗିଆ ମୁକ୍ତି । ଅପ୍ରକାଶିତ ଅନୁସୃତ ନାଟକ ମଧ୍ୟରେ ସାହାଜାହାନ, ମାନସୀ, କାଳିନ୍ଦୀ, ତାପସୀ, ପଞ୍ଚୁ ଉପାଖ୍ୟାନ ଓ ଟଙ୍କାର ରଙ୍ଗ କଳା; ଅପ୍ରକାଶିତ ଏକାଙ୍କିକା ମଧ୍ୟରେ ସାମ୍ପ ପାଣ୍ଡବ, ପେଟେଣ୍ଟ ମେଡ଼ିସିନ୍ ଓ ଅଧର୍ମବିତ୍ତ ଇତ୍ୟାଦିର ନାମ ଉଲ୍ଲେଖଯୋଗ୍ୟ । ଏକାଙ୍କିକା ଅଧର୍ମବିତ୍ତ ଆକାଶବାଣୀ କଟକ କେନ୍ଦ୍ରଦ୍ୱାରା ପ୍ରସାରିତ ।

ଶ୍ରୀଯୁକ୍ତ ଦାସ ଆକାଶବାଣୀ ଏବଂ ଦୂରଦର୍ଶନ ନିମନ୍ତେ ନାଟ୍ୟକାର ଭାବରେ ସ୍ୱୀକୃତିପ୍ରାପ୍ତ । ଏହା ବ୍ୟତୀତ ଶ୍ରୀ ଦାସଙ୍କ ତିନୋଟି ନାଟକ ଚଳଚ୍ଚିତ୍ରରେ ରୂପାୟିତ ହୋଇଛି । ସେସବୁ ହେଲା 'ଅଭିମାନ' 'ମୁଲଚନ୍ଦନ' ଏବଂ 'ପରଦେଶୀ ଚଢ଼େଇ' । ୧୯୭୭ ରେ ପ୍ରସ୍ତୁତ ଚଳଚ୍ଚିତ୍ର 'ଅରୁନ୍ଧତୀ' ର ସେ ମଧ୍ୟ ଚିତ୍ରନାଟ୍ୟ ଓ ସଂଳାପ ଲେଖକ । ତାଙ୍କ ଲିଖିତ ଅନ୍ୟୂନ ଦଶଟି କ୍ଷୁଦ୍ର ଗଳ୍ପ ଏବଂ ନାଟ୍ୟ ସମାଲୋଚନା ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ।

ଓଡ଼ିଶା ନାଟ୍ୟ ଜଗତକୁ ନିଜର ଅବଦାନ ନିମନ୍ତେ ଶ୍ରୀଯୁକ୍ତ ଦାସ ଅନେକ ଅନୁଷ୍ଠାନରୁ ସମ୍ମାନ ଓ ପୁରସ୍କାରପ୍ରାପ୍ତ । ୧୯୫୭ ରେ ରାଜ୍ୟସରକାରଙ୍କ ଶିକ୍ଷା ବିଭାଗ ତରଫରୁ ନାଟକ 'ନବଯୁଗର ନାରୀ' ନାଟକ ନିମନ୍ତେ ପୁରସ୍କୃତ । ୧୯୫୮ ରେ ଓଡ଼ିଶା ସଙ୍ଗୀତ ପରିଷଦ, ପୁରୀ, ତରଫରୁ ଶିଶୁ ନାଟକ 'ବୁଲୁଓସ୍ତାଦ୍' ନିମନ୍ତେ ପୁରସ୍କୃତ । ୧୯୬୩ ରେ ଓଡ଼ିଶା ସ୍ୱାସ୍ଥ୍ୟ ବିଭାଗ ତରଫରୁ ନାଟକ 'ଅଭିଶପ୍ତ' ନିମନ୍ତେ, ୧୯୬୭ ରେ 'କଳାଚିତ୍ର ଜଗତ' କଟକ ତରଫରୁ 'ଅଭିମାନ' ଚଳଚ୍ଚିତ୍ରର ବଚନିକା ନିମନ୍ତେ ଏବଂ ୧୯୮୬ ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସଫଳ ନାଟ୍ୟକାର ଭାବେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ । ଏହା ବ୍ୟତୀତ ୧୯୮୬ ରେ ଓଡ଼ିଶା ଫିଲ୍ମ ଜର୍ଣ୍ଣାଲିଷ୍ଟ ଆସୋସିଏସନ୍ କର୍ତ୍ତୃକ ଏବଂ ପୁନର୍ବାର ୧୯୮୦ ରେ ନାଟକ 'ଧର୍ମର ଅଭିଶାପ' ନିମନ୍ତେ ରାଜ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ସମ୍ପ୍ରତି ସେ ବାରିପଦାଠାରେ ବାସ କରୁଅଛନ୍ତି । ବର୍ତ୍ତମାନର ଉଦୀୟମାନ ନାଟ୍ୟକାରମାନେ ତାଙ୍କର ପଦାଙ୍କ ଅନୁସରଣ କଲେ ଯେ ନିଶ୍ଚିତ ଲାଭବାନ୍ ହେବେ ଏହା ନିଃସନ୍ଦେହ ।

●



## ଶ୍ରୀମତୀ ବୀଣାପାଣି ମିଶ୍ର

ପଶୁଟିକର, ବାଲେଶ୍ୱର

ଜନ୍ମ—୧୯୩୨, ଫେବୃୟାରୀ ୧୮

ଓଡ଼ିଆ ସଙ୍ଗୀତ ଜଗତର ଅନ୍ୟତମ ଖ୍ୟାତସଣା ଶାସ୍ତ୍ରୀୟ ଏବଂ ଓଡ଼ିଶୀ କଣ୍ଠ-ସଙ୍ଗୀତ ଶିଳ୍ପୀ ଶ୍ରୀମତୀ ବୀଣାପାଣି ମିଶ୍ର ୧୯୩୨ ମସିହା ଫେବୃୟାରୀ ମାସ ୧୮ ତାରିଖରେ ବାଲେଶ୍ୱର ଜିଲ୍ଲାର ଭଦ୍ରଖ ନିକଟବର୍ତ୍ତୀ ପଶୁଟିକର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ପାଞ୍ଚବର୍ଷ ବୟସରୁ ସେ ସଙ୍ଗୀତ ଶିକ୍ଷା ଆରମ୍ଭ କରି ପରବର୍ତ୍ତୀ ସମୟରେ କଟକର ପ୍ରସିଦ୍ଧ ଶାସ୍ତ୍ରୀୟ ସଙ୍ଗୀତଜ୍ଞ ସ୍ୱର୍ଗତ କୁଣ୍ଡଳାଦି ନାରାୟଣ ରାଓଙ୍କ ନିକଟରୁ ଶାସ୍ତ୍ରୀୟ ଗାୟନ ଶିକ୍ଷା କରି ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳରୁ 'ବିଶାରଦ' ଉପାଧି ଲାଭ କରନ୍ତି । ଏହାପରେ ଶ୍ରୀମତୀ ମିଶ୍ର ଦୀର୍ଘ ଦଶବର୍ଷ କାଳରୁ ଅଧିକ ପଦ୍ମଶ୍ରୀ ଗିରିଜା ଦେବୀଙ୍କ ନିକଟରୁ ଖେୟାଲ, କଜ୍ରୀ, ଠୁମ୍ରୀ, ଟପ୍ପା, ଦାଦ୍ରା ଓ ଚଇତ ଆଦି ଗାୟନ ଶୈଳୀ ଶିକ୍ଷା ଲାଭ କରି ତହିଁରେ ପାରଦର୍ଶିତା ଲାଭ କରନ୍ତି ।

ଶ୍ରୀମତୀ ମିଶ୍ର ଜଣେ ହିନ୍ଦୁସ୍ଥାନୀ କଣ୍ଠ ଶିଳ୍ପୀ ଭାବରେ ପ୍ରସିଦ୍ଧି ଲାଭ କରିଥିଲେ ହେଁ ଓଡ଼ିଶୀ ଓ କୀର୍ତ୍ତନ ଗାୟନରେ ମଧ୍ୟ ପାରଦର୍ଶିତା ଅର୍ଜନ କରିଛନ୍ତି । ୧୯୪୭ରୁ ସେ ଆକାଶବାଣୀରୁ ସଙ୍ଗୀତ ପ୍ରଚାର କରିବା ସହ ରାଜ୍ୟ ମଧ୍ୟରେ ଏବଂ ବାହାରେ ବହୁ ସଙ୍ଗୀତ ସମ୍ମିଳନୀରେ ଅଂଶ ଗ୍ରହଣ କରି ଅନେକ ସମ୍ମାନ ଏବଂ ପ୍ରଶଂସା ଲାଭ କରିଛନ୍ତି ।

ସଙ୍ଗୀତ କ୍ଷେତ୍ରରେ ତାଙ୍କର ଏତାଦୃଶ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀମତୀ ମିଶ୍ରଙ୍କୁ ୧୯୮୨-୮୩ ବର୍ଷରେ ସମ୍ବର୍ଦ୍ଧିତ ଏବଂ ସମ୍ମାନିତ କରିଅଛନ୍ତି ।



## ଶ୍ରୀ ନଟବର ସେଣ
ଲମ୍ବୋଦରପୁର, ପୁରୀ

ଜନ୍ମ – ୧୯୨୩, ମାର୍ଚ୍ଚ ୨୪

ଓଡ଼ିଶା ରଙ୍ଗମଞ୍ଚର ଅନ୍ୟତମ ପେଷାଦାର ବରିଷ୍ଠ ଅଭିନେତା ଏବଂ ନିର୍ଦ୍ଦେଶକ ଶ୍ରୀ ନଟବର ସେଣ ୧୯୨୩ ମସିହା ମାର୍ଚ୍ଚ ୨୪ ତାରିଖରେ ପୁରୀ ଜିଲ୍ଲା ବାଣପୁର ଥାନା ଲମ୍ବୋଦରପୁରରେ ଗୋଟିଏ କୃଷୀ କୁଳରେ ଜନ୍ମଗ୍ରହଣ କରିଥିଲେ । ୧୯୩୩ରେ ମାତ୍ର ୧୦ ବର୍ଷ ବୟସରେ ନିଜ ଗ୍ରାମରେ ଆରମ୍ଭ ହୋଇଥିବା ଯାତ୍ରାଦଳରେ ଯୋଗଦେଇ ସେ ନିଜର ଅଭିନୟ ଜୀବନର ଶୁଭାରମ୍ଭ କରିଥିଲେ । ସ୍ୱର୍ଗତ ଗଣନାଥ ବୈଷ୍ଣବ ପାଣିଙ୍କ "କଂସବଧ" ଗୀତନାଟ୍ୟରେ ତାଙ୍କ ଜୀବନର ପ୍ରଥମ ଅଭିନୟ ଆରମ୍ଭ । ଏହି ସମୟରେ ସେ ସ୍ୱ. ବାଳକୃଷ୍ଣ ମହାନ୍ତିଙ୍କ ରଚିତ ଦଶଟି ଗୀତାଭିନୟରେ ଅଭିନୟ କରିଥିଲେ । ପରେ ଏହି ଯାତ୍ରାଦଳ ଅନ୍ନପୂର୍ଣ୍ଣା ଏ' ଓ ବି' ଗ୍ରୁପ୍ ଦଳରେ ପରିଣତ ହୋଇଥିଲା । ସେ ଏହି ସମୟରେ ସ୍ୱ. ମୋହନ ସୁନ୍ଦର ଦେବ ଏବଂ ସ୍ୱ. ଗୋବିନ୍ଦ ଚନ୍ଦ୍ର ଶୁରଦେଓଙ୍କ ରାସଲୀଳା ଦଳରେ ମଧ୍ୟ ଯୋଗ ଦେଇଥିଲେ । ପରେ ସେ ନାଟ୍ୟକାର ସ୍ୱ. ଅଶ୍ୱିନୀ କୁମାର ଘୋଷ, ନାଟ୍ୟକାର ମନୋରଞ୍ଜନ ଦାସ ଏବଂ ଲକ୍ଷ୍ମୀଧର ନାୟକଙ୍କର ବିଭିନ୍ନ ନାଟକରେ ସଫଳତାର ସହ ଅଭିନୟ କରିଥିଲେ । ୧୯୫୦ରେ ସେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ରଙ୍ଗମଞ୍ଚ ପରିତ୍ୟାଗ କଲେ । ପରେ ପରେ ସେ ରୂପଶ୍ରୀରଙ୍ଗ'ର 'ରୂପଶ୍ରୀ' ଥିଏଟର ଗଠିତ ହେବା ପରେ ତହିଁରେ ଯୋଗଦେଇ ଦୁଇବର୍ଷ କାର୍ଯ୍ୟ କରିଥିଲେ । ୧୯୫୨ରେ ରୂପଶ୍ରୀର ପତନ ଘଟିବା ପରେ ସେ ନିଜେ ନିଜର ଉଦ୍ୟମ ସଙ୍ଗଠନ ଶକ୍ତିର ପରିଚୟ ଦେଇ ଅନ୍ୟାନ୍ୟ କଳାକାରମାନଙ୍କୁ ସଂଗଠିତ କରାଇ 'ଜନତା ରଂଗମଞ୍ଚ'ର ପ୍ରତିଷ୍ଠା କଲେ । ଏହି ରଂଗମଞ୍ଚ କଟକ ସହରରେ ୧୯୫୩ ମସିହାଠାରୁ ୧୯୬୫ ପର୍ଯ୍ୟନ୍ତ ନାଟକ ପ୍ରଦର୍ଶନ କରିଥିଲା । ସେ ଏହାର ସଂଗଠକ, କଳାକାର, ନିର୍ଦ୍ଦେଶକ ଏବଂ ମୁଖ୍ୟ ସମ୍ପାଦକର ଦାୟିତ୍ୱ ତୁଲାଉଥିଲେ ।

୧୯୬୧ରେ ରବୀନ୍ଦ୍ର ଶତବାର୍ଷିକୀ ଜୟନ୍ତୀ ଉପଲକ୍ଷେ କବିଗୁରୁଙ୍କ ରଚିତ 'ଶରକୁମାର ସଭା'ର ନାଟ୍ୟରୂପ 'ନରସିଂହ ମହାମାନ୍ତ' ଜନତା ରଂଗମଞ୍ଚରେ ଅଭିନୀତ ହୋଇ ଅଜସ୍ର ପ୍ରଶଂସା ଲାଭ କରିଥିଲା । ଶ୍ରୀ ସେଣ ୧୯୬୫ରେ ଜନତା ରଂଗମଞ୍ଚ ତ୍ୟାଗ

କରି ଉତ୍କଳ ସ୍ମୃତି କଳା ମଣ୍ଡପ ସହଯୋଗରେ 'କଳାଶ୍ରୀ ଥିଏଟର' ପ୍ରତିଷ୍ଠା କରିଥିଲେ । ଏହାର ପ୍ରଥମ ନାଟକ ଥିଲା 'ଧୂପ ଓ ଦୀପ' । ୧୯୬୭ ଡିସେମ୍ବର ମାସରେ ନିଖିଳ ଭାରତ ନାଟକୋତ୍ସବରେ ଓଡ଼ିଶାର ପ୍ରତିନିଧିଭାବେ ଦିଲ୍ଲୀରେ କଳାଶ୍ରୀ ଥିଏଟର ନାଟକ 'ଶାନ୍ତି' ମଞ୍ଚସ୍ଥ କରିଥିଲେ, ଯାହା ଦିଲ୍ଲୀ ଦୂରଦର୍ଶନରେ ମଧ୍ୟ ପ୍ରସାରିତ ହୋଇଥିଲା ।

ପରବର୍ତ୍ତୀ ସମୟରେ ୧୯୭୧ ମସିହାରେ 'କଳାଶ୍ରୀ ଥିଏଟର' ବନ୍ଦ ହୋଇଗଲେ ମଧ୍ୟ ତାହାର ପୁନରୁଦ୍ଧାର ଚେଷ୍ଟାରେ ଶ୍ରୀ ସେଣ ତ୍ରୁଟି କରି ନ ଥିଲେ । ପରେ ୧୯୭୫ରେ କେତେକ କଳାକାରଙ୍କୁ ସଂଗଠିତ କରି 'ଆମେ କଳାକାର' ନାମରେ ଏକ ଗୋଷ୍ଠୀ ଗଠନ କରି ଅନ୍ନପୂର୍ଣ୍ଣା ମଞ୍ଚରେ କେତେକ ନାଟକ ମଞ୍ଚସ୍ଥ କରାଇଥିଲେ । ୧୯୭୯ରେ ଏକକ ଚରିତ୍ର ନାଟକ 'କ୍ଲାନ୍ତ ନରପତି' ଜନତା ରଙ୍ଗମଞ୍ଚରେ ମଞ୍ଚସ୍ଥ କରାଇ ସେ ବହୁ ପ୍ରଶଂସା ଲାଭ କରିଥିଲେ । ୧୯୮୦ରେ ଶିଳ୍ପୀ ଗୋଷ୍ଠୀଦ୍ୱାରା ଅଭିନୀତ 'ଅଣ୍ଡର ସେକ୍ରେଟାରୀ' ନାଟକରେ ସେ ଏକ ବଳିଷ୍ଠ ଭୂମିକାରେ ଅଭିନୟ କରି ଉଚ୍ଚପ୍ରଶଂସା ଲାଭ କରିଥିଲେ ।

ପୁରାତନ ସାହିତ୍ୟ ଅନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ'ରେ ୧୯୭୨ରୁ ୧୯୭୯ ପର୍ଯ୍ୟନ୍ତ ସେ ସଭ୍ୟ ଥିଲେ । ୧୯୬୭ରୁ ୧୯୭୯ ପର୍ଯ୍ୟନ୍ତ ଭାରତୀୟ ନାଟ୍ୟ ସଙ୍ଘ ଓଡ଼ିଶା ଶାଖାର ସାଧାରଣ ସଭ୍ୟ ଥିଲେ । ୧୯୭୯-୮୦ ମସିହାରୁ ୩ ବର୍ଷ ପର୍ଯ୍ୟନ୍ତ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ସାଧାରଣ ପରିଷଦ ସଭ୍ୟଭାବେ ଓ ସଙ୍ଗୀତ ମହାବିଦ୍ୟାଳୟର କାର୍ଯ୍ୟକାରୀ ସଭାର ସଭ୍ୟଭାବେ, ରାଜ୍ୟ ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ ।

ନିଜର ଅଭିନୟ ପ୍ରତିଭା ଏବଂ ଓଡ଼ିଶାରେ ନାଟ୍ୟକଳା ତଥା ରଙ୍ଗମଞ୍ଚର ବିକାଶ ନିମନ୍ତେ ସଦାଚେଷ୍ଟିତ ଶ୍ରୀ ସେଣ ବହୁବାର ବହୁ ସାଂସ୍କୃତିକ ଅନୁଷ୍ଠାନ ତରଫରୁ ସମ୍ମାନିତ ଏବଂ ପୁରସ୍କୃତ । ତନ୍ମଧ୍ୟରୁ ୧୯୭୨ରେ ବିଷୁବ ମିଳନ ପୁରସ୍କାର, କବିଚନ୍ଦ୍ର ସ୍ମୃତି ସଂସଦ ପୁରସ୍କାର, କଳାବିକାଶ କେନ୍ଦ୍ର, ଉତ୍କଳ ନାଟ୍ୟ ସଂଘ ପ୍ରଭୃତି ଦ୍ୱାରା ସମ୍ମାନିତ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ୧୯୮୨-୮୩ ବର୍ଷରେ ସେ ସମ୍ବର୍ଦ୍ଧିତ ତଥା ଦଶମ ରାଜ୍ୟ ଚଳଚ୍ଚିତ୍ର ଉତ୍ସବରେ ସମ୍ମାନିତ ।

ଓଡ଼ିଶାର ନାଟ୍ୟ ଜଗତ ଏବଂ ରଙ୍ଗମଞ୍ଚ ନିମନ୍ତେ ସମର୍ପିତପ୍ରାଣ ଶ୍ରୀଯୁକ୍ତ ସେଣ ବିଭିନ୍ନ ନାଟ୍ୟକାରମାନଙ୍କ ଜୀବନୀ ଲେଖିବା, ବିଭିନ୍ନ ସୌଖୀନ ତଥା ପେଷାଦାର ନାଟ୍ୟ ସଂସ୍ଥାରେ ନିର୍ଦ୍ଦେଶନା ଦେବା କାର୍ଯ୍ୟରେ ଏବେ ମଧ୍ୟ ଲାଗି ରହିଛନ୍ତି । ତାଙ୍କର କର୍ମମୟ ଜୀବନ ହିଁ ଆସନ୍ତା କାଲିର କଳାକାରମାନଙ୍କ ନିମନ୍ତେ ପ୍ରେରଣା ।

# ଶ୍ରୀ ପଦ୍ମନାଭ ପଣ୍ଡା

## ପୁରୀ ସହର

ଜନ୍ମ—୧୯୨୦, ମେ ୧୨



ଉତ୍କଳୀୟ ରୀତରେ ପଖାଉଜ ବାଦନଶୈଳୀକୁ ନିଜର କରିନେଇ ତାହାର ବିକାଶରେ ଯେଉଁମାନେ ସାରାଜୀବନକୁ ସମର୍ପିତ କରିଅଛନ୍ତି, ସେମାନଙ୍କ ମଧ୍ୟରେ ପଣ୍ଡିତ ପଦ୍ମନାଭ ପଣ୍ଡାଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଶ୍ରୀ ପଣ୍ଡା ୧୯୨୦ ମସିହା ମଇ ମାସ ୧୨ ତାରିଖରେ ପୁରୀ ସହରର ହରଚଣ୍ଡୀ ସାହିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ୰ ପରମାନନ୍ଦ ପଣ୍ଡା ଏବଂ ମାତାଙ୍କ ନାମ ଚମ୍ପାବତୀ ଦେବୀ ।

ବାଲ୍ୟକାଳରୁ ତାଙ୍କର ପିତୃମାତୃ ବିୟୋଗ ଘଟିବାରୁ ତାଙ୍କର ବାଲ୍ୟଶିକ୍ଷା ମାଟିବଂଶ ଅବଧାନଙ୍କ ଚାଟଶାଳୀ ଘରରୁ ହିଁ ଶେଷ ହୋଇଯାଇଥିଲା । ତାଙ୍କର ମା' ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କୁ ଅଧିକ ପଢ଼ିବା ନିମନ୍ତେ ପ୍ରୋତ୍ସାହନ ଦେଉଥିଲେ ମଧ୍ୟ ସେମାନଙ୍କ ବିୟୋଗ ପରେ ସେ ନିଜ ଚେଷ୍ଟାରେ ଆଉ ଅଧିକ ପଢ଼ିବାରେ ସଫଳ ହୋଇପାରି ନଥିଲେ । ଓଡ଼ିଶୀ ସଂସ୍କୃତିର ପ୍ରାଣକେନ୍ଦ୍ର ପୁରୀ ସହରରେ ଉତ୍କଳୀୟ ଶୈଳୀର ମର୍ଦ୍ଦଳ ଏବଂ ପଖାଉଜ ବାଦନ ତାଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା । ମାତ୍ର ନଅବର୍ଷ ବୟସରୁ ବିଭିନ୍ନ ଓସ୍ତାଦ୍‌-ମାନଙ୍କର ବାଦନକୁ ଗୁପ୍ତ ଭାବରେ ଲକ୍ଷ୍ୟ କରି ତାକୁ ମନେରଖି ନିଜେ ସେହିଭଳି ବଜାଇବାକୁ ଚେଷ୍ଟା କରୁଥିଲେ । ସେହି ସମୟରେ ବାଦନ ଜାଣିଥିବା ବାଦ୍ୟକାରମାନେ ତାଙ୍କ ବିଦ୍ୟା ସହଜରେ କାହାରିକୁ ଶିକ୍ଷା ଦେଉନଥିଲେ ମଧ୍ୟ ଶ୍ରୀ ପଣ୍ଡା ଏକଲବ୍ୟର ମନନେଇ ମର୍ଦ୍ଦଳ ସାଧନାରେ ନିଜକୁ ହଜାଇ ଦେଇ ବହୁ କଷ୍ଟ ଓ ତ୍ୟାଗ ସ୍ୱୀକାର କରି ତହିଁରେ ସିଦ୍ଧିଲାଭ କରିଥିଲେ ।

ପଖାଉଜ ଏବଂ ମର୍ଦ୍ଦଳ ବାଦନ କରିବା ନିମନ୍ତେ ସେ ନିଜ ପିତାଙ୍କ ନିକଟରୁ ପ୍ରେରଣା ପାଇ ପ୍ରଥମେ ୰ ଗାଢ଼ି ଜଗନ୍ନାଥ ପ୍ରତିହାରୀଙ୍କ ନିକଟରୁ ପଖାଉଜ ବାଦନର ଶାସ୍ତ୍ରୀୟ ଶିକ୍ଷା ଆରମ୍ଭ କରିଥିଲେ । ମାତ୍ର ଅଳ୍ପ ସମୟ ମଧ୍ୟରେ ୰ ଜଗନ୍ନାଥ ପ୍ରତିହାରୀଙ୍କର

ସମସ୍ତ ହୋଇଯିବାରୁ ଶ୍ରୀ ପଣ୍ଡା ସ୍ୱର୍ଗତ ମାନଗୋବିନ୍ଦ ଦାସଙ୍କ ନିକଟରୁ ବାଦନ ଶିକ୍ଷା ଲାଭ କରିଥିଲେ । ତାଙ୍କ ପ୍ରାୟ ୧୬ ବର୍ଷ ବୟସରେ ସେ ୧୯୩୬ରେ ପ୍ରସିଦ୍ଧ ସଙ୍ଗୀତଜ୍ଞ • ସିଂହାରୀ ଶ୍ୟାମସୁନ୍ଦର କରଙ୍କ ନିକଟରେ ଶିଷ୍ୟ ରୂପେ ରହି ସୁଦୀର୍ଘ ୨୫ ବର୍ଷ କାଳ ପଖାଉଜ ବାଦନ ଶିକ୍ଷା କରିଥିଲେ ଏବଂ ଏହି ଉତ୍କଳୀୟ ଶୈଳୀର ମର୍ଦ୍ଦଳ ଓ ପଖାଉଜ ବାଦନରେ ପୂର୍ଣ୍ଣତା ଲାଭ କରିଥିଲେ । ଏହି ସମୟରେ ସେ ପୁରୀ ଜିଲ୍ଲାର ଖୋର୍ଦ୍ଧା ଶାସନ ବୁଲି କଳାପ୍ରଦର୍ଶନ କରି ସମସ୍ତଙ୍କୁ ମୁଗ୍ଧ କରି ଅଜସ୍ର ପ୍ରଶଂସା ଲାଭ କରିଥିଲେ ।

ପରବର୍ତ୍ତୀ ସମୟରେ ଶ୍ରୀ ପଣ୍ଡା ନିଜେ ଶିକ୍ଷକ ରୂପେ ବହୁ ଛାତ୍ରଙ୍କୁ ମର୍ଦ୍ଦଳ ଏବଂ ପଖାଉଜ ବାଦନ ଶିକ୍ଷା ଦେବାକୁ ଲାଗିଲେ ଏବଂ ନିଜର ଅଗଣିତ ଛାତ୍ରମାନଙ୍କୁ ଲୁପ୍ତପ୍ରାୟ ଉତ୍କଳୀୟ ବାଦନ ଶୈଳୀର ପରିନା ଶିକ୍ଷା ଦେଇ ଏହି କଳାକୁ ନୂତନ ଜୀବନ୍ୟାସ ଦେଲେ ।

ଓଡ଼ିଶାର ଏହି ବରପୁତ୍ରଙ୍କୁ ୧୯୫୩ରେ ପ୍ରଥମେ ପଖାଉଜ ବାଦନ ନିମନ୍ତେ ଆକାଶବାଣୀ କଟକ ତରଫରୁ ନିମନ୍ତ୍ରଣ ମିଳିଥିଲା ଏବଂ ସେହିଦିନଠାରୁ ଅଦ୍ୟାବଧି ଆକାଶବାଣୀ କଟକରେ ସ୍ୱୀକୃତ କଳାକାର ଭାବରେ କାର୍ଯ୍ୟ କରୁଅଛନ୍ତି । ୧୯୮୦ରେ କଟକ ଦୂରଦର୍ଶନ କେନ୍ଦ୍ର ସ୍ଥାପିତ ହେବାପରେ ସେ ତହିଁରେ ମଧ୍ୟ ନିମନ୍ତ୍ରିତ କଳାକାର ଭାବରେ ପଖାଉଜ ଏବଂ ମର୍ଦ୍ଦଳ ବାଦନର ସୁଯୋଗ ଲାଭ କରି ନିଜର କଳାକୁ ସାରା ଓଡ଼ିଶାବାସୀଙ୍କ ସମ୍ମୁଖରେ ପ୍ରଦର୍ଶନ କରି ପାରିଥିଲେ । ଏହା ବ୍ୟତୀତ ଶ୍ରୀ ପଣ୍ଡା ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର କାର୍ଯ୍ୟକ୍ରମ, ଭଞ୍ଜ ଜୟନ୍ତୀ, କଟକ ଓ ଅନ୍ୟାନ୍ୟ ସଙ୍ଗୀତ କାର୍ଯ୍ୟକ୍ରମରେ ପଖାଉଜ ବାଦନ କରି ବହୁ ପ୍ରଶଂସିତ । ଏତଦ୍‌ବ୍ୟତୀତ ପ୍ରତ୍ୟେକ ବର୍ଷ ଶ୍ରୀମନ୍ଦିର ଝୁଲଣ ଯାତ୍ରା ସମୟରେ ସଙ୍ଗୀତ ଆସରରେ ଯୋଗଦେଇ ବହୁ ଆଦୃତ ହୋଇଛନ୍ତି ।

ଉତ୍କଳୀୟ ଶୈଳୀର ପଖାଉଜ ଏବଂ ମର୍ଦ୍ଦଳ ବାଦନ କ୍ଷେତ୍ରରେ ନିଜର ଅନନ୍ୟ କୃତିତ୍ୱ ନିମନ୍ତେ ଶ୍ରୀ ପଣ୍ଡା ୧୯୮୨ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ କର୍ତ୍ତୃକ ସମ୍ମାନିତ ଏବଂ ପୁରସ୍କୃତ । ଏବେ ଶ୍ରୀ ପଣ୍ଡା ପୁରୀଠାରେ ଅବସ୍ଥାନ କରୁଛନ୍ତି ।

●



# ଶ୍ରୀ ହରେକୃଷ୍ଣ ବେହେରା

## କୁଆଁଳ, ବାଲେଶ୍ୱର ଜିଲ୍ଲା

ଜନ୍ମ—୧୯୩୮ ମସିହା

ଗୁରୁ ଶ୍ରୀ ହରେକୃଷ୍ଣ ବେହେରା ୧୯୩୮ ମସିହାରେ ବାଲେଶ୍ୱର ଜିଲ୍ଲାର କୁଆଁଳ ଗ୍ରାମର ଏକ କଳାକାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ସାତବର୍ଷ ବୟସରୁ ନିଜର ସ୍ୱାଭାବିକ ଶକ୍ତି ଦ୍ୱାରା ସେ ଶ୍ରୀ ରାମହରି ବେହେରାଙ୍କଠାରୁ ଗୋଟିପୁଅ ନାଚ, ଯାତ୍ରା ଓ ଶ୍ରୀ ରାମଚନ୍ଦ୍ର ଦେଙ୍କ ଠାରୁ ଯାତ୍ରା ଏବଂ ଅନ୍ୟାନ୍ୟ ଧରଣର ନୃତ୍ୟ ଶିକ୍ଷାଲାଭ କରିଥିଲେ । ପରେ ଶ୍ରୀ ରାମଚନ୍ଦ୍ର ମହାପାତ୍ରଙ୍କ ନିକଟରୁ ଚମ୍ପୂ, ଛାନ୍ଦ, ଓଡ଼ିଶୀ, ଭଜନ, ଜଣାଣ ସହ ଶାସ୍ତ୍ରୀୟ ସଙ୍ଗୀତ ଏବଂ ତବଲା ବାଦନ ମଧ୍ୟ ଶିକ୍ଷା କରିବାର ସୁଯୋଗ ପାଇଥିଲେ । ଶିକ୍ଷା ସମାପ୍ତି ପରେ ନିଜର କର୍ମମୟ ଜୀବନ ଆରମ୍ଭରେ ସେ ପ୍ରଥମେ ଯାତ୍ରାଦଳର ମାଷ୍ଟର ଓ ପରେ ବାଲେଶ୍ୱରସ୍ଥିତ ନୃତ୍ୟ ସଙ୍ଗୀତ କଳା ମନ୍ଦିରରେ ଗୁରୁଭାବରେ ଯୋଗଦାନ କରି ତହିଁରେ ପାଞ୍ଚବର୍ଷ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ମଧ୍ୟ ଏଥିରେ ତାଙ୍କର କଳାପିପାସୁ ପ୍ରାଣ ସନ୍ତୁଷ୍ଟ ନ ହେବାରୁ ସେ ୧୯୫୬ ରେ କଟକ କଳାବିକାଶ କେନ୍ଦ୍ରରେ ଯୋଗଦାନ କଲେ । ଏହି ସମୟରେ ନର୍ତ୍ତକ ଓ ନୃତ୍ୟଗୁରୁମାନଙ୍କର ଅନୁଷ୍ଠାନ 'ଜୟନ୍ତିକା' ରେ ମଧ୍ୟ ସେ ସଭ୍ୟ ହୋଇଥିଲେ ।

୧୯୬୦ ରେ କଳାବିକାଶ କେନ୍ଦ୍ର ଦ୍ୱାରା ମନୋନୀତ ହୋଇ ଦିଲ୍ଲୀର ନାଟ୍ୟ ବ୍ୟାଲେ ସେଣ୍ଟରରେ ଯୋଗଦାନ କଲେ । ନାଟ୍ୟ ବ୍ୟାଲେସେଣ୍ଟରର ତତ୍କାଳୀନ ନିର୍ଦ୍ଦେଶକ ତାଙ୍କ ନୃତ୍ୟ ପ୍ରତିଭାରେ ପ୍ରଭାବିତ ହୋଇ ନିଜ ଝିଅ ଦୁହିଁଙ୍କର ଓଡ଼ିଶୀ ନୃତ୍ୟ ଶିକ୍ଷାର ଭାର ତାଙ୍କ ଉପରେ ନ୍ୟସ୍ତ କରିଥିଲେ । ପରବର୍ତ୍ତୀ ସମୟରେ ଏହା ତାଙ୍କୁ ଦିଲ୍ଲୀରେ ଏକ ନୃତ୍ୟଶାଳା ଖୋଲିବାର ପ୍ରେରଣା ଯୋଗାଇଥିଲା । ପରେ ଓଡ଼ିଶାକୁ ଫେରିଥିଲେ ମଧ୍ୟ ଏଠାରେ ଆଉ ରହିବାର ସୁଯୋଗ ତାଙ୍କର ନଥିଲା । ପୁନର୍ବାର ୧୯୬୪ ରେ ଓଡ଼ିଶା ସରକାରଙ୍କ ବୃତ୍ତିଲାଭ କରି ସେ ଦିଲ୍ଲୀର ଭାରତୀୟ କଳାକେନ୍ଦ୍ରରେ କଥକ ନୃତ୍ୟର ପ. ବିର୍ଜୁ ମହାରାଜଙ୍କ ନିକଟରୁ କଥକ ନୃତ୍ୟ ଶିକ୍ଷା କରିଥିଲେ । ସେହି ସମୟରେ ସେ ପ୍ରସିଦ୍ଧ ଶାସ୍ତ୍ରୀୟ କଣ୍ଠଶିଳ୍ପୀ ସିଦ୍ଧେଶ୍ୱରୀ ଦେବୀଙ୍କ ନିକଟରୁ ଠୁମରୀ, ଭଜନ ସହ ଓସ୍ତାଦ୍ ପୁରୁଷୋତ୍ତମ ଦାସଙ୍କଠାରୁ ପଖାଓଜ ବାଦନ ଶିକ୍ଷା କରିଥିଲେ ।

୧୯୬୪ ରେ ଗୁରୁ ଶ୍ରୀ ବେହେରା ଦିଲ୍ଲୀରେ ପ୍ରଥମ ଓଡ଼ିଶୀ ନୃତ୍ୟ ଗୁରୁ ଭାବରେ ପ୍ରଥମକରି ଭାରତ ନାଟ୍ୟସଙ୍ଘରେ ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ରୂପରେ ପ୍ରସ୍ତୁତ କରି ଓଡ଼ିଶୀ ନୃତ୍ୟ ଯେ ଭାରତନାଟ୍ୟମ୍ ନୃତ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ ତାହା ପ୍ରମାଣ କରିଥିଲେ ।

ଏକବର୍ଷ ପରେ ଶ୍ରୀ ବେହେରା ଦିଲ୍ଲୀଠାରେ 'ନୃତ୍ୟ ନିକେତନ' ନାମକ ଏକ ଓଡ଼ିଶୀ ନୃତ୍ୟ ଶିକ୍ଷା କେନ୍ଦ୍ର ଖୋଲିଥିଲେ । ଏକାକୀ ଏହି ନୃତ୍ୟଶାଳାକୁ ପରିଚାଳନା କରିବାରେ ଅସମର୍ଥ ହୋଇ ସେ ୧୯୬୬ ରେ ନିଜ ଭ୍ରାତା ସୁରେନ୍ଦ୍ର ଜେନାଙ୍କୁ ଏବଂ ପରବର୍ଷ ଗୁରୁ ମାୟାଧର ରାଉତଙ୍କୁ ଦିଲ୍ଲୀକୁ ଅଣାଇଥିଲେ । ଏହି କେନ୍ଦ୍ରର ପରିଚାଳନାରେ ନାନା ଆର୍ଥିକ ବାଧା ସୃଷ୍ଟି ହେବାରେ ଶ୍ରୀ ବେହେରା ୧୯୭୧ ରେ ଦିଲ୍ଲୀର ଗାନ୍ଧର୍ବ ମହାବିଦ୍ୟାଳୟରେ ନୃତ୍ୟ ଶିକ୍ଷକ ଭାବରେ ଯୋଗଦେଇ ୯ ବର୍ଷକାଳ ତହିଁରେ ଶିକ୍ଷା ଦାନ କରିଥିଲେ ।

ଗୁରୁ ଶ୍ରୀ ବେହେରା ନିଜର ସାଧନା ବଳରେ ଓଡ଼ିଶୀ ନୃତ୍ୟର ବହୁ ନୃତ୍ୟ, ନୃତ୍ୟନାଟିକା, ନୃତ୍ୟାଭିନୟ ଏବଂ ପଲ୍ଲବୀ ଇତ୍ୟାଦି ରଚନାକରି ଓଡ଼ିଶୀ ନୃତ୍ୟକୁ ବହୁ ଭାବରେ ସମୃଦ୍ଧ କରିଅଛନ୍ତି । କଳାବିକାଶ କେନ୍ଦ୍ର, କଟକ ତରଫରୁ ତାଙ୍କୁ 'ନୃତ୍ୟଶ୍ରୀ' ଏବଂ ନୃତ୍ୟଭୂଷଣ ପଦବୀରେ ସମ୍ମାନିତ କରାଯାଇଛି । କଥକ କେନ୍ଦ୍ର ଦିଲ୍ଲୀରୁ ତାଙ୍କୁ 'ନୃତ୍ୟ ବାରିଧି' ଉପାଧିରେ ସମ୍ମାନିତ କରାଯିବା ସଙ୍ଗେ ସଙ୍ଗେ ଓଡ଼ିଶାର ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ୧୯୮୨-୮୩ ରେ ସମ୍ମାନିତ ଓ ପୁରସ୍କୃତ କରି ଅଛନ୍ତି । ୧୯୮୧ ରେ ସେ ସର୍ବଭାରତୀୟ ସମାଲୋଚକ ପୁରସ୍କାର ଏବଂ ୧୯୯୦ ରେ ଦିଲ୍ଲୀ ସାହିତ୍ୟ କଳାପରିଷଦ ପୁରସ୍କାର ମଧ୍ୟ ଲାଭ କରିଥିଲେ ।

୧୯୬୮ ମସିହାରୁ ଗୁରୁ ଶ୍ରୀ ବେହେରା ତାଙ୍କର ଛାତ୍ରଛାତ୍ରୀମାନଙ୍କ ସହ ପୃଥିବୀର ବହୁଦେଶ ଭ୍ରମଣ କରି ଓଡ଼ିଶୀ ନୃତ୍ୟକୁ ସାରା ପୃଥିବୀରେ ପରିଚିତ ଏବଂ ଆଦରଣୀୟ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଅଛନ୍ତି ।

ତାଙ୍କଠାରୁ ଶିକ୍ଷାଲାଭ କରି ଖ୍ୟାତି ଅର୍ଜନ କରିଥିବା ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଗୁରୁ ସୁରେନ୍ଦ୍ର ନାଥ ଜେନା (ଶିକ୍ଷକ, ତ୍ରିବେଣୀ କଳା ସଙ୍ଗମ, ଦିଲ୍ଲୀ), ଆଲେକ । ପାଣିକର (ଶିକ୍ଷକ, ଦିଲ୍ଲୀ), ଶକୁନ୍ତଳା ନାୟାର (ଶିକ୍ଷୟିତ୍ରୀ- ଅଷ୍ଟ୍ରେଲିଆ), ମାଧବୀ ମୁଦ୍‌ଗଲ (ଶିକ୍ଷକ—ଗନ୍ଧର୍ବ ମହାବିଦ୍ୟାଳୟ ଦିଲ୍ଲୀ) ଏବଂ ସୁଧା ଗ୍ରୋଭର୍ (ନିଉଜର୍ସି ଆମେରିକା) ଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଗୁରୁ ଶ୍ରୀ ହରେକୃଷ୍ଣ ବେହେରା ଓଡ଼ିଶୀ ନୃତ୍ୟ ନିମନ୍ତେ ଏକ ସମର୍ପିତ ଆତ୍ମା । ସମଗ୍ର ବିଶ୍ୱ ଦରବାରରେ ଓଡ଼ିଶୀ ନୃତ୍ୟର ପ୍ରଚାର, ପ୍ରସାର ଏବଂ ପ୍ରତିଷ୍ଠା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ଜୀବନର ଅନ୍ତିମକ୍ଷଣ ପର୍ଯ୍ୟନ୍ତ ନୂପୁରକିଙ୍କିଣ ତାଙ୍କ କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେବା ତାଙ୍କର ଅଭିଳାଷ ।

●

## ଶ୍ରୀ ଭୁବନେଶ୍ୱର ମହାପାତ୍ର

ବୀରନରସିଂହପୁର ଶାସନ, ପୁରୀ

ଜନ୍ମ—୧୯୨୫, ଅଗଷ୍ଟ ୨୦



ଓଡ଼ିଆ ଭାଷାରେ ପଚିଶରୁ ଊର୍ଦ୍ଧ୍ୱ ନାଟକ ରଚନା କରି ଓଡ଼ିଶାର ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଥିବା ବିଶିଷ୍ଟ ନାଟ୍ୟକାର ଶ୍ରୀ ଭୁବନେଶ୍ୱର ମହାପାତ୍ର ୧୯୨୫ ମସିହା ଅଗଷ୍ଟ ମାସ ୨୦ ତାରିଖରେ ପୁରୀ ଜିଲ୍ଲାର ବୀର ନରସିଂହପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ପଣ୍ଡିତ ନରସିଂହ ମହାପାତ୍ର ଏବଂ ମାତାଙ୍କ ନାମ ଥିଲା ଲକ୍ଷ୍ମୀ ଦେବୀ ।

ଶୈଶବରୁ ଶ୍ରୀ ମହାପାତ୍ର ଯାତ୍ରାଭିନୟ ଦେଖି ନାଟ୍ୟକଳାର ଶାଶ୍ୱତ ଆକର୍ଷଣରେ ପ୍ରଲୁବ୍ଧ ହୋଇ ରଙ୍ଗମଞ୍ଚ ସହ ସମ୍ପର୍କ ସ୍ଥାପନ କରିବାକୁ ବ୍ୟାକୁଳ ହୋଇ ନାଟକ ରଚନାକୁ ଏଥି ନିମନ୍ତେ ନିଜର ମାଧ୍ୟମ ଭାବରେ ଆଦରି ନେଇଥିଲେ । କିଶୋର ବୟସରେ ପ୍ୟାରୀମୋହନ ଏକାଡେମୀ ବିଦ୍ୟାଳୟରେ ମାତ୍ର ଷଷ୍ଠ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ବିଦ୍ୟାଳୟର ତ୍ରୈମାସିକ ପତ୍ରିକା ସାହିତ୍ୟ ସୋପାନରେ ତାଙ୍କର କଅଁଳ ହାତରୁ ପ୍ରଥମ ଗଳ୍ପ 'କଉଡ଼ି କଡ଼ାକର ମୂଲ୍ୟ' ଆତ୍ମପ୍ରକାଶ କରିଥିଲା ।

ଅତ୍ୟନ୍ତ ଉଚ୍ଚ ଶିକ୍ଷିତ ଶ୍ରୀ ମହାପାତ୍ରଙ୍କର ନାଟ୍ୟକାର ଜୀବନର ପ୍ରଥମ ନାଟକ 'ବିଦ୍ରୋହୀ' ୧୯୫୦ରେ ରଚିତ ହୋଇଥିଲା । ପରବର୍ତ୍ତୀ ନାଟକ 'କିଏ କାହାର', 'ଗୋଲକ ଧନ୍ଦା'ରେ ପ୍ରକାଶିତ ଓ ସୌଖୀନ କଳାକାରଙ୍କ ଦ୍ୱାରା ଅଭିନୀତ । ପେଷାଦାର ରଙ୍ଗମଞ୍ଚରେ ଅଭିନୀତ ପ୍ରଥମ ନାଟକ 'ଚୂନ ପଥର' ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଦ୍ୱାରା ୧୯୫୮ରେ ଅଭିନୀତ ହୋଇଥିଲା । ଏହି କୃତୀ ନାଟ୍ୟକାରଙ୍କର ସାମାଜିକ ନାଟକ ମଧ୍ୟରେ କାଚକାଞ୍ଚନ ମୋତି ମହଲ, ଗୋଲକ ଧନ୍ଦା, ବାଟବରଣ, ବାଡ଼ୁଅ ଝିଅ, ଜମାବନ୍ଦୀ, କଥାଟି ସତ, ଅପରାଜିତା, ଦେଖିଲେ ଜାଣିବେ, ତୋଫାନ ପରେ, ବାହୁଡ଼ା ବଜେ, ଅଧା ଚନ୍ଦ୍ରମା, ବାଧା ବନ୍ଧନ, ଧନ୍ୟବାଦ ସ୍ୱାମୀ: ଶିଶୁନାଟକମାନଙ୍କ ମଧ୍ୟରେ ମୁଁ ବଡ଼ ହେବି ଓ ସାଉଁଟା

ଫୁଲ ଇତ୍ୟାଦିର ନାମ ଉଲ୍ଲେଖଯୋଗ୍ୟ । ଶ୍ରୀ ମହାପାତ୍ରଙ୍କ ଲିଖିତ ଅନ୍ୟାନ୍ୟ ନାଟକ ମଧ୍ୟରେ ପୌରାଣିକ ନାଟକ ସେ ନାରୀ ବନ୍ଦନୀୟା, ଐତିହାସିକ ନାଟକ ରାଜମୁକୁଟ, ଏକାଙ୍କିକା ନାଁ ଦେବେ ଆପଣ, ଗୋଟିଏ ରାତି, ଅପବାଦ, ଘର ଘରଣୀ ଇତ୍ୟାଦି ପ୍ରଧାନ । ଆକାଶବାଣୀର ସ୍ୱୀକୃତ ନାଟ୍ୟକାର ଭାବରେ ତାଙ୍କ ରଚିତ ବେତାର ନାଟକଗୁଡ଼ିକ ହେଲା 'ଏ ଘରେ ମାଉସୀ, ସେ ଘରେ ପିଉସୀ', 'ସେମାନେ ଆଉ ଆମେ', 'ଲକ୍ଷ୍ମଣ ପରୀ ରାଇ', 'ବଧୂ ବରଣ' ଇତ୍ୟାଦି । କେବଳ ନାଟକ ରଚନା ଶ୍ରୀ ମହାପାତ୍ରଙ୍କର ରଚନା କ୍ଷୁଧାକୁ ପ୍ରଶମିତ କରିପାରି ନଥିଲା । ତାଙ୍କ ରଚିତ କେତେକ ଉଚ୍ଚ କୋଟୀର ଉପନ୍ୟାସ ହେଲା ଚଉଦ ସ୍ୱର, ନାରୀ ଓ ନରକ, ହେଜି ପରେ ଭେଉ ଏବଂ ମନଗୁଣେ ଫଳ ।

ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ବହୁବିଧ ସାହିତ୍ୟ ରତ୍ନରେ ସମୃଦ୍ଧ କରିଥିବା ଏହି ଯଶସ୍ୱୀ କଳାକାର ନିଜ ଜୀବନରେ ବହୁ ସ୍ତରରେ ସମ୍ମାନ, ପୁରସ୍କାର ଏବଂ ସମ୍ବର୍ଦ୍ଧନା ଲାଭ କରିଅଛନ୍ତି । ସେ ୧୯୮୨-୮୩ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସମ୍ମାନିତ, ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ବର୍ଦ୍ଧିତ । ଏତଦ୍‌ବ୍ୟତୀତ ଲେଖକ ସାମ୍ମୁଖ୍ୟ, ଭୁବନେଶ୍ୱର, ସିନେକ୍ରିଟିକ୍ ଆସୋସିଏସନ୍ ଭୁବନେଶ୍ୱର, ସମବାୟ କ୍ଷେତ୍ର କର୍ମଚାରୀ ସଙ୍ଘ, ଯଦୁମଣି ସାହିତ୍ୟ ସଂସଦ (ଦଶପଲ୍ଲା), କଳିଙ୍ଗ ବିକାଶ ସଂସ୍କୃତି କେନ୍ଦ୍ର ପୁରୀ, କୁମାରୋତ୍ସବ, ପୁରୀ ଇତ୍ୟାଦି ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ।

ତାଙ୍କ ରଚିତ ଅପ୍ରକାଶିତ ନାଟକ ହେଲା 'ମୁଁ ମଣିଷ ମାରିଚ', ଏବଂ 'ଏଇ ମାଟିର ମଣି' । ଓଡ଼ିଶା ମାଟିରେ ରଙ୍ଗମଞ୍ଚର ଅବକ୍ଷୟ ତାଙ୍କୁ ଗଭୀର ବେଦନାସିକ୍ତ କରିଛି ବୋଲି ତାଙ୍କର ମତ । ମଞ୍ଚ କଳାକାର ଏବଂ ମଞ୍ଚ ନାଟ୍ୟକାରମାନେ ଆଜି ବଡ଼ ଦୟନୀୟ ଅବସ୍ଥାରେ ହାତବାନ୍ଧି ମନକୁ ମାରି ସ୍ଥାଣୁ ପାଲଟିଛନ୍ତି । ଏ ଦାରୁଣ ବିପର୍ଯ୍ୟୟର ଶେଷ କେବେହେବ ବୋଲି ତାଙ୍କର ପ୍ରଶ୍ନ । ହେଲେ ଏ ପ୍ରଶ୍ନର ଉତ୍ତର କିଏ ? ଦେବ ବା କିଏ ?

ତେବେ ଓଡ଼ିଶାରେ ରଙ୍ଗମଞ୍ଚ ଓ ମଞ୍ଚକଳାକାର ଓ ନାଟ୍ୟକାରମାନଙ୍କର ଭବିଷ୍ୟତ ଯାହାହେଲେ ବି ଏହି କୃତବିଦ୍ୟ ପୁରୁଷ ରସ ଅନୁରାଗୀ ଓଡ଼ିଶାବାସୀଙ୍କର ଯେ ଚିରଦିନ ମନେରହିବେ ଏହା ନିଃସନ୍ଦେହ ।

## ଶ୍ରୀ ବାଞ୍ଛାନିଧି ଶତପଥୀ

ରବର ଶାସନ, ଓଡ଼ଗାଁ, ପୁରୀ

ଜନ୍ମ—୧୯୧୯ ମସିହା



ନିଜର ଅଧିବ୍ୟାପ୍ତ କଳାରେ ଏକକ ଅଭିନୟର ଜଣେ ସୁଦକ୍ଷ କଳାକାର ଭାବରେ ଓଡ଼ିଶାର ସର୍ବଜନ ପରିଚିତ କଳାନିଧି ଶ୍ରୀ ବାଞ୍ଛାନିଧି ଶତପଥୀ ୧୯୧୯ ମସିହା କାର୍ତ୍ତିକ ଶୁକ୍ଳ ଏକାଦଶୀ ତିଥିରେ ପୁରୀ ଜିଲ୍ଲାର ଓଡଗା ନିକଟସ୍ଥ ରବର ଗ୍ରାମରେ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କର ନାମଥିଲା ୰ ବାଇଧର ଶତପଥୀ । ତାଙ୍କର ପ୍ରାଥମିକ ଶିକ୍ଷା ନିଜ ଗାଁ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଶେଷ କରି ମାମୁଙ୍କ ଘରେ ବାଉଁଶଗାଡ଼ିଆ ଗ୍ରାମର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଥିଲେ ମଧ୍ୟ ଦାରିଦ୍ର୍ୟ ହେତୁ ଆଉ ପଢ଼ିବା ସମ୍ଭବ ହୋଇନଥିଲା । ନିଜ ପରିବାରର ଭରଣପୋଷଣ ନିମନ୍ତେ ତାଙ୍କୁ ନଈରୁ ମାଛ ଧରିବାକୁ ଏବଂ କାଠ ବିକ୍ରୟ କରିବାକୁ ପଡୁଥିଲା ।

ନିଜ ଗାଁର ଗୋପୀନାଥ ମିଶ୍ର ମଜାକଥା କହି ଲୋକଙ୍କୁ ହସାଇବାରେ ଦକ୍ଷ ଥିଲେ । ସେହି କଳା ପିଲାଦିନରୁ ଶ୍ରୀ ଶତପଥୀଙ୍କୁ ଆକର୍ଷଣ କରୁଥିଲେ ମଧ୍ୟ ସେହି ଯେ ତାଙ୍କର ବଞ୍ଚିବାର ପ୍ରଧାନ ମାଧ୍ୟମ ହେବ ଏହା ତାଙ୍କୁ ଆଦୌ ଜଣା ନ ଥିଲା । ପରେ ସରସଭାବରେ ପୁରାଣପାଠ କରି ସେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ଏକକ ଅଭିନୟ ନିମନ୍ତେ ମନ ସ୍ଥିର କରି ସେଥିରେ ଲାଗିପଡ଼ିଥିଲେ । ଏହି ସମୟରେ ୧୯୪୫ରେ ତାଙ୍କର ପିତା, ସ୍ତ୍ରୀ, କନ୍ୟାଙ୍କର ଏବଂ ପରେ ପରେ ମା'ଙ୍କର ମଧ୍ୟ ବିୟୋଗ ଘଟିଥିଲା । ଏହି ସମୟକୁ ତାଙ୍କର ସୁଖ୍ୟାତି ରାଜ ଦରବାରରେ ପହଞ୍ଚି ସାରିଥିଲା । ସର୍ବପ୍ରଥମେ ନୟାଗଡ଼ ରାଜଦରବାରରେ ନିଜର କଳା ପ୍ରଦର୍ଶନ କରି ସେ ସ୍ୱର୍ଣ୍ଣପଦକ, ପାଟଯୋଡ଼ ସହ ଶତମୁଦ୍ରା ପାଇ ପୁରସ୍କୃତ ହୋଇଥିଲେ । ପରେ ପରେ ସେ ରଣପୁର, ଦଶପଲ୍ଲା, ଖଣ୍ଡପଡ଼ା, ନରସିଂହପୁର, ରେଢ଼ାଖୋଲ, ବଲାଙ୍ଗୀର, ସୋନପୁର ଇତ୍ୟାଦି ରାଜଦରବାରରୁ ପୁରସ୍କାର ଲାଭ କରିବା ସଙ୍ଗେ ସଙ୍ଗେ କଟକର 'ସମାଜ' କାର୍ଯ୍ୟାଳୟ ତରଫରୁ ସ୍ୱର୍ଣ୍ଣ ମୋହର ପୁରସ୍କାର ରୂପେ ପ୍ରାପ୍ତ ହୋଇଥିଲେ ।

୧୯୦୮ରେ କଟକ ବେତାର କେନ୍ଦ୍ରର ଉନ୍ମୋଚନ ପରେ ସେ ଏଥିରେ "ଯୋଷାବରରେ ଯଥାର୍ଥରେ ଜାଣ ମୁ ତୋହରରେ" ଗାନକରି କୋଡ଼ିଏ ଟଙ୍କା ପାରିତୋଷିକ ପାଇଥିଲେ । ଏହା ଥିଲା ବେତାର କେନ୍ଦ୍ର ସହ ତାଙ୍କର ପ୍ରଥମ ପରିଚୟ । ଏହି ସମୟରେ କଟକର ପ୍ରସିଦ୍ଧ କବିରାଜ ଲକ୍ଷ୍ମୀନାରାୟଣ ଆଚାର୍ଯ୍ୟଙ୍କ ଗୃହରେ ଦୀର୍ଘ ଦିନ ରହିବାର ସୁବିଧା ସେ ପାଇଥିଲେ । ସେତେବେଳେ କଟକର ପ୍ରାୟ ସମସ୍ତ ମହାବିଦ୍ୟାଳୟ ଏବଂ ବିଦ୍ୟାଳୟମାନଙ୍କରେ ନିଜର କଳା ପ୍ରଦର୍ଶନ କରି ସେ ଅଶେଷ ଜନପ୍ରିୟତା ହାସଲ କରିଥିଲେ । ଗଣକବି ° ବୈଷ୍ଣବ ପାଣିଙ୍କ ସହିତ ତାଙ୍କର ସାକ୍ଷାତ ହେବାପରେ ° ଶ୍ରୀ ପାଣି ତାଙ୍କୁ ଏକକ ଭାବରେ ଗୀତିନାଟ୍ୟ ଅଭିନୟ କରିବାକୁ ପ୍ରବର୍ତ୍ତାଇଥିଲେ ଏବଂ 'ସୁଦାମା ଦରିଦ୍ର ଭଞ୍ଜନ', 'ବିଲ୍ୱମଙ୍ଗଳ' ଏବଂ 'ଭକ୍ତର ଭଗବାନ' ନାଟକ ଅଭିନୟ କରି ସେ ବହୁ ପ୍ରଶଂସା ଲାଭ କଲେ । ଏହି ସମୟରେ ପୁରୀର ଗଜପତି ତାଙ୍କ ଏକକ ଅଭିନୟରେ ସନ୍ତୁଷ୍ଟ ହୋଇ ତାଙ୍କୁ ଯଥେଷ୍ଟ ଉପହାର ସହ 'ଭାରତୀ ଭୂଷଣ' ଉପାଧି ଏବଂ ରୌପ୍ୟମୁଦ୍ରା ପୁରସ୍କାର ପ୍ରଦାନ କରିଥିଲେ । ପରେ କଟକ, ପୁରୀ, ଭୁବନେଶ୍ୱର, ବ୍ରହ୍ମପୁର, ରାଉରକେଲା ଇତ୍ୟାଦି ସହରମାନଙ୍କରେ ନିଜର କଳା ପାରଦର୍ଶିତା ପ୍ରଦର୍ଶନ କରି ବହୁ ଲୋକପ୍ରିୟତା ଅର୍ଜନ କରିଥିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ° ବିଶ୍ୱନାଥ ଦାସଙ୍କ ଠାରୁ ସେ 'କଳାନିଧି' ଉପାଧି ଲାଭ କରିଥିଲେ ।

ଏହି ଅନନ୍ୟ କଳାକାର ଓଡ଼ିଆ ଚଳଚ୍ଚିତ୍ର 'ମହାଲକ୍ଷ୍ମୀ ପୂଜା'ରେ ଅଭିନୟ କରିଥିଲେ । ଶ୍ରୀଯୁକ୍ତ ଶତପଥୀ ଶ୍ରୀ ଜୀଉଙ୍କ ପ୍ରତ୍ୟକ୍ଷ କରୁଣା ଲାଭ କରିଥିବାର ଶୁଣାଯାଏ, ଯାହା ଫଳରେ ସେ ଶ୍ରୀମନ୍ଦିରରେ 'ଶ୍ରୀଗୀତଗୋବିନ୍ଦ' ଗାନ କରିବାକୁ ରାଜାଜ୍ଞା ପ୍ରାପ୍ତ ହୋଇଥିଲେ । ଶ୍ରୀ ଶତପଥୀ ନିଜ ଜୀବନରେ ଓଡ଼ିଆ ଚଳଚ୍ଚିତ୍ର 'ମହାଲକ୍ଷ୍ମୀ ପୂଜା' ସହ 'ଶ୍ରୀ ଲୋକନାଥ', 'ଦସ୍ୟୁ ରତ୍ନାକର', 'କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ' ଏବଂ 'ନବଜନ୍ମ'ରେ ଅଭିନୟ କରିଛନ୍ତି ।

ଏତଦ୍‌ବ୍ୟତୀତ ଶ୍ରୀ ଶତପଥୀ ୧୯୮୧ରେ କଟକ ଦୂରଦର୍ଶନ କାର୍ଯ୍ୟକ୍ରମରେ 'ଶ୍ରୀ ଗୀତଗୋବିନ୍ଦ' ଓ 'ବିଲ୍ୱମଙ୍ଗଳ'ରେ ଏକକ ଅଭିନୟ କରି ପ୍ରଶଂସିତ ହୋଇଥିଲେ । ତାଙ୍କର ଏତାଦୃଶ ଅଭିନୟ କଳା ପାରଦର୍ଶିତା ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୮୩ରେ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଥିଲେ । ଏହା ବ୍ୟତୀତ ସେ ଓଡ଼ିଶାର ବହୁ ସାଂସ୍କୃତିକ ଅନୁଷ୍ଠାନ କର୍ତ୍ତୃକ ସମ୍ମାନିତ ଏବଂ ଉପାଧିପ୍ରାପ୍ତ ।

ଗନ୍ଧସାଗର, ଭାରତୀଭୂଷଣ, କଳାନିଧି ଆଦି ବିଭିନ୍ନ ଉପାଧିଭୂଷିତ ଏହି ଅସାଧାରଣ କଳାକାର ଏକାଧାରରେ ଗାୟକ, ବାଦକ, ଲେଖକ, ନିର୍ଦ୍ଦେଶକ, ପ୍ରଯୋଜକ, ବ୍ୟବସ୍ଥାପକ, ସ୍ମାରକ ଓ ଅଭିନେତା । ତାଙ୍କର ତୁଳନା ନାହିଁ । ଓଡ଼ିଶାରେ ଏକକ ଅଭିନୟର ଜନକ ଭାବରେ ସେ ଆମ ନିକଟରେ ଚିରସ୍ମରଣୀୟ ହୋଇ ରହିବେ ।

●



## ଶ୍ରୀ ପ୍ରଫୁଲ୍ଲ କୁମାର ଦେଓ

**ବାରିପଦା, ମୟୂରଭଞ୍ଜ**

**ଜନ୍ମ—୧୯୨୫, ଅକ୍ଟୋବର ୨୩**

ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ଲୋକଗୀତ ଗାୟକ ଶ୍ରୀ ପ୍ରଫୁଲ୍ଲ କୁମାର ଦେଓ ରାଜ ପରିବାରରେ ୧୯୨୫ ମସିହା ଅକ୍ଟୋବର ମାସ ୨୩ ତାରିଖରେ ମୟୂରଭଞ୍ଜ ଜିଲ୍ଲାର ବାରିପଦାଠାରେ ଜନ୍ମଗ୍ରହଣ କରିଥିଲେ । ଅତ୍ୟନ୍ତ ବାଲ୍ୟାବସ୍ଥାରୁ ସେ ଲୋକ ସଙ୍ଗୀତ ପ୍ରତି ଆକୃଷ୍ଟ ହୋଇଥିଲେ । ପଲ୍ଲୀ ସଙ୍ଗୀତ, ବିଶେଷ କରି ସିଂହଭୂମି ଅଞ୍ଚଳର 'ଝୁମର' ଗୀତ ପ୍ରତି ତାଙ୍କର ବିଶେଷ ଆକର୍ଷଣ ଥିଲା । ସେ ଦୀର୍ଘଦିନ ଧରି ଏହି ଧରଣର ସଙ୍ଗୀତକୁ ଆୟତ୍ତ କରିବାକୁ ସାଧନା କରି ତହିଁରେ ସିଦ୍ଧିଲାଭ କରି ନିଜକୁ ଜଣେ ଲୋକସଙ୍ଗୀତର ସଫଳଶିଳ୍ପୀ ରୂପେ ପ୍ରତିଷ୍ଠିତ କରିପାରିଛନ୍ତି । ୧୯୪୯ରେ ସେ ତତ୍କାଳୀନ ନିର୍ମିତ ତିନୋଟି ଓଡ଼ିଆ କଥାଚିତ୍ର ଲଳିତା, ସପ୍ତଶଯ୍ୟା ଏବଂ ରୋଲ୍ସ ନଂ ୨-୮ରେ ପ୍ରଚ୍ଛଦପଟ ଗାୟକ ରୂପେ କଣ୍ଠଦାନ କରି ଉଚ୍ଚପ୍ରଶଂସିତ ହୋଇଥିଲେ । ୧୯୫୦ ମସିହାରୁ ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତ କଣ୍ଠଶିଳ୍ପୀ ଭାବରେ ଲୋକସଙ୍ଗୀତ ଏବଂ ଅନ୍ୟାନ୍ୟ ସଙ୍ଗୀତ ପରିବେଷଣ କରି ନିଜର ଅସାମାନ୍ୟ ପ୍ରତିଭାର ପରିଚୟ ଦେଇଅଛନ୍ତି ।

ଆଦିବାସୀ ସଙ୍ଗୀତକୁ ସଭ୍ୟ ସମାଜରେ ଆଦୃତ କରାଇବା ଦିଗରେ ତାଙ୍କର ଉଦ୍ୟମ ବିଶେଷ ପ୍ରଶଂସନୀୟ । ଓଡ଼ିଶାର ସଙ୍ଗୀତ କ୍ଷେତ୍ରରେ ତାଙ୍କର ଏତାଦୃଶ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀଯୁକ୍ତ ସିଂହଦେଓଙ୍କୁ ୧୯୮୨-୮୩ ବର୍ଷରେ ସମ୍ବର୍ଦ୍ଧିତ ଏବଂ ସମ୍ମାନିତ କରିଅଛନ୍ତି । ସମ୍ପ୍ରତି ସେ ବାରିପଦା ସହରରେ ଅବସ୍ଥାନ କରୁଅଛନ୍ତି ।



## ଶ୍ରୀ ଲୋକନାଥ ରଥ

ବାଲିସାହି, ପୁରୀ

ଜନ୍ମ—୧୯୧୯, ସେପ୍ଟେମ୍ବର, ୧

ଓଡ଼ିଶୀ ସଙ୍ଗୀତ ଜଗତର ଅନ୍ୟତମ ଉଜ୍ଜ୍ୱଳ ତାରକା ଶ୍ରୀ ଲୋକନାଥ ରଥ ୧୯୧୯ ମସିହା ସେପ୍ଟେମ୍ବର ମାସ ୧ ତାରିଖରେ ପୁରୀ ଜିଲ୍ଲାର ବାଲିସାହିଠାରେ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶୀ ସଙ୍ଗୀତରେ ଗାୟକରତ୍ନ ସିଂହାରୀ ଶ୍ୟାମସୁନ୍ଦର କରଙ୍କ ନିକଟରୁ ସେ ଶିକ୍ଷା ଲାଭ କରିଥିଲେ । ପ୍ରଥମେ ୧୯୪୬ରୁ ୧୯୪୮ ପର୍ଯ୍ୟନ୍ତ ସେ ଆକାଶବାଣୀ କଲିକତା କେନ୍ଦ୍ରରେ ଓଡ଼ିଆ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ନିଜ କର୍ମମୟ ଜୀବନର ଶୁଭାରମ୍ଭ କରିଥିଲେ । ପୂର୍ବରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେ ସରକାରଙ୍କ ନିର୍ଦ୍ଦେଶରେ ଦେଶାତ୍ମବୋଧ ଗୀତ ଗାନ କରିଥିଲେ ଏବଂ ୧୯୪୨-୪୩ ମସିହାରେ କଲମ୍ବିଆ ରେକର୍ଡ କମ୍ପାନୀ ଦ୍ୱାରା ତାଙ୍କ ସଙ୍ଗୀତର ୫୬ଟି ରେକର୍ଡ ପ୍ରସ୍ତୁତ ହୋଇଥିଲା । କେତେକ ଯୁଦ୍ଧ ସଙ୍ଗୀତ ମଧ୍ୟ ତାଙ୍କର ରେକର୍ଡ ହୋଇଥିଲା । ପରେ ୧୯୪୮ରେ ଆକାଶବାଣୀ କଟକ କେନ୍ଦ୍ରର ପ୍ରତିଷ୍ଠା ପରେ ସେ ତାହାର ସ୍ୱୀକୃତ କଳାକାର ଭାବରେ ସୁଦୀର୍ଘ ତିରିଶି ବର୍ଷ ଧରି ଆକାଶବାଣୀ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିଲେ । ସେହି ସମୟରେ ୧୯୪୮-୪୯ରେ ତାଙ୍କର ଓଡ଼ିଶୀ ଏବଂ ଗ୍ରୁପ ଏଚ. ଏମ୍. ଭି. (ହିଜ୍ ମାଷ୍ଟରସ ଭଏସ୍) କମ୍ପାନୀ ଦ୍ୱାରା ରେକର୍ଡ କରାଯାଇଥିଲା ଯାହାକି ଅଦ୍ୟାବଧି କଟକ ବେତାର କେନ୍ଦ୍ରରୁ ପ୍ରସାରଣ କରାଯାଉଛି ।

ନିଜର ସଙ୍ଗୀତ କୁଶଳତା ନିମନ୍ତେ ସେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ଆର୍ଥିକ ପୁରସ୍କାର ସହ ସମ୍ବର୍ଦ୍ଧିତ ହୋଇଥିଲେ । ୧୯୮୫ରେ ସର୍ବଭାରତୀୟ ସ୍ତରର ପ୍ରତିଯୋଗିତାରେ ଭକ୍ତି ସଙ୍ଗୀତ ଗାନ କରି 'ଶ୍ରୀକ୍ଷେତ୍ର କଳା ପ୍ରକାଶିକା' ଦ୍ୱାରା 'ସଙ୍ଗୀତ ଆଚାର୍ଯ୍ୟ' ଉପାଧି ଲାଭ କରିବା ସହ ଶ୍ରୀ ରଥ 'ଶ୍ରୀକ୍ଷେତ୍ର ରତ୍ନ' ଉପାଧି ମଧ୍ୟ ପ୍ରାପ୍ତ ହୋଇଥିଲେ ।

କଟକ ଆକାଶବାଣୀ ସର୍ବୋଚ୍ଚ କର୍ତ୍ତାଙ୍କ ନିର୍ଦ୍ଦେଶରେ ୧୯୮୫ ଏବଂ ୧୯୮୬ରେ ଦୁଇବର୍ଷ ନିମନ୍ତେ ସେ ଓଡ଼ିଶୀ, କଣ୍ଠ ସଙ୍ଗୀତ ଏବଂ ଲଘୁ ସଙ୍ଗୀତର ପରୀକ୍ଷକ କାର୍ଯ୍ୟ ସଫଳ ଭାବେ ତୁଲାଇଥିଲେ ।

୧୯୮୭ ମସିହାଠାରୁ ସେ 'ପ୍ରାଚୀ କଳାକେନ୍ଦ୍ର', ଚଣ୍ଡୀଗଡ଼ ବିଶ୍ୱବିଦ୍ୟାଳୟର ପରୀକ୍ଷକ ଭାବେ ମଧ୍ୟ କାର୍ଯ୍ୟ କରୁଅଛନ୍ତି । ଏତଦ୍‌ବ୍ୟତୀତ ଆକାଶବାଣୀର ବରିଷ୍ଠ ଶିଳ୍ପୀ ଭାବେ ୧୯୮୯ରେ ତାଙ୍କୁ ଦିଲ୍ଲୀ ଆକାଶବାଣୀ ଜେନେରାଲ୍ ମ୍ୟାନେଜର ତରଫରୁ ଅଠର ହଜାର ଟଙ୍କା ସାହାଯ୍ୟ ମିଳିଥିଲା । ସେହି ବର୍ଷ ତାଙ୍କୁ ସମ୍ମାନଜନକ 'ସାରଳା ପୁରସ୍କାର' ମଧ୍ୟ ମିଳିଥିଲା ।

ଅଧୁନା ଶ୍ରୀ ରଥ ଶ୍ରେଷ୍ଠ ଶିଳ୍ପମାନଙ୍କ, ସମନ୍ୱିତ ଶିକ୍ଷା କେନ୍ଦ୍ର ସ୍ୱର୍ଗଦ୍ୱାର, ପୁରୀଠାରେ ସଙ୍ଗୀତ ଶିକ୍ଷା ଦେଉଅଛନ୍ତି ଏବଂ ପୁରୀ କିଶୋର ସଙ୍ଗୀତ ବିଦ୍ୟାଳୟରେ ଦୀର୍ଘ କୋଡ଼ିଏ ବର୍ଷ ଧରି ଅଧ୍ୟକ୍ଷ କାର୍ଯ୍ୟ ଭାର ତୁଲାଉଅଛନ୍ତି । ୧୯୮୩-୮୪ରେ ସେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ ।

ଆଜି ପରିଣତ ବୟସରେ, ଦୀର୍ଘ ପଚିଶ ବର୍ଷର ସଙ୍ଗୀତ ସାଧନା ପରେ ପ୍ରାୟ ଦଶ ବର୍ଷ ହେବ ଶ୍ରୀ ରଥ ନିଜର ଶାରୀରିକ ଅସୁବିଧା କାରଣରୁ ଆକାଶବାଣୀ କାର୍ଯ୍ୟକ୍ରମରେ ଆଉ ଅଂଶ ଗ୍ରହଣ କରିବାକୁ ସମର୍ଥ ନୁହନ୍ତି ।

ଓଡ଼ିଶାର ସଙ୍ଗୀତ ଜଗତ ପ୍ରତି ତାଙ୍କର ଅବଦାନ ନିମନ୍ତେ ସେ ଓଡ଼ିଶାବାସୀଙ୍କର ଚିରଦିନ ମନେ ରହିବେ ।

## ଶ୍ରୀ ଭୋଳାନାଥ ଦାସ
**କରଞ୍ଜିଆ, ମୟୂରଭଞ୍ଜ**

**ଜନ୍ମ – ୧୯୨୨, ସେପ୍ଟେମ୍ବର ୨୯**



ଓଡ଼ିଶା ନାଟ୍ୟ ଜଗତର ଅନ୍ୟତମ ସୁନାମଧନ୍ୟ ଅଭିନେତା, ନିର୍ଦ୍ଦେଶକ ଏବଂ ସଂଗଠକ ଶ୍ରୀ ଭୋଳାନାଥ ଦାସ ୧୯୨୨ ମସିହା ସେପ୍ଟେମ୍ବର ମାସ ୨୯ ତାରିଖରେ ମୟୂରଭଞ୍ଜ ଜିଲ୍ଲାର କରଞ୍ଜିଆ ସହରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ନିଜ ଗ୍ରାମରେ ନିଜ ଭିଣୋଇଙ୍କ ଦ୍ୱାରା ପରିଚାଳିତ ନାଟ୍ୟ ସଂସ୍ଥାର ଅଭିନୟ ଦେଖି ଶ୍ରୀ ଦାସ ଅଭିନୟ କଳା ଆଡ଼କୁ ପ୍ରଥମେ ଆକୃଷ୍ଟ ହୋଇଥିଲେ ମଧ୍ୟ ନିଜ ଗ୍ରାମର ଯାତ୍ରା ଉତ୍ସବରେ ଯୋଗଦାନ କରୁଥିବା ତତ୍କାଳୀନ ଥିଏଟର ଏବଂ ଅନ୍ୟାନ୍ୟ ଅପେରା ଦଳ ତାଙ୍କୁ ବିଶେଷ ପ୍ରଭାବିତ କରିଥିଲେ । ୧୯୩୯ ରେ ଟାଟା ନଗର ଯାଇ ସେ ମେକାନିକ୍ ହେବାକୁ ଚେଷ୍ଟାକରି ଗାଁକୁ ଫେରି ନିଷ୍କାମ କଲେ । ୧୯୪୦-୪୧ ରେ କଲିକତା ଯିବାପରେ ସେଠାରେ ବହୁ କଳାକାରଙ୍କର କଳା ପରିବେଷଣ ଦେଖି ନିଜେ କଳାକାର ହେବାକୁ ସଂକଳ୍ପବଦ୍ଧ ହୋଇଥିଲେ । ଏଥିନିମନ୍ତେ ସେ ବଙ୍ଗଳା ଓ ହିନ୍ଦୀଭାଷା ଶିକ୍ଷା କରିଥିଲେ । ୧୯୪୨ରେ କଲିକତାରୁ ଫେରି ସେ ଅନ୍ନପୂର୍ଣ୍ଣା ଥିଏଟରରେ ଯୋଗଦାନ କଲେ । ମାତ୍ର ୧୯୪୪ ରେ ଓଡ଼ିଶା ଥିଏଟରରେ ଯୋଗଦେବା ପରେ ' କାଳୀବାବୁଙ୍କ ନାଟକ 'ଭାତ' ରେ ଅଭିନୟ କରି ସେ ତାଙ୍କର ଅଭିନୟ ଜୀବନ ଆରମ୍ଭକଲେ ।

ଏହି ସମୟରେ ତତ୍କାଳୀନ କଲିକତା ଆକାଶବାଣୀରେ ଓଡ଼ିଆ ବିଭାଗ ଦାୟିତ୍ୱରେ ଥିବା ସତୀନ୍ ଦାସଙ୍କ ସହ ସେ ନାଟକ 'ଅଭିଯାନ' ରେ ଅଭିନୟ କରିବାପରେ କଲିକତା ଆକାଶବାଣୀର 'ହିନ୍ଦୁ ରମଣୀ' ନାଟକରେ ଅଂଶଗ୍ରହଣ କରିବାର ସୁଯୋଗ ପାଇଥିଲେ । ଶ୍ରୀ ଦାସଙ୍କ ପ୍ରଚେଷ୍ଟାରେ ଓଡ଼ିଶା ଥିଏଟର ରଙ୍ଗମଞ୍ଚରେ ମନୋରଞ୍ଜନ ଦାସଙ୍କର 'କବିସମ୍ରାଟ ଉପେନ୍ଦ୍ର ଭଞ୍ଜ' ନାଟକ ଅଭିନୀତ ହୋଇଥିଲା । ଶ୍ରୀ ଦାସ 'ରୂପଭାରତୀ' ଅନୁଷ୍ଠାନ ପ୍ରଯୋଜିତ 'ଶ୍ରୀଜଗନ୍ନାଥ' କଥାଚିତ୍ରରେ ୧୯୫୮ ରେ ଅଭିନୟ କରିଥିଲେ । ପରେ ତାଙ୍କ ନିଜ ଚେଷ୍ଟାରେ 'ରୂପଶ୍ରୀ ଥିଏଟର' ଗଠିତ ହୋଇଥିଲେ ମଧ୍ୟ ଏହା ବେଶୀଦିନ ତିଷ୍ଠି ନ ଥିଲା ।

୧୯୫୭ ମସିହାରେ ଶ୍ରୀ ଦାସ ଏବଂ ଅନ୍ୟାନ୍ୟ କଳାକାରମାନଙ୍କ ପ୍ରଚେଷ୍ଟାରେ ଜନତା ରଙ୍ଗମଞ୍ଚ ପ୍ରତିଷ୍ଠିତ ହୋଇ ଅକ୍ଟୋବରରେ ଉଦ୍‌ଘାଟିତ ହେଲା । ଏହି ରଙ୍ଗମଞ୍ଚ ତରଫରୁ ପ୍ରଥମ ଥର ପାଇଁ ଦିଲ୍ଲୀରେ ମଞ୍ଚସ୍ଥ ନାଟକ 'ପର କଲମ' ବହୁ ଅଭିନନ୍ଦନ ପାଇ-ଥିଲା । ଏହା ପରେ ଶ୍ରୀ ଦାସଙ୍କ ପ୍ରଚେଷ୍ଟାରେ 'ଜନତା ରଙ୍ଗମଞ୍ଚ' ଅନେକ ବାର ଓଡ଼ିଶା ବାହାରେ ନାଟକ ମଞ୍ଚସ୍ଥ କରି ଗୌରବ ଲାଭ କରିଥିଲା । ୧୯୫୯ ରେ ଶ୍ରୀ ଦାସ 'ଲକ୍ଷ୍ମୀପୂଜା' ଚଳଚ୍ଚିତ୍ରରେ 'ଚଣ୍ଡାଳ' ଭୂମିକାରେ ଅଭିନୟ କରି ପ୍ରଶଂସିତ ହୋଇଥିଲେ । ପରେ ୧୯୬୫ ରେ ସେ ଓଡ଼ିଆ ଚଳଚ୍ଚିତ୍ର 'ସତୀ ଅନସୂୟା', 'ପରିବାର', 'ଜନ୍ମଦାତା'; 'ମେଘମୁକ୍ତି' ଇତ୍ୟାଦିରେ ଅଭିନୟ କରିଥିଲେ । ପରବର୍ତ୍ତୀ ସମୟରେ 'ଯା ଦେବୀ ସର୍ବଭୂତେଷୁ', 'ଲୁହ ତରଳ' 'ସାକ୍ଷୀ ଗୋପୀନାଥ', ଓ 'ଦଇବ ଦଉଡ଼ି' ଆଦି ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରି ନିଜ ଅଭିନୟ ପ୍ରତିଭାର ସ୍ୱାକ୍ଷର ରଖି ଯାଇଛନ୍ତି ।

ଶ୍ରୀ ଦାସ କଟକ ଦୂରଦର୍ଶନରେ ଜଣେ ସ୍ୱୀକୃତ ଅଭିନେତା ଭାବେ ହାସ୍ୟ ଧାରାବାହିକ 'କଲିକତ ଚେଂକ' ରେ ଅଭିନୟ କରିଛନ୍ତି । ଓଡ଼ିଶା ରଙ୍ଗମଞ୍ଚ ଆନ୍ଦୋଳକୁ ତାଙ୍କର ଅନବଦ୍ୟ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ଦାସଙ୍କୁ ୧୯୮୩-୮୪ ବର୍ଷରେ ତାମ୍ର ଫଳକ ଓ ଆର୍ଥିକ ସାହାଯ୍ୟ ଦେଇ ସମ୍ବର୍ଦ୍ଧନା ଜଣାଇଅଛନ୍ତି ।

ଶ୍ରୀ ଦାସଙ୍କ ଭାଷାରେ "ମଞ୍ଚ ହିଁ ଜାତି ଓ ଭାଷାର ଦର୍ପଣ । ଯେଉଁ ଜାତିର ରଙ୍ଗମଞ୍ଚ ନାହିଁ ତା'ର ପରିଚୟ ଦିବ କିଏ ?"



## ଶ୍ରୀ ରଘୁନାଥ ଦତ୍ତ
### ମସୁଦପୁର, କଟକ

ଜନ୍ମ—୧୯୩୩, ଫେବୃୟାରୀ ୨୩

ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ବର୍ତ୍ତମାନ ପିଢ଼ୀର ଗୁରୁ ଶ୍ରୀ ରଘୁନାଥ ଦତ୍ତ ୧୯୩୩ ମସିହା ଫେବୃୟାରୀ ମାସ ୨୩ ତାରିଖରେ କଟକ ଜିଲ୍ଲାର ଯାଜପୁର ନିକଟସ୍ଥ ମସୁଦପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । କଳା ପ୍ରତି ଅଦମ୍ୟ ଆକର୍ଷଣ ହେତୁ ମାଇନର୍ ପାଶ କରିବା ପରେ ସେ ମାତ୍ର ୧୦ ବର୍ଷ ବୟସରେ ସ୍ୱର୍ଗତ ପଦ୍ମନାଭ ଦଳାଇଙ୍କଠାରୁ ନୃତ୍ୟ ଶିକ୍ଷା କରିଥିଲେ । ପରେ ସେ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍ ରଙ୍ଗମଞ୍ଚରେ ଯୋଗଦାନ କରି ଗୁରୁ ଶ୍ରୀ ପଙ୍କଜ ଚରଣ ଦାସଙ୍କ ନିକଟରୁ ନୃତ୍ୟରେ ବିଧିବଦ୍ଧ ଶିକ୍ଷା ଲାଭ କରିବାର ସୁଯୋଗ ପାଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ସେ ଗୁରୁ କେଳୁଚରଣ ମହାପାତ୍ରଙ୍କ ନିକଟରୁ ମଧ୍ୟ ଓଡ଼ିଶୀ ନୃତ୍ୟ ଶିକ୍ଷା କରିଥିଲେ ଏବଂ ୧୯୭[illegible] ମସିହାରେ ଲକ୍ଷ୍ନୌ ସଙ୍ଗୀତ ବିଦ୍ୟାଳୟରୁ 'କଥକ' ନୃତ୍ୟଶୈଳୀରେ 'ପ୍ରବୀଣ' ଡିଗ୍ରୀ ହାସଲ କରିଥିଲେ ।

ଗୁରୁ ଶ୍ରୀ ଦତ୍ତ ଆକାଶବାଣୀର ଯୁବବାଣୀ, ଇନ୍ଦ୍ରଧନୁ ଏବଂ ବାର୍ଷିକ ଉତ୍ସବରେ ନୃତ୍ୟ ପରିଚାଳନା ତଥା ଦୂରଦର୍ଶନରେ ମଧ୍ୟ ବହୁ ନୃତ୍ୟ ନାଟିକା ଓ ଓଡ଼ିଶୀ ନୃତ୍ୟ ନିର୍ଦ୍ଦେଶନା ଦେଇଅଛନ୍ତି । ଏହା ବ୍ୟତୀତ ଶ୍ରୀ ଦତ୍ତ ବହୁ ଓଡ଼ିଆ ଚଳଚ୍ଚିତ୍ରରେ ନୃତ୍ୟ ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରିଛନ୍ତି । ଏ ଚଳଚ୍ଚିତ୍ର ମଧ୍ୟରେ ସ୍ତ୍ରୀ, ବଜାଘର, କନକଲତା ଏବଂ ଶେଷ ଶ୍ରାବଣର ନାମ ଉଲ୍ଲେଖଯୋଗ୍ୟ । ସମ୍ପ୍ରତି କଳାବିକାଶ କେନ୍ଦ୍ରରେ ନୃତ୍ୟ ଶିକ୍ଷକ ଭାବେ ଅବସ୍ଥାପିତ ଶ୍ରୀ ଦତ୍ତ କଳାବିକାଶ କେନ୍ଦ୍ର ତରଫରୁ କୋଣାର୍କ, ସୀତାବିବାହ ଓ କାହ୍ନୁ ଅଭିଯାନ ପ୍ରଭୃତି ନୃତ୍ୟ ନାଟିକାର ନିର୍ଦ୍ଦେଶନା ଦେଇଅଛନ୍ତି ।

ଗୁରୁ ଶ୍ରୀ ଦତ୍ତଙ୍କର ବହୁ କୃତୀ ଛାତ୍ରୀ ଦେଶ ବିଦେଶରେ ନିଜର କଳା ପ୍ରଦର୍ଶନ କରି ବହୁ ଖ୍ୟାତି ଅର୍ଜନ କରିଅଛନ୍ତି । ସେମାନଙ୍କ ମଧ୍ୟରେ ଦୀପ୍ତି ରାୟ୍, ଲେଖା ମିଶ୍ର, ସରଣି ପାଣ୍ଡେ ଇତ୍ୟାଦିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଶୀ ନୃତ୍ୟ ପ୍ରତି ତାଙ୍କର ଅବଦାନ ନିମନ୍ତେ ସେ ଓଡ଼ିଶାର ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ । ୧୯୮୪ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ବିଶିଷ୍ଟ ନୃତ୍ୟଗୁରୁ ରୂପେ ତାଙ୍କୁ ଅଭିନନ୍ଦିତ ଏବଂ ପୁରସ୍କୃତ କରିଛନ୍ତି । କଟକର କଳିଙ୍ଗ ଭାରତୀ ଅନୁଷ୍ଠାନ ତରଫରୁ ତାଙ୍କୁ 'ସଚ୍ଚିଦାନନ୍ଦ ପୁରସ୍କାର', ୧୯୯୦ରେ ଉତ୍କଳ ପାଠକ ସଂସଦ ପୁରସ୍କାର ମିଳିବା ସଙ୍ଗେ ସଙ୍ଗେ ମଣିମାଣିକ, କଳିକା, ଉତ୍କଳ ଅନୁଷ୍ଠାନ, ଜନତା ରଙ୍ଗମଞ୍ଚ ଓ ବାଣୀଶ୍ରୀ କଳା ଅନୁଷ୍ଠାନ ତରଫରୁ ତାଙ୍କୁ ସମ୍ମାନିତ କରାଯାଇଛି । ଓଡ଼ିଶାର ନୃତ୍ୟ କ୍ଷେତ୍ରକୁ ଅଧିକ ଉନ୍ନତ କରିବାରେ ତାଙ୍କର ପ୍ରଚେଷ୍ଟା ଯେ ନିଶ୍ଚୟ ଅବ୍ୟାହତ ରହିବ ଏ ବିଶ୍ୱାସ ଆମର ଅଛି ।

●

## ଶ୍ରୀମତୀ ଭାନୁମତୀ ଦେବୀ
ପାରଳାଖେମୁଣ୍ଡି, ଗଞ୍ଜାମ



ଓଡ଼ିଶା ରଙ୍ଗମଞ୍ଚ ତଥା ଚଳଚ୍ଚିତ୍ର ଜଗତର ପ୍ରଖ୍ୟାତ ଅଭିନେତ୍ରୀ ଶ୍ରୀମତୀ ଭାନୁମତୀ ଦେବୀ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡିଠାରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ଛଅ ବର୍ଷ ବୟସରେ ଗୁରୁ ଶ୍ରୀ ସତ୍ୟନାରାୟଣ ପଣ୍ଡାଙ୍କ ତତ୍ତ୍ୱାବଧାନରେ ସଙ୍ଗୀତ ଶିକ୍ଷା କରି ପାରଳା ମହାରାଜାଙ୍କ ଦ୍ୱାରା ପୁରସ୍କୃତ ହୋଇଥିଲେ । ଏହାପରେ ସେ ପୁରୀର ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ରଙ୍ଗମଞ୍ଚରେ ଅଭିନେତ୍ରୀ ଭାବରେ ଯୋଗଦାନ କରିଥିଲେ । ଦୀର୍ଘ ତିରିଶ ବର୍ଷ ଧରି ସେ ନାୟିକା ଭୂମିକାରେ ବହୁ ନାଟକରେ ଅଂଶ ଗ୍ରହଣ କରି ସ୍ୱୀୟ ପ୍ରତିଭାର ପରିଚୟ ଦେଇ ଅଛନ୍ତି । ସେ ନୃତ୍ୟ, ସଙ୍ଗୀତ ଓ ଅଭିନୟ ଏହି ତ୍ରିବିଧ କଳାରେ ସୁନିପୁଣା । ସେ ମଧ୍ୟ ବାରଟି ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରିବାର ଗୌରବ ଅର୍ଜନ କରିଅଛନ୍ତି । ବର୍ତ୍ତମାନ ପର୍ଯ୍ୟନ୍ତ ସେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍‌ର ରଙ୍ଗମଞ୍ଚରେ ଜଣେ ବିଶିଷ୍ଟ ଅଭିନେତ୍ରୀ ଭାବରେ କାର୍ଯ୍ୟରତ ।

●



## ଶ୍ରୀ ରାଧାଗୋବିନ୍ଦ ଘୋଷ
**ବାଖରାବାଦ, କଟକ ସହର**

**ଜନ୍ମ—୧୯୧୧ ମସିହା**

ଓଡ଼ିଶାର ବିଶିଷ୍ଟ ତବଲାବାଦକମାନଙ୍କ ମଧ୍ୟରେ ଅନ୍ୟତମ ଶ୍ରୀ ରାଧାଗୋବିନ୍ଦ ଘୋଷ ୧୯୧୧ ମସିହାରେ କଟକ ସହରସ୍ଥିତ ବାଖରାବାଦଠାରେ ଜନ୍ମଗ୍ରହଣ କରିଥିଲେ । ସେ ପ୍ରଥମେ ତାଙ୍କର ପିତା ୰ କୈଳାସ ଚନ୍ଦ୍ର ଘୋଷ ଏବଂ ଭାଇ କହ୍ଲାଇଲାଲ୍ ଘୋଷଙ୍କଠାରୁ ତବଲା ବାଦନ ଶିକ୍ଷା ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ୰ ପଣ୍ଡିତ କ୍ଷେତ୍ରମୋହନ କର, ୰ ଶ୍ରୀ ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନ, ଓସ୍ତାଦ୍ ମସିତୁଲ୍ଲା ଖାଁ ଏବଂ ପ୍ରଖ୍ୟାତ ସଙ୍ଗୀତଜ୍ଞ ଡଃ ଜ୍ଞାନପ୍ରକାଶ ଘୋଷଙ୍କ ନିକଟରୁ ତବଲା ବାଦନରେ ସମ୍ପୂର୍ଣ୍ଣ ମାର୍ଗ-ଦର୍ଶନ ଲାଭ କରିଥିଲେ । ନିଜର ଗମ୍ଭୀର ଅଧ୍ୟବସାୟ ଏବଂ ପ୍ରଚେଷ୍ଟା ବଳରେ ସେ ନିଜକୁ ଜଣେ ବିଶିଷ୍ଟ ତବଲା ବାଦକ ଭାବରେ ପ୍ରତିଷ୍ଠିତ କରିପାରିଥିଲେ । ଶ୍ରୀ ଘୋଷ କଟକ ଆକାଶବାଣୀ କେନ୍ଦ୍ରରେ ଦୀର୍ଘଦିନ ତବଲୁଚି ଭାବରେ କାର୍ଯ୍ୟ କରିବା ପରେ ଅବସର ଗ୍ରହଣ କରିଥିଲେ । ଏଥିସହ ସେ ଦୀର୍ଘ ସମୟ ଧରି କଳାବିକାଶ କେନ୍ଦ୍ର ଏବଂ ଉତ୍କଳ ସଙ୍ଗୀତ ସମାଜରେ ଗୁରୁ ଭାବରେ କାର୍ଯ୍ୟ କରିଥିଲେ । ସ୍ୱର୍ଗତ ରାମାନନ୍ଦ କାନୁନ୍‌ଗୋ, ଶ୍ରୀବସ୍ତ୍ର ପଟ୍ଟନାୟକ, ଶ୍ରୀ ଯୋଥମ୍ ମହାନ୍ତି ପ୍ରମୁଖ ତାଙ୍କର ଶିଷ୍ୟ ଭାବେ ତାଙ୍କ ଆଲୋକରେ ଉଦ୍ଭାସିତ ହୋଇ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

ଶାସ୍ତ୍ରୀୟ ସଙ୍ଗୀତ କ୍ଷେତ୍ରରେ ତାଙ୍କର କୃତିତ୍ୱ ନିମନ୍ତେ କଲିକତା ଶାସ୍ତ୍ରୀୟ ପରିଷଦ, ନ୍ୟାସନାଲ ମିଉଜିକ୍ ଆସୋସିଏସନ୍ ଦ୍ୱାରା ସମ୍ମାନିତ ହେବା ସଙ୍ଗେ ସଙ୍ଗେ ୧୯୮୩-୮୪ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଏହି ଜନ୍ମଜାତ ଶିଳ୍ପୀଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରାଯାଇଅଛି । ବିଗତ ବର୍ଷରେ ଏହି ମହାନ୍ ଶିଳ୍ପୀଙ୍କର ମହାପ୍ରସ୍ଥାନ ଘଟି ଓଡ଼ିଶାର ସଙ୍ଗୀତ ରାଜ୍ୟରେ ଏକ ବିରାଟ ଅପୂରଣୀୟ ଶୂନ୍ୟତାର ସୃଷ୍ଟି ହୋଇଛି ।

## ଶ୍ରୀ ମାଗୁଣି ଚରଣ କୁଅଁର

**କେନ୍ଦୁଝର ଗଡ଼**

**ଜନ୍ମ—୧୯୩୭, ଫେବୃୟାରୀ ୧୨**



ଓଡ଼ିଶାର ଲୋକନାଟ୍ୟ କଳା କାଠି କୁଣ୍ଢେଇ ନୃତ୍ୟର ଏକମାତ୍ର କଳାକାର ଶ୍ରୀ ମାଗୁଣି ଚରଣ କୁଅଁର ୧୯୩୭ ମସିହା ଫେବୃୟାରୀ ୧୨ ତାରିଖରେ କେନ୍ଦୁଝର ଜିଲ୍ଲାର କେନ୍ଦୁଝର ଗଡ଼ଠାରେ ଜନ୍ମଗ୍ରହଣ କରିଥିଲେ । କାଠି କୁଣ୍ଢେଇ ନୃତ୍ୟର ସେ ଜଣେ ଅଦ୍ୱିତୀୟ କଳାକାର । ଶ୍ରୀ କୁଅଁର ନିଜ ହାତରେ କୁଣ୍ଢେଇ ତିଆରି କରି, ନିଜେ କହି, ତଦ୍ୱାରା ବିଭିନ୍ନ ପ୍ରକାର ସଂଳାପ ପ୍ରଦର୍ଶନ କରି ଦର୍ଶକମାନଙ୍କୁ ମୁଗ୍ଧ କରି-ପାରିବାରେ ଅତ୍ୟନ୍ତ ସଫଳ ଓ ସକ୍ଷମ । ସେ ତାଙ୍କର କୃତିତ୍ୱ ପାଇଁ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ, ଦୂରଦର୍ଶନ ଆଦି ସଂସ୍ଥାରୁ ସମ୍ମାନ ଏବଂ ପ୍ରଶଂସା ପତ୍ର ଲାଭ କରିଅଛନ୍ତି । ଏହି କଳା ବାହାରେ ଶ୍ରୀ କୁଅଁର ମାଟି ଓ ପଥରରେ ମୂର୍ତ୍ତି ନିର୍ମାଣ କରିବାରେ ମଧ୍ୟ ଯଥେଷ୍ଟ ପାରଦର୍ଶିତା ଅର୍ଜନ କରିଅଛନ୍ତି । ଓଡ଼ିଶାର ଲୋକନୃତ୍ୟ କ୍ଷେତ୍ରରେ ତାଙ୍କର ବିଶେଷ ଅବଦାନ ନିମନ୍ତେ ୧୯୮୩-୮୪ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଏହି ବହୁ ପ୍ରତିଭା ସମ୍ପନ୍ନ କଳାକାରଙ୍କୁ ସମ୍ବର୍ଦ୍ଧିତ ଏବଂ ସମ୍ମାନିତ କରିଅଛନ୍ତି ।

ସମ୍ପ୍ରତି ଶ୍ରୀ କୁଅଁର ଗୋଟିଏ କାଠି କୁଣ୍ଢେଇ ନୃତ୍ୟ ଦଳ ଗଠନ କରି ଓଡ଼ିଶାର ପୁରପଲ୍ଲୀରେ ତାହା ପ୍ରଦର୍ଶନ କରାଇ ନିଜର ଜୀବିକା ନିର୍ବାହ କରୁଅଛନ୍ତି ।



## ଶ୍ରୀ ପ୍ରଫୁଲ୍ଲ କୁମାର ରଥ

ଖୁଣ୍ଟୁଲୁଗୁଡ଼ା, କଳାହାଣ୍ଡି

ଜନ୍ମ—୧୯୩୭, ଜାନୁଆରୀ ୩

ଓଡ଼ିଶାର ନାଟ୍ୟକାରମାନଙ୍କ ମଧ୍ୟରେ ପଶ୍ଚିମ ଓଡ଼ିଶାର ଖ୍ୟାତନାମା ନାଟ୍ୟକାର ଶ୍ରୀ ପ୍ରଫୁଲ୍ଲ କୁମାର ରଥ ୧୯୩୭ ମସିହା ଜାନୁଆରୀ ମାସ ୩ ତାରିଖରେ କଳାହାଣ୍ଡି ଜିଲ୍ଲାର ଖୁଣ୍ଟୁଲୁଗୁଡ଼ାଠାରେ ୰ ଗଙ୍ଗାଧର ରଥ ଏବଂ ଚଞ୍ଚଳା ଦେବୀଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ୧୯୪୪ ରେ ସେ ଗ୍ରାମ ଛାଡ଼ି ଭବାନୀପାଟଣା ସହରକୁ ଆସିବା ପରେ ଏଠାରେ ବିଭିନ୍ନ ନାଟ୍ୟ ଓ ଅପେରା ଦଳମାନଙ୍କ ଦ୍ୱାରା ମଞ୍ଚସ୍ଥ ନାଟକସବୁକୁ ଦେଖି ନିଜେ ଜଣେ ନାଟ୍ୟକାର ହେବାର ସ୍ୱପ୍ନ ବହୁ ବାଲ୍ୟକାଳରୁ ପୋଷଣ କରି ଆସୁଥିଲେ । ୧୯୫୪ ରେ ଉଚ୍ଚ ଇଂରାଜୀ ପାଠ୍ୟକ୍ରମ ଶେଷକରି ଆର୍ଥିକ ଅସୁବିଧାରୁ ଆଉ ଅଧିକ ପଢ଼ି ପାରି ନଥିଲେ ଏବଂ ଶେଷରେ ଶିକ୍ଷକ ବୃତ୍ତିକୁ ଗ୍ରହଣ କରିଥିଲେ । ସେହି ସମୟରୁ ତାଙ୍କର କଳାମୟ ଜୀବନର ସାଧନା ଆରମ୍ଭ କରିଥିଲେ । ତାଙ୍କ ରଚିତ ପ୍ରଥମ ନାଟକ 'ଦୁଃଖିନୀ' ଅଦ୍ୟାବଧି ମଞ୍ଚସ୍ଥ ହୋଇ ପାରିନାହିଁ । ୧୯୫୭ ରେ ନିଜସ୍ୱ ପ୍ରଚେଷ୍ଟାରେ ସେ 'ବିଜୟୀ କ୍ଲବ' ନାମରେ ଏକ ନାଟ୍ୟ ସଂସ୍ଥା ପ୍ରତିଷ୍ଠା କରାଇଥିଲେ । ଏହି ସଂସ୍ଥା ତାଙ୍କର ଦ୍ୱିତୀୟ ନାଟକ 'ରାଜମାଳା' ମଞ୍ଚସ୍ଥ କରାଇଥିଲା । ପରବର୍ତ୍ତୀ ସମୟରେ ତାଙ୍କ ଦ୍ୱାରା ସିନ୍ଦୂରଟୋପା, ସଂଘର୍ଷ, ଫେରାର ଆସାମୀ, ଶୂନ୍ୟ ଆକାଶ, ଅମରଆଖି, ସ୍ୱର୍ଣ୍ଣଚମ୍ପା, ଦେବଯାନୀ ଆଦି ପ୍ରାୟ ୩୫ ଖଣ୍ଡ ନାଟକ ରଚିତ ହୋଇ ବହୁ ସୌଖୀନ ଏବଂ ପେଷାଦାର ରଙ୍ଗମଞ୍ଚରେ ଅଭିନୀତ ହୋଇ ଶ୍ରୀ ରଥଙ୍କୁ ସାଫଲ୍ୟର ଶୀର୍ଷକୁ ନେଇ ଯାଇପାରିଛି । ଶ୍ରୀ ରଥ ଜଣେ ସଫଳ ଚଳଚ୍ଚିତ୍ରର ଚିତ୍ରନାଟ୍ୟ ଲେଖକ ଏବଂ ନିର୍ଦ୍ଦେଶକ ଭାବେ ପ୍ରଶଂସିତ । ତନ୍ମଧ୍ୟରେ ଚଳଚ୍ଚିତ୍ର 'ସମର୍ପଣ' ଏବଂ 'ପଳାତକର' ନାମ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ଶ୍ରୀ ରଥ ଦୂରଦର୍ଶନ ଏବଂ ଆକାଶବାଣୀର ସ୍ୱୀକୃତ ନାଟ୍ୟକାର ଅଟନ୍ତି । ତାଙ୍କ ରଚିତ ବେତାର ନାଟକ 'ସ୍ୱର୍ଗରେ କ୍ଷମତା ଲଢ଼େଇ' ସର୍ବୋତ୍କୃଷ୍ଟ ହାସ୍ୟ ରସାତ୍ମକ ନାଟକ ଭାବେ ଆକାଶବାଣୀ ପୁରସ୍କାର ୧୯୯୧ ରେ ଲାଭକରିଛି । ତାଙ୍କର ବହୁ ନାଟକ

ଓଡ଼ିଶାର ସାଂସ୍କୃତିକ ଅନୁଷ୍ଠାନମାନଙ୍କ ଦ୍ୱାରା ପୁରସ୍କୃତ । ନିଜର ଅସାମାନ୍ୟ ପ୍ରତିଭା ନିମନ୍ତେ ଶ୍ରୀ ରଥ ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ବିଭିନ୍ନ ସମୟରେ ସମ୍ବର୍ଦ୍ଧିତ ଓ ପୁରସ୍କୃତ ।

ଓଡ଼ିଶାର ନାଟ୍ୟ ଜଗତକୁ ତାଙ୍କର ବିଶେଷ ଅବଦାନକୁ ସ୍ମରଣ କରି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ରଥଙ୍କୁ ୧୯୮୩-୮୪ ବର୍ଷରେ ସମ୍ବର୍ଦ୍ଧିତ ଓ ପୁରସ୍କୃତ କରିଅଛନ୍ତି । ଅଧୁନା ଶ୍ରୀ ରଥ ଭବାନୀପାଟଣା ସହରସ୍ଥ ମନ୍ଦାରବାଗ ପଡ଼ାଠାରେ ରହି ଶିକ୍ଷକଭାବେ ଦେଶର ଭାବୀ ଦାୟାଦମାନଙ୍କୁ ଠିକ୍ ପଥ ପ୍ରଦର୍ଶନ କରିବା ସହ ସାହିତ୍ୟ ଓ ନାଟକ ଜଗତର ଅଭିବୃଦ୍ଧି ନିମନ୍ତେ କଲମ ଚାଳନାରେ ନିମଗ୍ନ ।

●

# ଶ୍ରୀମତୀ ବିଷ୍ଣୁପ୍ରିୟା ସାମନ୍ତସିଂହାର

ପୁରୀ

ଜନ୍ମ—୧୯୨୭, ଫେବୃଆରୀ ୫



ଓଡ଼ିଶୀ ସଙ୍ଗୀତ ଜଗତର ଉଜ୍ଜ୍ୱଳ ଜ୍ୟୋତିଷ୍କ କଣ୍ଠଶିଳ୍ପୀ ଶ୍ରୀମତୀ ବିଷ୍ଣୁପ୍ରିୟା ସାମନ୍ତସିଂହାର ୧୯୨୭ ମସିହା ଫେବୃଆରୀ ମାସ ୫ ତାରିଖରେ ପୁରୀ ସହରରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ସେ ସଙ୍ଗୀତ ଶିକ୍ଷାପ୍ରତି ବିଶେଷ ଆଗ୍ରହ ପ୍ରକାଶ କରିଥିଲେ ଏବଂ ପ୍ରଖ୍ୟାତ ଓଡ଼ିଶୀ ଶୈଳୀର ଗାୟକ ସ୍ୱର୍ଗତ ସିଂହାରୀ ଶ୍ୟାମସୁନ୍ଦର କରଙ୍କ ନିକଟରୁ ସଙ୍ଗୀତ ସହ କର୍ଣ୍ଣାଟକୀ ପଦ୍ଧତି ଏବଂ ହିନ୍ଦୁସ୍ଥାନୀ ପଦ୍ଧତିରେ ଶାସ୍ତ୍ରୀୟ ସଙ୍ଗୀତ ମଧ୍ୟ ଶିକ୍ଷା କରିଥିଲେ । ମାତ୍ର ବାରବର୍ଷ ବୟସରୁ ୧୯୩୯ ମସିହାଠାରୁ ୧୯୪୪ ମସିହା ପର୍ଯ୍ୟନ୍ତ ରାଜ୍ୟର ବିଭିନ୍ନ ସଙ୍ଗୀତ ସମ୍ମିଳନୀରେ ଅଂଶଗ୍ରହଣ କରି ସେ ପୁରସ୍କୃତ ହେବା ସହ ୧୯୪୪ ମସିହା ଏପ୍ରିଲ ୬ ତାରିଖ ଏବଂ ମଇ ୧୨ ତାରିଖରେ ଯଥାକ୍ରମେ ଉତ୍କଳ ସାହିତ୍ୟ ସମାଜ ଏବଂ ଉତ୍କଳ ସଙ୍ଗୀତ ସମାଜ ଦ୍ୱାରା ଅଭିନନ୍ଦିତ ହୋଇଥିଲେ ଏବଂ ସ୍ୱର୍ଣ୍ଣପଦକ ସହ ପ୍ରଶଂସା ପତ୍ର ଲାଭ କରିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସରକାରଙ୍କ ତରଫରୁ ଯୁଦ୍ଧକାଳୀନ ସମର ସଙ୍ଗୀତ ରେକର୍ଡ କରିବା କ୍ଷେତ୍ରରେ ସେ ଥିଲେ ସର୍ବପ୍ରଥମ ମହିଳା କଣ୍ଠଶିଳ୍ପୀ ।

୧୯୪୮ରେ ଆକାଶବାଣୀ କଟକ କେନ୍ଦ୍ରର ପ୍ରତିଷ୍ଠା ପର୍ଯ୍ୟନ୍ତ ପ୍ରଥମ ମହିଳା ଶିଳ୍ପୀ ଭାବରେ ସେ କଲିକତା ବେତାର କେନ୍ଦ୍ରର ଓଡ଼ିଆ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବାର ଗୌରବ ଅର୍ଜନ କରିଅଛନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ୧୯୪୮ରୁ ୧୯୫୭ ପର୍ଯ୍ୟନ୍ତ ସେ ଆକାଶବାଣୀ, କଟକ କେନ୍ଦ୍ରରେ ସ୍ୱୀକୃତ କଣ୍ଠଶିଳ୍ପୀ ଭାବେ ପାରମ୍ପରିକ ଓଡ଼ିଶୀ, ଛାନ୍ଦ, ଚମ୍ପୂ ଓ ଭଜନ ପରିବେଷଣ କରିଆସିଛନ୍ତି ।

ଅଧୁନା ସେ ଆକାଶବାଣୀ, କଟକ କେନ୍ଦ୍ରର କଣ୍ଠପରୀକ୍ଷା ସମିତିର ଜଣେ ମାନନୀୟା ସଦସ୍ୟା ଭାବେ ୧୯୮୭ ମସିହାଠାରୁ କାର୍ଯ୍ୟ କରି ଆସୁଛନ୍ତି । ଏଥି ସହିତ ଶ୍ରୀମତୀ ସାମନ୍ତ-

ସିଂହାର 'ଅଖିଳ ଭାରତୀୟ ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳ', ବମ୍ବେ ଓ ପ୍ରାଚୀନ କଳାକେନ୍ଦ୍ର ଚଣ୍ଡୀଗଡ଼ରେ ପରୀକ୍ଷକ ରୂପେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ମାଧ୍ୟମିକ ଶିକ୍ଷା ବୋର୍ଡ଼ରେ ସଙ୍ଗୀତ ପରୀକ୍ଷକ ରୂପେ ମଧ୍ୟ ନିଯୁକ୍ତ ।

ନିଜର ଅନନ୍ୟ ସଙ୍ଗୀତ ପ୍ରତିଭା ନିମନ୍ତେ ଶ୍ରୀମତୀ ସାମନ୍ତସିଂହାର ୧୯୮୫ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ସମ୍ମାନ ଓ ପୁରସ୍କାର ଲାଭ କରିବା ସହ ୧୯୮୭ରେ ତତ୍କାଳୀନ ରାଜ୍ୟପାଳଙ୍କ ଦ୍ୱାରା ପୁରୀଠାରେ ବିପ୍ରବମିଳନ ଅବସରରେ ସମ୍ମାନିତା ହୋଇଥିଲେ ।

ଶ୍ରୀମତୀ ସାମନ୍ତସିଂହାର ଓଡ଼ିଶୀ ପରମ୍ପରାର ଜଣେ ସ୍ମରଣୀୟ ପ୍ରତିଭା । ଗାୟକରତ୍ନ ସିଂହାରୀ ଶ୍ୟାମସୁନ୍ଦର କରଙ୍କର ପଟ୍ଟଶିଷ୍ୟା ଭାବେ ତାଙ୍କର ଦୀର୍ଘ ଦିନର ଶିଳ୍ପୀ ଜୀବନ ଯଥାର୍ଥରେ ସାର୍ଥକ ହୋଇଛି । ସମ୍ପ୍ରତି ସେ ପୁରୀ ସରକାରୀ ଉଚ୍ଚ ବାଳିକା ବିଦ୍ୟାଳୟରେ ସଙ୍ଗୀତ ଶିକ୍ଷିକା ରୂପେ ଅବସ୍ଥାପିତା ।

## ଶ୍ରୀ ଦୁଃଖିରାମ ସ୍ୱାଇଁ
### ଦରବା, ଜଗତସିଂହପୁର, କଟକ

ଜନ୍ମ—୧୯୨୫, ଏପ୍ରିଲ୍ ୨୩



ଓଡ଼ିଆ ଚଳଚ୍ଚିତ୍ର କ୍ଷେତ୍ରରେ ନିଜକୁ କଳାକାରଙ୍କ ରୂପେ ସୁପ୍ରତିଷ୍ଠିତ କରିପାରିଥିବା ଶ୍ରୀ ଦୁଃଖିରାମ ସ୍ୱାଇଁ ୧୯୨୫ ମସିହା ଏପ୍ରିଲ୍ ମାସ ୨୩ ତାରିଖରେ କଟକ ଜିଲ୍ଲାର ଜଗତସିଂହପୁର ସବ୍‌ଡିଭିଜନ୍ ଅନ୍ତର୍ଗତ ଦରବା ଗ୍ରାମରେ ଏକ କଳାକାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ୰ ଈଶ୍ୱର ସ୍ୱାଇଁ ଦହୁଡ଼ି (ମଶାଲ) ଯୁଗର ଲୀଳା ଯାତ୍ରାର ଏକ ଧୁରନ୍ଧର ଗାୟକ ଥିଲେ ଏବଂ ବାଳକ ଦୁଃଖିରାମ ଉତ୍ତରାଧିକାର ସୂତ୍ରରେ ସେହି କଳାପ୍ରବଣତା ଲାଭ କରିଥିଲେ । ବାଲ୍ୟାବସ୍ଥାରୁ ତାଙ୍କୁ ଗାୟନ ଅପେକ୍ଷା ଯାତ୍ରା ଅଭିନୟ ବେଶୀ ପ୍ରଭାବିତ କରିଥିଲା । ଏକାକୀ ଥିବା ଅବସ୍ଥାରେ ନିଜେ ଦେଖିଥିବା ଯାତ୍ରା ସଂଳାପ ସବୁ ଆବୃତ୍ତି କରି ନିଜେ ଅଭିନୟ କରିବା ଥିଲା ତାଙ୍କର ସହଜାତ ପ୍ରବୃତ୍ତି । ନିଜ ଗ୍ରାମର ସଂକୀର୍ତ୍ତନ ଆଖଡ଼ାର ଗୀତ ସବୁକୁ ଶୁଣି ମନେରଖି ତାହା ହଠାତ୍ ପରିବେଷଣ କରି ସେ ଗ୍ରାମର ସମସ୍ତଙ୍କୁ ଚକିତ କରିଦେଇଥିଲେ । ସେହି ସମୟରେ ସପ୍ତମ ଶ୍ରେଣୀର ଛାତ୍ର ଥିବା ବେଳେ ଗଣେଶ ପୂଜା ଅବସରରେ ବିଦ୍ୟାଳୟର 'ଚାଣକ୍ୟ' ଏକାଙ୍କିକାରେ 'ନାପିତ' ଭୂମିକାରେ ଚମତ୍କାର ଅଭିନୟ କରି ସେ ସମସ୍ତଙ୍କର ଅକୁଣ୍ଠ ଶ୍ରଦ୍ଧା ଏବଂ ସ୍ନେହ ଲାଭ କରିଥିଲେ । ଏହି ଏକାଙ୍କିକାର ନିର୍ଦ୍ଦେଶକ ଥିଲେ ତତ୍କାଳୀନ ବିଧାନସଭାର ସଦସ୍ୟ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି, ଯାହାଙ୍କୁ ଶ୍ରୀ ସ୍ୱାଇଁ ନିଜ ଜୀବନର ପ୍ରଥମ ଗୁରୁ ଭାବରେ ସ୍ୱୀକାର କରନ୍ତି ।

ବିଦ୍ୟାଳୟ ଶିକ୍ଷା ଶେଷ ହେବା ପରେ ଶ୍ରୀ ସ୍ୱାଇଁ ଉଚ୍ଚ ଶିକ୍ଷାର ମୋହ ପରିହାର କରି ୧୯୪୭ରେ ୰ କାଳୀଚରଣ ପଟ୍ଟନାୟକଙ୍କ ପ୍ରତିଷ୍ଠିତ 'ଓଡ଼ିଶା ଥିଏଟର୍ସ'ରେ ଯୋଗଦାନ କଲେ ଏବଂ ପରେ ପରେ ୰ ଅପର୍ତ୍ତି ପାଣିଗ୍ରାହୀଙ୍କର 'ସଦାନନ୍ଦ ନାଟ୍ୟ ନିକେତନ'ରେ ନିର୍ଦ୍ଦେଶକର ଦାୟିତ୍ୱ ମଧ୍ୟ ତୁଲାଇଲେ । ୧୯୪୮ରେ ପୁରୀର ଅନ୍ନପୂର୍ଣ୍ଣା ଏ'ଗ୍ରୁପ୍ ଥିଏଟରରେ ଯୋଗଦାନ କରି ଅଦ୍ୟାବଧି ତହିଁରେ ଅଭିନୟ କରି ଆସୁଛନ୍ତି ।

ନାଟ୍ୟଗୁରୁ ସ୍ୱର୍ଗତ କାଳୀଚରଣଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅଭିନୟ କଳାରେ ପ୍ରଶିକ୍ଷିତ ଏହି ପ୍ରତିଭାଶାଳୀ ଅଭିନେତା ଓଡ଼ିଆ ଚଳଚ୍ଚିତ୍ର ଜଗତରେ ନିଜକୁ ଜଣେ ସଫଳ ଖଳନାୟକ ଭାବରେ ପ୍ରତିଷ୍ଠିତ କରିଥିଲେ ମଧ୍ୟ ମଞ୍ଚ ଅଭିନୟରୁ ଦୂରେଇ ଯାଇନାହାନ୍ତି । ସେ ଏବେ ବି ରଙ୍ଗମଞ୍ଚର ଜଣେ ବଳିଷ୍ଠ ରୋମାଣ୍ଟିକ୍ ନାୟକ ଓ ସବୁ ଶ୍ରେଣୀର ଅଭିନୟରେ ପଟୁ ଅଭିନେତା ରୂପେ ସର୍ବଜନାଦୃତ । ଧର୍ମପିତା ଜଗବନ୍ଧୁ ନାଟକରେ 'ମେଜର ଫ୍ଲେଚର', ଲକ୍ଷେଶ୍ୱରରେ କୁଷ୍ଠରୋଗୀ 'ବସ୍ତ୍ରହରଣ', ଅଯାତ୍ରୀ ସହରର ଧନପତି 'ଧନଗୋପାଳ' ଏବଂ ବାଜୁଅ ଝିଅ ନାଟକର ହାସ୍ୟ ଅଭିନେତାର ଅବିସ୍ମରଣୀୟ ଅଭିନୟ ସବୁ ତାଙ୍କର ଭିନ୍ନ ରୁଚି, ଚରିତ୍ର ଏବଂ ବହୁମୁଖୀ ଅଭିନୟ ପ୍ରତିଭାର ସ୍ୱାକ୍ଷର ବହନ କରିଅଛି । ଏତଦ୍‌-ବ୍ୟତୀତ ଶ୍ରୀ ସ୍ୱାଇଁ ଆକାଶବାଣୀ ଏବଂ ଦୂରଦର୍ଶନର ଜଣେ ସ୍ୱୀକୃତ ଅଭିନେତା ଭାବରେ ଅଜସ୍ର ନାଟକରେ ସଫଳ ଅଭିନୟ କରିବା ସହ ଓଡ଼ିଆ ଚଳଚ୍ଚିତ୍ର ଜଗତର ଅପ୍ରତିଦ୍ୱନ୍ଦ୍ୱୀ ଖଳନାୟକ ଅଭିନେତା ରୂପେ ଓଡ଼ିଶାର ପୁରପଲ୍ଲୀରେ ପରିଚିତ ।

ଓଡ଼ିଶା ରଙ୍ଗମଞ୍ଚ ଓ ନାଟ୍ୟ ପରିବେଷଣ ପାଇଁ ନିଜର ଅବଦାନ ନିମନ୍ତେ ଶ୍ରୀ ସ୍ୱାଇଁ ବହୁ ସାଂସ୍କୃତିକ ଅନୁଷ୍ଠାନରୁ ପୁରସ୍କୃତ ଏବଂ ସମ୍ମାନିତ ହୋଇଅଛନ୍ତି । ୧୯୮୪-୮୫ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ତାଙ୍କୁ ସମ୍ବର୍ଦ୍ଧିତ ତଥା ପୁରସ୍କୃତ କରାଯାଇଛି ।

ଅଭିନୟ କ୍ଷେତ୍ରରେ ଓଡ଼ିଶାର ନାଟ୍ୟ ସଂସ୍କୃତି ପାଇଁ ସେ ନିଜ ଜୀବନ ଉତ୍ସର୍ଗ କରିବା ସଙ୍ଗେ ସଙ୍ଗେ କଳାପ୍ରେମୀ ଦର୍ଶକବୃନ୍ଦଙ୍କର ଚିତ୍ତ ବିନୋଦନ ପାଇଁ ନିଜକୁ ସମର୍ପଣ କରିଛନ୍ତି । ତାଙ୍କର ଜୀବନ ଇତିହାସ ଆଗାମୀ କାଳର କଳାକାରମାନଙ୍କ ନିମନ୍ତେ ପାଥେୟ ।

## ଶ୍ରୀମତୀ ବୀଣାପାଣି ମହାନ୍ତି

କଟକ ସହର

ଜନ୍ମ—୧୯୨୮, ଜୁନ୍ ୨୮



ଓଡ଼ିଶାର ଶାସ୍ତ୍ରୀୟ ସଙ୍ଗୀତ କ୍ଷେତ୍ରରେ ବିଶେଷ ପାରଦର୍ଶିତା ପ୍ରଦର୍ଶନ କରିଥିବା ସଙ୍ଗୀତ ଶିଳ୍ପୀମାନଙ୍କ ମଧ୍ୟରେ ଶ୍ରୀମତୀ ବୀଣାପାଣି ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଜଣେ ସ୍ୱନାମଧନ୍ୟା ସିତାର୍ ଶିଳ୍ପୀ ଭାବରେ ସୁପରିଚିତା ଶ୍ରୀମତୀ ମହାନ୍ତି ଯଶସ୍ୱୀ ଶିକ୍ଷାବିତ୍ ସ୍ୱ· ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଏକମାତ୍ର ସନ୍ତାନଭାବେ ୧୯୨୮ ମସିହା ଜୁନ୍ ମାସ ୨୮ ତାରିଖରେ କଟକ ସହରରେ ଜନ୍ମଗ୍ରହଣ କରିଥିଲେ । ସାହିତ୍ୟ, ସଙ୍ଗୀତ-ପ୍ରେମୀ ମାତା ପିତାଙ୍କର ଅନୁପ୍ରେରଣା ଲାଭ କରି କନ୍ୟା ବୀଣାପାଣି ବାଲ୍ୟ ଜୀବନରୁ ହିଁ ଶାସ୍ତ୍ରୀୟ ସଙ୍ଗୀତ ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ । ଇଂରାଜୀ ବିଦ୍ୟାଳୟରେ ଶିକ୍ଷା ଲାଭ କରିଥିଲେ ମଧ୍ୟ ପାଶ୍ଚାତ୍ୟ ସଭ୍ୟତା ପ୍ରତି ସେ କେବେହେଲେ ଆକୃଷ୍ଟ ହୋଇ ନ ଥିଲେ ଏବଂ ପରେ ହିନ୍ଦୀ ଭାଷାରେ 'କୋବିଦ' ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ମାତ୍ର ଛଅବର୍ଷ ବୟସରୁ ସେ ଶାସ୍ତ୍ରୀୟ ସଙ୍ଗୀତ ଚର୍ଚ୍ଚା ଏବଂ ଶିକ୍ଷାଲାଭ କରିଥିଲେ । ତାଙ୍କର ପ୍ରଥମ ଗୁରୁ ସ୍ୱ· ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନଙ୍କ ନିକଟରୁ ଏବଂ ପରବର୍ତ୍ତୀ ସମୟରେ ପ୍ରଖ୍ୟାତ ସଙ୍ଗୀତଜ୍ଞ ସ୍ୱ· ଶ୍ୟାମସୁନ୍ଦର ଧୀର ଏବଂ ସ୍ୱ· ଦାମୁଗୋପାଳ ଦାସଙ୍କ ନିକଟରୁ ବିଧିବଦ୍ଧ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା ଲାଭ କରିଥିଲେ । ତାଙ୍କର ସଙ୍ଗୀତ ଶିକ୍ଷା ନିମନ୍ତେ ତତ୍କାଳୀନ ଗଡ଼ମଧୁପୁର ପଣ୍ଡିତ ସ୍ୱ· ବଳଦେବ ଧୀରଙ୍କର ଉତ୍ସାହ ପ୍ରଦାନ ମଧ୍ୟ ପ୍ରଣିଧାନଯୋଗ୍ୟ । ପରବର୍ତ୍ତୀ ଜୀବନରେ ସେ ପ୍ରଖ୍ୟାତ ସଙ୍ଗୀତଜ୍ଞମାନଙ୍କ ନିକଟରେ ଶାସ୍ତ୍ରୀୟ ସଙ୍ଗୀତରେ ଉଚ୍ଚ ଶିକ୍ଷା ଲାଭ କରିଥିଲେ । ଏମାନଙ୍କ ମଧ୍ୟରେ ପ. ବିନାୟକ ରାଓ ପଟ୍ଟବର୍ଦ୍ଧନ, ପ୍ରଖ୍ୟାତ ସରୋଦ ବାଦକ ସ୍ୱ· ଓସ୍ତାଦ୍ ଆଲ୍ଲାଉଦ୍ଦିନ୍ ଖାଁ ସାହେବ ଏବଂ ସିତାର ବିଶେଷଜ୍ଞ ଓସ୍ତାଦ୍ ଇନାୟତ୍ ହୁସେନ୍ ଖାଁଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ ।

ସେ ପ୍ରଥମେ ୧୯୩୫ରେ ସ୍ୱ· ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ଦ୍ୱାରା ଆୟୋଜିତ ନିଖିଳ ଉତ୍କଳ ସଙ୍ଗୀତ ସମ୍ମିଳନୀରେ ଅଂଶଗ୍ରହଣ କରି ପୁରସ୍କୃତା ହୋଇଥିଲେ । ପରେ ସେ

ଗାଖ୍ୟାତ୍ମକ ସଙ୍ଗୀତ ଆସରରେ ଯୋଗଦାନ କରି ଅଜସ୍ର ପ୍ରଶଂସା ଏବଂ ସମ୍ମାନ ଲାଭ କରିଥିଲେ । ୧୯୬୮ରେ ଅଲ ବେଙ୍ଗଲ୍ ମ୍ୟୁଜିକ୍ କନ୍‌ଫରେନ୍‌ସ ଏବଂ ଅଲ୍‌ଇଣ୍ଡିଆ ମିଉଜିକ୍ କନ୍‌ଫରେନ୍‌ସରେ ଅଂଶଗ୍ରହଣ କରି ନିଜ ସାଫଲ୍ୟର ପରାକାଷ୍ଠା ପ୍ରଦର୍ଶନ କରିପାରିଥିଲେ । ଫଳରେ ଭାରତର ବିଭିନ୍ନ ସ୍ଥାନରେ ହେଉଥିବା ସଙ୍ଗୀତ ସମ୍ମିଳନୀକୁ ତାଙ୍କୁ ଡାକରା ଆସୁଥିଲା । ୧୯୮୦ରେ ଆକାଶବାଣୀ କଲିକତା କେନ୍ଦ୍ରରୁ ତାଙ୍କୁ କଣ୍ଠ ସଙ୍ଗୀତ ପରିବେଷଣ ନିମନ୍ତେ ଆମନ୍ତ୍ରଣ ମିଳିଥିଲା । ପିତା ଆର୍ତ୍ତବଲ୍ଲଭଙ୍କ ନିର୍ଦ୍ଦେଶ କ୍ରମେ ସେ ଶାସ୍ତ୍ରୀୟ ସଙ୍ଗୀତ ପରିବର୍ତ୍ତେ ଓଡ଼ିଶୀ, ଗ୍ରାମ୍ୟ ଓ ଚମ୍ପୂ ଗାୟନ କରି ଆକାଶବାଣୀରେ ନିଜର କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ୧୯୦୮ରେ ଆକାଶବାଣୀ କଟକ କେନ୍ଦ୍ରର ସ୍ଥାପନା ପରେ ସେ ଭଣ୍ଡିରେ ପରୀକ୍ଷା ଦେଇ ଉଚ୍ଚମାନର ସିତାର ଶିଳ୍ପୀ ଭାବେ ସ୍ୱୀକୃତ ଲାଭ କଲେ । ୧୯୪୮ ରୁ ୧୯୪୯ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ଆକାଶବାଣୀରେ ସିତାର ପରିବେଷଣ କଲାପରେ, ୧୯୪୯ରେ ତତ୍କାଳୀନ କେନ୍ଦ୍ର ନିର୍ଦ୍ଦେଶକଙ୍କ ଅନୁରୋଧକ୍ରମେ କଟକ କେନ୍ଦ୍ରରେ ନିୟମିତ କଳାକାର ଏବଂ କର୍ମଚାରୀ ରୂପେ କାର୍ଯ୍ୟଭାର ଗ୍ରହଣ କଲେ ।

ଶିଶୁମାନଙ୍କ ପାଇଁ ବାଦ୍ୟବୃନ୍ଦ ପ୍ରସ୍ତୁତ, ଶିଶୁମାନଙ୍କୁ ସଙ୍ଗୀତ ଶିକ୍ଷା ଦେବା ସହିତ ସେମାନଙ୍କ ନିମନ୍ତେ ଆମୋଦକର କାର୍ଯ୍ୟକ୍ରମ ପ୍ରସ୍ତୁତ କରି ଶିଶୁମାନଙ୍କୁ ପ୍ରଭାବିତ କରିବା ଥିଲା ତାଙ୍କର ମୁଖ୍ୟ ଦାୟିତ୍ୱ । ଆକାଶବାଣୀର 'ଶିଶୁ ସଂସାର' କାର୍ଯ୍ୟକ୍ରମର 'ଅପା' ଭାବରେ ସେ ସାରା ଓଡ଼ିଶାରେ ପରିଚିତା ।

ଶ୍ରୀମତୀ ବୀଣାପାଣି କଟକର ନେସ୍‌ନାଲ୍ ମ୍ୟୁଜିକ୍ ଆସୋସିଏସନ୍ ଏବଂ ଉତ୍କଳ ସାହିତ୍ୟ ସମାଜରେ ଅବୈତନିକ ଶିକ୍ଷୟିତ୍ରୀ ରୂପେ ଶିକ୍ଷାଦାନ କରିଥିଲେ । ବହୁ ସ୍ଥାନରେ ଅନୁଷ୍ଠିତ ସଙ୍ଗୀତ ପ୍ରତିଯୋଗିତାରେ ବିଚାରକ ଭାବରେ ମଧ୍ୟ ସେ ଯୋଗଦାନ କରିଛନ୍ତି । ଓଡ଼ିଶା ମାଧ୍ୟମିକ ଶିକ୍ଷା ବୋର୍ଡର ସଙ୍ଗୀତ ବିଭାଗର ପରୀକ୍ଷକ ଏବଂ ଓଡ଼ିଶା ସଙ୍ଗୀତ ମହାବିଦ୍ୟାଳୟର ଅଧ୍ୟାପିକାଭାବେ ମଧ୍ୟ ସେ କାର୍ଯ୍ୟ କରିଛନ୍ତି ।

ସଙ୍ଗୀତ ଜଗତ ପ୍ରତି ତାଙ୍କର ଏତାଦୃଶ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀମତୀ ମହାନ୍ତିଙ୍କୁ ୧୯୮୪-୮୫ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି । ଏହି ଅଦ୍ୱିତୀୟ କଳାକାର ଆଗାମୀ କାଳର କଳାକାରମାନଙ୍କ ପାଇଁ ସର୍ବଦା ପ୍ରେରଣାର ଉତ୍ସ ହୋଇ ରହିବେ ।



## ଶ୍ରୀ ଯଦୁନାଥ ଦାଶ ମହାପାତ୍ର
### କୁଡ଼େଇ, ବାଲେଶ୍ୱର

### ଜନ୍ମ—୧୯୨୯ ମସିହା

ସ୍ୱାଧୀନ ଭାରତବର୍ଷରେ ଯେଉଁ କେତେଜଣ ନାଟ୍ୟ ରଚନାକାର ଓଡ଼ିଶାର ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ସେମାନଙ୍କ ମଧ୍ୟରେ ଶ୍ରୀ ଯଦୁନାଥ ଦାଶ ମହାପାତ୍ର ଅନ୍ୟତମ । ଶ୍ରୀ ମହାପାତ୍ର ୧୯୨୯ରେ ବାଲେଶ୍ୱର ଜିଲ୍ଲାର କୁଡ଼େଇ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ୰ ରାଜନାରାୟଣ ଦାଶ ମହାପାତ୍ର ଏବଂ ମାତାଙ୍କ ନାମ ଥିଲା ୰ ରାସମଣି ଦେବୀ । ପିଲାଟି ଦିନରୁ ପିତୃମାତୃହୀନ ଯଦୁନାଥ ତତ୍କାଳୀନ ପୁରୀ ସଂସ୍କୃତ କଲେଜର ଅଧ୍ୟକ୍ଷ ଏବଂ ତାଙ୍କ ଦଦେଇ ୰ ଶ୍ୟାମସୁନ୍ଦର ଦାଶ ମହାପାତ୍ରଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ ।

କଟକର ରେଭେନ୍‌ସା କଲେଜରୁ ସମ୍ମାନର ସହ ବି. ଏ. ପାସ୍ କରିବା ପରେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ଆଇନ୍‌ରେ ମଧ୍ୟ ଡିଗ୍ରୀ ହାସଲ କରିଥିଲେ । ଏହାପରେ ୧୯୫୨ ରେ ବାଲେଶ୍ୱରଠାରେ ଓକିଲାତି ଆରମ୍ଭ କରିଥିଲେ ଏବଂ ପରେ ପରେ ରାଜନୀତିରେ ପ୍ରବେଶ କରିଥିଲେ । ୧୯୬୧ରେ ସୋରୋ ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇ ଅର୍ଥ ଓ ସାଂସ୍କୃତିକ ବ୍ୟାପାର ଉପମନ୍ତ୍ରୀ, ୧୯୬୭ ରେ ସୋରରୁ ପୁନଃ ନିର୍ବାଚିତ ହୋଇ ଶିକ୍ଷା, ଯୁବସେବା, ସାଂସ୍କୃତିକ ବ୍ୟାପାର ଏବଂ ପର୍ଯ୍ୟଟନ ବିଭାଗ ଓ ପରେ ୧୯୬୭ ରେ ଅର୍ଥ ବିଭାଗରେ ମନ୍ତ୍ରୀ ହୋଇଥିଲେ । ୧୯୭୪-୭୫ ରେ ସେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ମଧ୍ୟ ଥିଲେ । ୧୯୭୭ ରେ ସୋରୋ ନିର୍ବାଚନ ମଣ୍ଡଳୀରୁ ପୁନଶ୍ଚ ନିର୍ବାଚିତ ହୋଇ ଶିକ୍ଷା, ଯୁବସେବା ଓ କ୍ରୀଡ଼ା ବିଭାଗର ମନ୍ତ୍ରୀ ରୂପେ ଓଡ଼ିଶାବାସୀଙ୍କର ସେବା କରିଥିଲେ । ଶ୍ରୀ ଦାଶ ମହାପାତ୍ର ୧୯୮୨ ରେ ଓଡ଼ିଶା ଅଲମ୍ପିକ୍ ଆସୋସିଏସନ୍‌ର ସଭାପତି ଓ ୧୯୯୧ରେ ଭାରତୀୟ ଅଲମ୍ପିକ୍ ଆସୋସିଏସନ୍‌ର ସହଯୋଗୀ ଉପ ସଭାପତି ନିର୍ବାଚିତ ହୋଇଥିଲେ । ରାଜନୀତି କ୍ଷେତ୍ରରେ ନିଜର ପାରଦର୍ଶିତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସାହିତ୍ୟ କ୍ଷେତ୍ରରେ ନିଜର ପାରଦର୍ଶିତା ପ୍ରଦର୍ଶନ କରି ସେ

ନିଜକୁ ଜଣେ ସଫଳ ନାଟ୍ୟକାର ଏବଂ ସାହିତ୍ୟିକ ରୂପେ ପ୍ରତିଷ୍ଠିତ କରିପାରିଛନ୍ତି । ସେ ବାଲେଶ୍ୱରର ଫକୀର ମୋହନ ସାହିତ୍ୟ ପରିଷଦର ସଭାପତି ମଧ୍ୟ ଥିଲେ । ସାହିତ୍ୟିକ ଭାବରେ ସେ କବିତା, ଗଳ୍ପ, ଉପନ୍ୟାସ, ନାଟକ, ଆଲୋଚନା, ଅନୁବାଦ ଓ ଶିଶୁ ସାହିତ୍ୟ ଇତ୍ୟାଦି ସାହିତ୍ୟର ସମସ୍ତ ବିଭାଗରେ ନିଜର ସାମର୍ଥ୍ୟ ପ୍ରଦର୍ଶନ କରିଛନ୍ତି । ତାଙ୍କର ସାହିତ୍ୟକୃତି ମଧ୍ୟରେ କବିତା ସ୍ତରରେ ସାର୍ଥକ କବିତା, 'ଯନ୍ତ୍ରଣାର ଅନ୍ୟ ନାମ' 'ମେଘବର୍ଣ୍ଣା' ଇତ୍ୟାଦି । ଗଳ୍ପସ୍ତରରେ, ସୀତାର ଅଭିଶାପ, ନିହତ ଚନ୍ଦ୍ରମା ଇତ୍ୟାଦି । ଉପନ୍ୟାସ ସ୍ତରରେ ଶାମ୍ୟ ନଦୀର ତୀରେ, ମାଟିର ମଣିଷ, ମଣିପୁରରାଜ୍ୟର ମଞ୍ଚ, ସନ୍ତାନ ସେତୁ, ରାହୁ ମୁକ୍ତି, ଏ ଦେହ ଦେବାଳୟ, କାହାଣୀ କୁବେର ପୁତ୍ରର ଇତ୍ୟାଦି । ନାଟକ ସ୍ତରରେ ନୂଆ କିଛି ନୁହେଁ, ସଂଗ୍ରାମ, ସୂର୍ଯ୍ୟମନ୍ଦିର, ଭୁଲି ହୁଏନା, କ୍ଷମା କରିବେ କି ?, ରାଜି ଗୋ ତୁମେ କଥା କୁହ, ସେତୁବନ୍ଧ, ଅଥବା ଅନ୍ଧାର, ଅଶାନ୍ତ ଦ୍ରୌପଦୀ, କଂସ, ବାନ୍ଦୀ ବେଗମ୍ ବାଦଶାହ, ଇତ୍ୟାଦିର ନାମ ପ୍ରଣିଧାନଯୋଗ୍ୟ । ଏତଦ୍‌ବ୍ୟତୀତ ଆଲୋଚନା ସ୍ତରରେ ଓଡ଼ିଆ ସାହିତ୍ୟର ତ୍ରିବେଣୀ ଯୁଗ, ଶିଶୁସାହିତ୍ୟ ମଧ୍ୟରେ ଜାତିର ବାପୁଜୀ, ଗିଲ୍‌ଏ କ୍ଷୀର, ତିନି ବୀର, ବଉଳତିଠୁଁ ସିଂହ ପ୍ରଭୃତି ପ୍ରଧାନ ।

ଶ୍ରୀ ଦାଶ ମହାପାତ୍ରଙ୍କ ଲିଖିତ ନାଟକ ସୂର୍ଯ୍ୟମନ୍ଦିର, ହିନ୍ଦୀ ଭାଷାରେ ଅନୂଦିତ ହେବା ସହ ନାଟକ 'ଭୁଲିହୁଏନା' ଚଳଚ୍ଚିତ୍ରରେ ରୂପାନ୍ତରିତ ହୋଇଛି । ଏଯାବତ୍ ତାଙ୍କର ପଞ୍ଚଷଠୀ ଖଣ୍ଡ ପୁସ୍ତକ ପ୍ରକାଶିତ । ଏତଦ୍‌ବ୍ୟତୀତ ଶ୍ରୀ ଦାଶ ମହାପାତ୍ର ଆକାଶବାଣୀର ଜଣେ ସ୍ୱୀକୃତ ଗୀତିକାର ମଧ୍ୟ ।

ବହୁମୁଖୀ ସାହିତ୍ୟ ପ୍ରତିଭାର ଅଧିକାରୀ ଶ୍ରୀ ଦାଶ ମହାପାତ୍ରଙ୍କୁ ୧୯୮୪-୮୫ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ସମ୍ମାନିତ ଏବଂ ସମ୍ମାନିତ କରାଯାଇଛି ।

●

## ଶ୍ରୀଯୁକ୍ତ ଅନନ୍ତ ଚରଣ ସାଏ
ବାବୁସାହି, ବାରିପଦା, ମୟୂରଭଞ୍ଜ

ଜନ୍ମ—୧୯୧୫ ମସିହା




ମୟୂରଭଞ୍ଜ ଶୈଳୀର ଛଉନୃତ୍ୟ ଗୁରୁମାନଙ୍କ ମଧ୍ୟରେ ଗୁରୁ ଶ୍ରୀ ଅନନ୍ତ ଚରଣ ସାଏ ଅନ୍ୟତମ । ଶ୍ରୀ ସାଏ ୧୯୧୫ ମସିହାରେ ମୟୂରଭଞ୍ଜ ଜିଲ୍ଲାର ବାରିପଦା ସହରର ବାବୁ ସାହିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ୰ ରାଧାମୋହନ ସାଏ । ବାଲ୍ୟାବସ୍ଥାରୁ ମାତ୍ର ଦଶବର୍ଷ ବୟସରୁ ସେ ମାମୁଁ ୰ଦିବାକର ଭଞ୍ଜଦେଓ ଓ ଅନ୍ୟାନ୍ୟ ନୃତ୍ୟଗୁରୁ ସ୍ୱର୍ଗୀୟ ଭବାନୀ କୁମାର ଦାସ, ଯୋଗେନ୍ଦ୍ର କୁଅଁର, ମହମ୍ମଦ ରଜା ଖାଁ ଓ ସଦନ ବରୋଇଙ୍କ ନିକଟରୁ ଛଉନୃତ୍ୟର କଳା କୌଶଳ ଶିକ୍ଷା କରିଥିଲେ । ଏହାପରେ ସେ ଏକକ ଏବଂ ମେଳ ନୃତ୍ୟରେ ଅଂଶ ଗ୍ରହଣ କରି ନିଜକୁ ଜଣେ ଉତ୍ତମ ନୃତ୍ୟ ଶିଳ୍ପୀ ଭାବେ ପ୍ରତିଷ୍ଠା କରି ପାରିଥିଲେ । ୧୯୪୪ରେ ମହାଦେବ ନୃତ୍ୟ ଶିକ୍ଷା କରିବା ସମୟରେ ଦୁର୍ଭାଗ୍ୟ ବଶତଃ ତାଙ୍କର ଡାହାଣ ଚକ୍ଷୁଟି ନଷ୍ଟ ହୋଇଯାଇଥିଲା; ମାତ୍ର ନୃତ୍ୟ ପ୍ରତି ତାଙ୍କର ଗଭୀର ଅନୁରାଗ ହେତୁ ସେ ନୃତ୍ୟ ପ୍ରତି ନିଜର ଆନୁଗତ୍ୟ ପ୍ରତ୍ୟାହାର କରି ନ ଥିଲେ । ୧୯୪୭ରେ ମୟୂରଭଞ୍ଜ ମହାରାଜା ଛଉନୃତ୍ୟର ପୃଷ୍ଠପୋଷକତା କରିବାକୁ ମନା କରିବା ପରେ ଶ୍ରୀ ସାଏ ଓ ଅନ୍ୟ ଗୁରୁମାନେ ସମସ୍ତ କଳାକାରମାନଙ୍କୁ ଏକତ୍ରିତ କରାଇ ଏକ ଭ୍ରାମ୍ୟମାଣ ଛଉନୃତ୍ୟ ଦଳ ସୃଷ୍ଟି କରି ଏହି ଲୋକନୃତ୍ୟ କଳାକୁ ବଞ୍ଚାଇ ରଖିବା ପାଇଁ ବହୁ କଷ୍ଟ ସ୍ୱୀକାର କରିଥିଲେ ।

ଗଡ଼ଜାତ ମିଶ୍ରଣ ପରେ ଏହି ନୃତ୍ୟ ' ଡଃ ମହତାବ ଏବଂ ' ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ସରକାରୀ ଅନୁଦାନ ଏବଂ ପ୍ରୋତ୍ସାହନ ଲାଭ କରିଥିଲା । ଏହା ପରେ ୧୯୪୯ରେ ଗୁରୁ ୰ ଭବାନୀ ଦାସଙ୍କ ସହ ମିଶି 'ଛଉନୃତ୍ୟ ପ୍ରତିଷ୍ଠାନ ' ପ୍ରତିଷ୍ଠା କରାଇବାରେ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । କଟକରେ

ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ଉଦ୍‌ଘାଟନୀ ଉତ୍ସବରେ ଶ୍ରୀ ସାଏ ଓ ତାଙ୍କ ଦଳ ଛଉ ନୃତ୍ୟ ପ୍ରଦର୍ଶନ କରି ବହୁ ପ୍ରଶଂଶା ଲାଭ କରିଥିଲେ । ୧୯୫୬ ମସିହା ଜାନୁଆରୀ ୨୬ ରେ ଦିଲ୍ଲୀଠାରେ ଏହି ପ୍ରତିଷ୍ଠାନ ତରଫରୁ ଛଉନୃତ୍ୟ ପ୍ରଥମଥର ପାଇଁ ଓଡ଼ିଶା ବାହାରେ ପ୍ରଦର୍ଶନ କରାଯାଇଥିଲା । ପରେ ବହୁବାର ସେ ଦିଲ୍ଲୀଠାରେ ଏହି ଲୋକନୃତ୍ୟକୁ ପ୍ରଦର୍ଶନ କରି ଦର୍ଶକମାନଙ୍କର ଅକୁଣ୍ଠ ପ୍ରଶଂସା ଲାଭ କରିଥିଲେ । ୧୯୬୦ରେ ଏହି ଛଉନୃତ୍ୟ ପ୍ରତିଷ୍ଠାନ ସରକାରୀ ନିୟନ୍ତ୍ରଣକୁ ଗଲା ପରେ ଶ୍ରୀ ସାଏ ତହିଁରେ ନୃତ୍ୟଗୁରୁ ଭାବରେ କାର୍ଯ୍ୟକରି ଆସିଛନ୍ତି ।

ଏହି ଲୋକନୃତ୍ୟକଳାର ବିକାଶ ଦିଗରେ ତାଙ୍କର ଅବଦାନ ନିମନ୍ତେ ସେ ବହୁ ଅନୁଷ୍ଠାନ ତଥା ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ଦ୍ୱାରା ସମ୍ମାନିତ ହୋଇଅଛନ୍ତି । ତନ୍ମଧ୍ୟରେ ୧୯୬୨ ସାଲରେ ଦିଲ୍ଲୀଠାରେ ଛଉନୃତ୍ୟ ପ୍ରଦର୍ଶନ ପାଇଁ ରାଷ୍ଟ୍ରପତିଙ୍କ ନିକଟରୁ ପୁରସ୍କାର, ଉତ୍କଳ ପାଠକ ସଂସଦ ପୁରସ୍କାର, ମୟୂରଭଞ୍ଜ ନାଟ୍ୟ ସଂସଦ (ଆଇନ କଲେଜ) ନିକଟରୁ ମାନପତ୍ର ଏବଂ ପୁରସ୍କାର, ୧୯୭୧ରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଏବଂ ୧୯୮୪-୮୫ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ସମ୍ବର୍ଦ୍ଧନା ଏବଂ ପୁରସ୍କାର ଉଲ୍ଲେଖଯୋଗ୍ୟ ।

୧୯୮୦ରେ ବାରିପଦାଠାରେ ଓଡ଼ିଶା ଛଉନୃତ୍ୟ ତାଲିମ କେନ୍ଦ୍ର ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଖୋଲାଯିବା ପରେ ତହିଁରେ ନୃତ୍ୟ ଶିକ୍ଷକ ଭାବରେ ଶ୍ରୀ ସାଏଙ୍କୁ ନିଯୁକ୍ତ ମିଳିଲା ଏବଂ ଅଦ୍ୟାବଧି ସେ ଏହି ପ୍ରତିଷ୍ଠାନରେ ନୃତ୍ୟଗୁରୁ ଭାବରେ କାର୍ଯ୍ୟରତ ।

ଓଡ଼ିଶାର ପ୍ରାଚୀନ ଲୋକନୃତ୍ୟର ପୁନରୁଦ୍ଧାର କାର୍ଯ୍ୟ ନିମନ୍ତେ ସମର୍ପିତ ପ୍ରାଣ, ଏହି ମହାନ ସାଧକ ଏ ଓଡ଼ିଶାବାସୀଙ୍କର ନମସ୍ୟ ।

●

## ଶ୍ରୀ କାଶୀନାଥ ପଣ୍ଡା

ଲଠି, ଗଞ୍ଜାମ

ଜନ୍ମ ୧୯୨୯ ମସିହା



ଓଡ଼ିଶାର ଅନ୍ୟତମ ଲୋକନୃତ୍ୟ ଦାସକାଠିଆ କଳାର ଜଣେ ଖ୍ୟାତନାମା କଳାକାର ଶ୍ରୀ କାଶୀନାଥ ପଣ୍ଡା ୧୯୨୯ରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସହର ନିକଟବର୍ତ୍ତୀ ଲଠି ଗ୍ରାମରେ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ସ୍ୱର୍ଗତ କୃପାସିନ୍ଧୁ ପଣ୍ଡା ନିଜେ ଜଣେ ଦାସକାଠିଆ ଗାୟକ ଥିଲେ । ପିଲାଟି ଦିନରୁ ତାଙ୍କର ସହଜାତ ପ୍ରବୃତ୍ତି ତାଙ୍କୁ ଏହି କଳା ପ୍ରତି ଆକର୍ଷଣ କରିଥିଲେ ମଧ୍ୟ ସେ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିବା ପରେ ନିଜ ପିତାଙ୍କ ଦୃଷ୍ଟି ଶକ୍ତି ଖରାପ ହେବା କାରଣରୁ ଆଉ ଅଧିକ ପଢ଼ି ନପାରି ପ୍ରଥମେ ନିଜ ପିତାଙ୍କ ନିକଟରୁ ଏହି ଦାସକାଠିଆ ଶିକ୍ଷା କରିଥିଲେ । ପ୍ରଥମେ ସେ ନିଜ ଗ୍ରାମର ରାଧା ପ୍ରେମଲୀଳା ନାଟକରେ ଯୋଗଦେଇ ସେଠାରେ ତାଳ ଜ୍ଞାନ, ନାଦ ଜ୍ଞାନ, ଅଭିନୟ, ମୁଦ୍ରା ଇତ୍ୟାଦିରେ ଜ୍ଞାନ ଆହରଣ କରିବା ସଙ୍ଗେ ସଙ୍ଗେ ହାରମୋନିୟମ୍ ବଜାଇବା ମଧ୍ୟ ଶିଖି ଗଲେ । ମାତ୍ର ଦାସକାଠିଆ ଶିକ୍ଷା ପ୍ରତି ଅଧିକ ଆଗ୍ରହ କାରଣରୁ ସେ ସେତେବେଳର ଗାୟକରତ୍ନ ଶ୍ରୀ କୃଷ୍ଣଚନ୍ଦ୍ର ଶର୍ମା ଓ ଅର୍ଜୁନ ପଣ୍ଡାଙ୍କ ନିକଟରୁ ଏହି କଳାବିଦ୍ୟା ଶିକ୍ଷା କରି ତହିଁରେ ବ୍ୟୁତ୍ପତ୍ତି ହାସଲ କଲେ ।

ପ୍ରଥମେ ନିଜ ଗାମରେ ସେ କଳା ପ୍ରଦର୍ଶନ କରି ବହୁ ପ୍ରଶଂସା ଲାଭ କରିଥିଲେ ଏବଂ ପରବର୍ତ୍ତୀ ସମୟରେ ବ୍ରହ୍ମପୁର ସଂସ୍କୃତ ମହାବିଦ୍ୟାଳୟରୁ 'ଗାୟକ ସୁଧାକର' ଉପାଧି ପ୍ରାପ୍ତ ହୋଇଥିଲେ । ଏହାପରେ ରାଜା ଶ୍ରୀ ଉଦୟ ପ୍ରତାପ ସିଂହଙ୍କ ନିକଟରୁ ପ୍ରେରଣା ଲାଭ କରି ଏହି ଲୋକକଳାକୁ ନୂତନ ରୂପ ଦେବା ନିମନ୍ତେ ପ୍ରୟାସୀ ହେଲେ । ଏହି ସମୟରେ ସେ ସ୍ୱ ରଚିତ କବିତାମାନଙ୍କର ନୂତନ ଆଧୁନିକ ସ୍ୱର ବିନ୍ୟାସ କରି ସେ ସବୁକୁ ନିଜ ଗାୟନ ସହ ସାମିଲ କରି ଏହି ଲୋକକଳାକୁ ଏକ ନୂତନ ଢଙ୍ଗରେ ପରିବେଷଣ କରି ବହୁ ପ୍ରଶଂସା ଲାଭ କଲେ । ସାହିତ୍ୟରେ ନିଜର ଜ୍ଞାନ ବୃଦ୍ଧି ପାଇଁ ସେ ଓଡ଼ିଶାର ପ୍ରତିଷ୍ଠିତ ସଙ୍ଗୀତଜ୍ଞ ଏବଂ ସାହିତ୍ୟିକମାନଙ୍କ ନିକଟରୁ ଛାନ୍ଦ, ଚମ୍ପୂ ଇତ୍ୟାଦିର

ଗାୟନ ଏବଂ ସଠିକ୍ ବ୍ୟାଖ୍ୟା କରିବା ଶିକ୍ଷା କରି ନିଜର କଳାକୁ ସ୍ୱୟଂ ସମ୍ପୂର୍ଣ୍ଣ କରି ପାରିଥିଲେ ।

୧୯୫୪ ମସିହାରେ ଭୁବନେଶ୍ୱରଠାରେ ରାଜ୍ୟସ୍ତରୀୟ ପାଲା ଏବଂ ଦାସକାଠିଆ ପ୍ରତିଯୋଗିତାରେ ଯୋଗଦେଇ ସେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ପରେ ତତ୍କାଳୀନ ମନ୍ତ୍ରୀ ୰ ଲିଙ୍ଗରାଜ ପାଣିଗ୍ରାହିଙ୍କ ପ୍ରୋତ୍ସାହନ ଫଳରେ ଆକାଶବାଣୀ କଟକ କେନ୍ଦ୍ରରେ ନିଜର କଳା ପ୍ରଦର୍ଶନ କରି ୧୯୫୭ରେ ତହିଁରେ ସ୍ୱୀକୃତ କଳାକାରର ମର୍ଯ୍ୟାଦା ହାସଲ କରିବାରେ କୃତକାର୍ଯ୍ୟ ହୋଇ ଅଦ୍ୟାବଧି ତହିଁରେ କାର୍ଯ୍ୟରତ । ଏତଦ୍‌ବ୍ୟତୀତ ଶ୍ରୀ ପଣ୍ଡା ଆକାଶବାଣୀ ଜରିଆରେ ସରକାରଙ୍କର ବିଭିନ୍ନ କାର୍ଯ୍ୟକ୍ରମକୁ ନିଜ କଳା ମାଧ୍ୟମରେ ସାରାଦେଶରେ ପ୍ରଚାର କରି ଆସୁଛନ୍ତି । ନିଜର ଶିଷ୍ୟମାନଙ୍କ ପ୍ରତି ଶ୍ରୀ ପଣ୍ଡା ଅତ୍ୟନ୍ତ ସହୃଦୟତା ପ୍ରକାଶ କରି ସେମାନଙ୍କର ଯାହା ଯେତେବେଳେ ଦରକାର ସେ ସବୁ ଲେଖା ଯୋଗାଇ ସେମାନଙ୍କର ଅକୁଣ୍ଠ ଶ୍ରଦ୍ଧାଭକ୍ତି ଲାଭ କରୁଅଛନ୍ତି । ତାଙ୍କର ଏତାଦୃଶ କର୍ମ-କୁଶଳତା ଏବଂ ଏହି ଲୋକ କଳା ପ୍ରତି ଅବଦାନ ହେତୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ପଣ୍ଡାଙ୍କୁ ୧୯୮୪-୮୫ ବର୍ଷରେ ସମ୍ବର୍ଦ୍ଧିତ କରିଅଛନ୍ତି ।

ଅଧୁନା ଶ୍ରୀ ପଣ୍ଡା ନିଜ ଗ୍ରାମରେ ଏକ ଦାସକାଠିଆ ଶିକ୍ଷା କେନ୍ଦ୍ର ସ୍ଥାପନ କରି ନୂତନ କଳାକାରମାନଙ୍କୁ ଏହି ଲୋକକଳା ଶିକ୍ଷା ଦେବା ସହ ନିଜର ଏକକ ପ୍ରଚେଷ୍ଟାରେ ଏକ 'ଦାସକାଠିଆ ନୃତ୍ୟ ଗୀତ ଗ୍ରନ୍ଥାବଳୀ' ସଂକଳନରେ ବ୍ରତୀ ହୋଇଅଛନ୍ତି ।

●



# ଶ୍ରୀମତୀ ରାଧାରାଣୀ ମହାପାତ୍ର

## କଟକ ସହର

**ଜନ୍ମ—୧୯୩୪, ଏପ୍ରିଲ୍ ୭**

ପାରଂପରିକ ଓଡ଼ିଶୀ ସଙ୍ଗୀତର ଅନ୍ୟତମ ସୁଗାୟିକା ଶ୍ରୀମତୀ ରାଧାରାଣୀ ମହାପାତ୍ର ୧୯୩୪ ମସିହା ଏପ୍ରିଲ୍ ମାସ ୭ ତାରିଖରେ କଟକ ସହରସ୍ଥ ବଡ଼େଇସାହିରେ ଏକ ବିଶ୍ୱକର୍ମା ପରିବାରରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନରୁ ତାଙ୍କର ସଙ୍ଗୀତ ଶିକ୍ଷା ପ୍ରତି ଆଗ୍ରହ ଦେଖି ତାଙ୍କ ପିତା ତାଙ୍କୁ ଓଡ଼ିଶୀ ସଙ୍ଗୀତ ଶିକ୍ଷାଦେବା ନିମନ୍ତେ କଟକର ଲକ୍ଷ୍ମୀକାନ୍ତ ସଙ୍ଗୀତ ବିଦ୍ୟାଳୟରେ ଭର୍ତ୍ତି କରାଇଥିଲେ । ଏହି ସଙ୍ଗୀତ ବିଦ୍ୟାଳୟରେ ମାତ୍ର ୯ ବର୍ଷ ବୟସରୁ ସେ ଗାୟକ ଶିରୋମଣି ୰ ସିଂହାରି ଶ୍ୟାମସୁନ୍ଦର କର ଏବଂ ଶ୍ରୀ ବାଳକୃଷ୍ଣ ଦାଶଙ୍କ ନିକଟରୁ ଓଡ଼ିଶୀ, ଛାନ୍ଦ, ଜଣାଣ ଏବଂ ପଲ୍ଲୀଗୀତ ଶିକ୍ଷା କରିବା ସହ ୰ ଧୀରେନ୍ ଦାଶ ଏବଂ ୰ କ୍ଷିତୀଶ ମୈତ୍ରଙ୍କ ନିକଟରୁ ହିନ୍ଦୁସ୍ତାନୀ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିଥିଲେ । ପରବର୍ତ୍ତୀ କାଳରେ ଶ୍ରୀମତୀ ମହାପାତ୍ର ବହୁ ଶାସ୍ତ୍ରୀୟ ସଙ୍ଗୀତ ସମ୍ମିଳନୀ ଏବଂ ପ୍ରତି-ଯୋଗିତାରେ ଅଂଶଗ୍ରହଣ କରି ଶ୍ରେଷ୍ଠ ଓଡ଼ିଶୀ ସଙ୍ଗୀତ ଗାୟିକାଭାବରେ ସ୍ୱର୍ଣ୍ଣପଦକ ଏବଂ ଅନ୍ୟାନ୍ୟ ପୁରସ୍କାର ଲାଭ କରିଥିଲେ । ପରିଷ୍କାର କଣ୍ଠରେ ଓଡ଼ିଶୀ ଏବଂ ପଲ୍ଲୀଗୀତ ସବୁ ଶୁଦ୍ଧଭାବେ ଗାୟନ କରିବା ତାଙ୍କ ଗାୟନର ବିଶେଷତ୍ୱ ଥିଲା । କଲମ୍ବିଆ ରେକର୍ଡ଼ କମ୍ପାନୀ ଦ୍ୱାରା ତାଙ୍କର ବହୁ ସଙ୍ଗୀତର ରେକର୍ଡ଼ ପ୍ରସ୍ତୁତ ହୋଇଥିଲା ।

ଶ୍ରୀମତୀ ମହାପାତ୍ର ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତିପ୍ରାପ୍ତ କଳାକାର ଏବଂ ଦୀର୍ଘ ସମୟ ଧରି ଏହି ଆକାଶବାଣୀ ଜରିଆରେ ତାଙ୍କର ସଙ୍ଗୀତ ପ୍ରସାରିତ ହୋଇ ଆସୁଛି । ଓଡ଼ିଶାର ସଙ୍ଗୀତ ଜଗତରେ ତାଙ୍କର ବିଶେଷ କୃତିତ୍ୱ ନିମନ୍ତେ ସେ ରାଜ୍ୟର ବହୁ ସାଂସ୍କୃତିକ ସମ୍ମାନ ସହ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ୧୯୮୫-୮୬ ବର୍ଷ ନିମନ୍ତେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ ହୋଇଅଛନ୍ତି ।

## ଶ୍ରୀମତୀ ମଣିମାଳା ଦେବୀ

ବାଲଢଣି, କଟକ

ଜନ୍ମ—୧୯୩୦, ଜୁନ୍ ୧୧



ଓଡ଼ିଶାର ରଙ୍ଗମଞ୍ଚ ଏବଂ ଚଳଚ୍ଚିତ୍ର ଜଗତର ଅନ୍ୟତମ ସଫଳ ଓ ଖ୍ୟାତନାମା ଅଭିନେତ୍ରୀ ଶ୍ରୀମତୀ ମଣିମାଳା ଦେବୀ ୧୯୩୦ ମସିହା ଜୁନ୍ ମାସ ୧୧ ତାରିଖରେ କଟକ ଜିଲ୍ଲାର କେନ୍ଦ୍ରାପଡ଼ା ଥାନା ଅନ୍ତର୍ଗତ ବାଲଢଣି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କୁ ମାତ୍ର ତିନିବର୍ଷ ବୟସ ବେଳେ ତାଙ୍କ ପିତା ୰ ନାରାୟଣମୋହନ ଗଉଡ଼ତରାୟଙ୍କର ଦେହାନ୍ତ ଘଟିବାରୁ ତାଙ୍କ ମାଆ ତାଙ୍କୁ ପୁରୀକୁ ନେଇ ସେଠାରେ ଦୀର୍ଘ ଆଠବର୍ଷ କାଳ ବହୁ କଷ୍ଟରେ ତାଙ୍କର ଲାଳନ ପାଳନ କରିଥିଲେ । ମାତ୍ର ସେ କଠିନ ରୋଗାକ୍ରାନ୍ତ ହୋଇପଡ଼ିବା ଫଳରେ ଶ୍ରୀମତୀ ମଣିମାଳା ନିଜର ଭରଣ ପୋଷଣର ଅନ୍ୟ ଉପାୟ ନପାଇ ୧୯୪୬ରେ ଅନ୍ନପୂର୍ଣ୍ଣା ଏ'ଗ୍ରୁପ୍‌ର ମ୍ୟାନେଜର ୰ ବାଉରିବନ୍ଧୁ ମହାନ୍ତିଙ୍କ ପ୍ରରୋଚନାରେ ଏହି ଥିଏଟର୍ ଦଳରେ ଯୋଗଦାନ କରି ନିଜର ଦୀର୍ଘ ଅଭିନୟ ଜୀବନର ଶୁଭାରମ୍ଭ କରିଥିଲେ । ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍‌ରେ ତିନି ବର୍ଷ କାର୍ଯ୍ୟ କରିବା ପରେ ୧୯୪୯ରେ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍ ନାଟ୍ୟଦଳ ଆରମ୍ଭ ହେବାରେ ତହିଁର ତତ୍କାଳୀନ ତତ୍ତ୍ୱାବଧାରକ ଶ୍ରୀ ଲିଙ୍ଗରାଜ ନନ୍ଦ ମଣିମାଳାଙ୍କୁ ନାୟିକା ଭାବରେ ସେହି ଦଳକୁ ନେଇ ଯାଇଥିଲେ । ସେ ୰ ରାମଚନ୍ଦ୍ର ମାଣିଆ, କାର୍ତ୍ତିକ କୁମାର ଘୋଷ, କାଶୀନାଥ ସାହୁ ଓ ଲକ୍ଷ୍ମୀନାରାୟଣ ପାତ୍ରଙ୍କଠାରୁ ଅଭିନୟ ଓ ନୃତ୍ୟ ଶିକ୍ଷା କରିଥିଲେ । ଅନ୍ନପୂର୍ଣ୍ଣା ବି' ଗ୍ରୁପ୍‌ରେ ଥିବା ସମୟରେ ଶ୍ରୀ ସାମୁଏଲ ସାହୁ ଏବଂ ଶ୍ରୀ ପ୍ରିୟନାଥ ମିଶ୍ରଙ୍କ ନିକଟରୁ ମଧ୍ୟ ଅଭିନୟ ଶିକ୍ଷା କରିଥିଲେ । ପରବର୍ତ୍ତୀ ଜୀବନରେ ଶ୍ରୀମତୀ ମଣିମାଳା, ୰ କାଳୀଚରଣ ପଟ୍ଟନାୟକ, ଶ୍ରୀ ଧୀରେନ୍ ଦାଶ, ଶ୍ରୀ ବାଳକୃଷ୍ଣ ଦାଶ ଓ କିଶୋରକବି ଶ୍ୟାମସୁନ୍ଦର ଦାଶଙ୍କ ନିକଟରୁ ସଙ୍ଗୀତ ଶିକ୍ଷା କରିବା ସହ ଗୁରୁ ଶ୍ରୀ କେଳୁଚରଣ ମହାପାତ୍ର ଏବଂ ଗୁରୁ ଦୟାଲ୍ ଶର୍ମାଙ୍କ ନିକଟରୁ ଯଥାକ୍ରମେ ଓଡ଼ିଶୀ ଓ କଥକ ନୃତ୍ୟ ଶିକ୍ଷା କରିଥିଲେ । ୧୯୪୯ ମସିହାଠାରୁ ସେ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍ ରଙ୍ଗମଞ୍ଚ ଏବଂ ତ୍ରିଶବର୍ଷ ପାଇଁ ଜନତା ରଙ୍ଗମଞ୍ଚରେ ପ୍ରଧାନ ନାୟିକା ଭାବରେ କାର୍ଯ୍ୟକରି

ବହୁ ନାଟକରେ ନିଜର ସଫଳ ଅଭିନୟ ମାଧ୍ୟମରେ ଓଡ଼ିଶାର କଳାପ୍ରେମୀ ଦର୍ଶକମାନଙ୍କ ମନର ରାଣୀ ଭାବେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ବିଭାଗ ଜରିଆରେ ସେ ୰ ପଣ୍ଡିତ ନେହେରୁଙ୍କ ଓଡ଼ିଶା ଆଗମନ ସମୟରେ ରାଜଭବନ-ଠାରେ କଥକ ନୃତ୍ୟ ପରିବେଷଣ କରି ପ୍ରଶଂସିତା ହୋଇଥିଲେ ।

ଅଭିନୟ ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ ସେ ଓଡ଼ିଆ ଚଳଚ୍ଚିତ୍ର ମଧ୍ୟକୁ ପ୍ରବେଶ କରି ୧୯୬୦ରେ ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀ ଲୋକନାଥ'ରେ ଅଭିନୟପଟୁତା ନିମନ୍ତେ ରାଷ୍ଟ୍ରପତିଙ୍କ ନିକଟରୁ ଶ୍ରେଷ୍ଠ ଅଭିନେତ୍ରୀର ସମ୍ମାନ ଲାଭ କରିଥିଲେ । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ବହୁ ଚଳଚ୍ଚିତ୍ର ଯଥା—ଲକ୍ଷ୍ମୀ, ମଲାଜହ୍ନ, ଅଭିନେତ୍ରୀ, କା', ଭାଇଭାଉଜ, ମେଘମୁକ୍ତି, ଜୀବନସାଥୀ, ମାଷ୍ଟ୍ରମିଶଣ, ପରଝିଅ ଘର ଭାଙ୍ଗେନା, ଅନ୍ଧ ଦିଗନ୍ତ, ନୀରବ ଝଡ଼ ଇତ୍ୟାଦି ପ୍ରାୟ କୋଡ଼ିଏଗୋଟି ଚଳଚ୍ଚିତ୍ରରେ ଅଭିନୟ କରି ନିଜର କଳା ପାଟବତା ପ୍ରଦର୍ଶନ କରିଅଛନ୍ତି ।

କଳାକାର ଜୀବନର ଉତ୍କର୍ଷ ପ୍ରତିପାଦନ କରି ସେ ବିଭିନ୍ନ ସମୟରେ ବହୁ ସାଂସ୍କୃତିକ ଅନୁଷ୍ଠାନ ତରଫରୁ ସମ୍ମାନିତା । ଶ୍ରେଷ୍ଠ ମଞ୍ଚଅଭିନେତ୍ରୀ ଭାବେ ପ୍ରଜାତନ୍ତ୍ର ପ୍ରଚାର ସମିତି ପୁରସ୍କାର, ଏକାମ୍ର ଥିଏଟର କର୍ତ୍ତୃକ ପ୍ରଦତ୍ତ ସମ୍ମାନପ୍ରାପ୍ତ ହୋଇଥିବା ବେଳେ, ୧୯୮୬ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଶ୍ରେଷ୍ଠ ଅଭିନେତ୍ରୀ ଭାବରେ ସମ୍ବର୍ଦ୍ଧନା ଏବଂ ପୁରସ୍କାର ଲାଭ କରିଥିଲେ । ୧୯୮୮ରେ ଉତ୍କଳ ପାଠକ ସଂସଦ ପୁରସ୍କାର ଏବଂ ଆହୁରି ଅନେକ ପୁରସ୍କାର ସେ ତାଙ୍କ ଜୀବନରେ ଲାଭ କରିଅଛନ୍ତି ।

ନିଜସ୍ୱ ପ୍ରତିଭାରେ ଉଦ୍ଭାସିତା ଏହି ସଫଳ ଅଭିନେତ୍ରୀ ଆଗାମୀ ଯୁଗର ଅଭିନେତ୍ରୀ-ମାନଙ୍କ ନିମନ୍ତେ ପ୍ରେରଣାର ଉତ୍ସ ହୋଇ ରହିଥିବେ ।

●

## ଶ୍ରୀ ଅରୁଣ କୁମାର ସେଠ୍
**କୁଞ୍ଜେଲପଡ଼ା, ସମ୍ବଲପୁର**

**ଜନ୍ମ—୧୯୨୯, ନଭେମ୍ବର ୩**



ଓଡ଼ିଶାର ଯନ୍ତ୍ରସଂଗୀତ ଶିଳ୍ପୀମାନଙ୍କ ମଧ୍ୟରେ ପଶ୍ଚିମ ଓଡ଼ିଶାର ସମ୍ବଲପୁର ସହରର କୁଞ୍ଜେଲ୍‌ପଡ଼ା ଠାରେ ୧୯୨୯ ମସିହା ନଭେମ୍ବର ମାସ ୩ ତାରିଖରେ ଜନ୍ମଗ୍ରହଣ କରିଥିବା ଶ୍ରୀ ଅରୁଣ କୁମାର ସେଠ୍ ଜଣେ କୃତବିଦ୍ୟ ସୀତାର ଶିଳ୍ପୀ ଭାବରେ ବିଶେଷ ପରିଚିତ । ପ୍ରାରମ୍ଭିକ ଜୀବନରେ ନିଜକୁ ସେ ଜଣେ ବିଶିଷ୍ଟ ଫୁଟ୍‌ବଲ୍ ଖେଳାଳୀ-ଭାବରେ ପ୍ରତିଷ୍ଠିତ କରାଇ ରାଜ୍ୟ ଏକାଦଶରେ ସ୍ଥାନ ପାଇଥିବା ବେଳେ କଳାର ଆକର୍ଷଣରୁ ନିଜକୁ ଦୂରେଇ ନେଇ ପାରିନଥିଲେ । ଶାସ୍ତ୍ରୀୟ ସଂଗୀତ ଶିକ୍ଷା ପ୍ରତି ଦୁର୍ବାର ଆକର୍ଷଣ ହେତୁ ସେ ପ୍ରଥମେ ଶ୍ରୀ ରାସବିହାରୀ ମିଶ୍ର ଏବଂ ପରେ କଲିକତାର ଶ୍ରୀ ସତ୍ୟେନ୍ ଚକ୍ରବର୍ତ୍ତୀଙ୍କ ନିକଟରୁ ତାର ସାହ୍ନାଇ ବାଦନର ଶାସ୍ତ୍ରୀୟ ପଦ୍ଧତି ଶିକ୍ଷା କରିବା ପରେ ସୀତାରକୁ ନିଜ କଳା ପ୍ରଦର୍ଶନର ମାଧ୍ୟମ ଭାବରେ ଗ୍ରହଣ କରିନେଇଥିଲେ ।

ଶ୍ରୀ ସେଠ୍ ନିଜେ ଜଣେ ଉଚ୍ଚକୋଟୀର ଶାସ୍ତ୍ରୀୟ ଯନ୍ତ୍ର ସଂଗୀତ ଶିଳ୍ପୀ ହୋଇ ମଧ୍ୟ ସମ୍ବଲପୁରୀ ଗୀତ ଏବଂ ନୃତ୍ୟରେ ସ୍ୱର ସଂଯୋଜନା କରିବାରେ ବିଶେଷ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି । ଓଡ଼ିଶାର ବିଭିନ୍ନ ଚଳଚ୍ଚିତ୍ରରେ ଜଣେ ସଂଗୀତ ନିର୍ଦ୍ଦେଶକ ଭାବରେ କାର୍ଯ୍ୟକରି ଶ୍ରୀ ସେଠ୍ ନିଜକୁ ଜଣେ ଉଚ୍ଚକୋଟୀର ସଂଗୀତ ନିର୍ଦ୍ଦେଶକ ଭାବରେ ମଧ୍ୟ ପ୍ରତିଷ୍ଠିତ କରିବାରେ ସକ୍ଷମ ହୋଇଅଛନ୍ତି ।

ବହୁମୁଖୀ ପ୍ରତିଭାସମ୍ପନ୍ନ ଏହି କଳାକାର ଆକାଶବାଣୀ ଏବଂ ଦୂରଦର୍ଶନର ସ୍ୱତନ୍ତ୍ରଶ୍ରେଣୀର କଳାକାର ଭାବେ ସ୍ୱୀକୃତ । ଜଣେ ବିଶିଷ୍ଟ ସ୍ୱର ରଚନାକାରୀ ଭାବେ ସେ ମଧ୍ୟ ପରିଚିତ ।

ଭାରତ ସରକାରଙ୍କ ଅନୁମୋଦନ କ୍ରମେ ଶ୍ରୀ ସେଠ୍ ରୁଷିଆ ଯାଇଁ ମସ୍କୋରେ ନିଜର କଳା ପ୍ରଦର୍ଶନ କରି ବିଶେଷ ପ୍ରଶଂସିତ । ଦେଶ ମଧ୍ୟରେ ସେ ଆଣ୍ଡାମାନ ନିକୋବର ଠାରେ ନିଜ କଳା ପ୍ରଦର୍ଶନ କରିବାର ସୁଯୋଗ ମଧ୍ୟ ଲାଭ କରିଛନ୍ତି ।

ସଙ୍ଗୀତ କଳା ପ୍ରତି ତାଙ୍କର ନିଷ୍ଠା ଓ ଅବଦାନ ନିମନ୍ତେ ୧୯୮୫-୮୬ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ତରଫରୁ ଶିଳ୍ପୀଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରାଯାଇଛି । ଏତଦ୍‌ବ୍ୟତୀତ ଶ୍ରୀ ସେଠ୍ ଅନ୍ୟାନ୍ୟ ବହୁ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ସମ୍ମାନ ଲାଭ କରିଅଛନ୍ତି । ସମ୍ପ୍ରତି ସେ ସମ୍ବଲପୁରଠାରେ ଅବସ୍ଥାନ କରି ଆଗାମୀଯୁଗର କଳାକାରମାନଙ୍କୁ ସିତାର ଏବଂ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା ଦେଉଅଛନ୍ତି । ଓଡ଼ିଶାର ସଙ୍ଗୀତକଳା ପ୍ରତି ତାଙ୍କର ଏତାଦୃଶ ଅବଦାନ ନିମନ୍ତେ ସେ ଓଡ଼ିଶାବାସୀଙ୍କ ମନ ମଧ୍ୟରେ ସବୁଦିନେ ବଞ୍ଚି ରହିଥିବେ ।



## ଶ୍ରୀ ରମଣୀରଞ୍ଜନ ଜେନା

ରେମୁଣା, ବାଲେଶ୍ୱର

ଜନ୍ମ—୧୯୪୧, ଜୁଲାଇ ୧୮

ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ଓଡ଼ିଶାର ଧ୍ରୁବ ନୃତ୍ୟଗୁରୁମାନଙ୍କ ମଧ୍ୟରେ ଗୁରୁ ରମଣୀରଞ୍ଜନ ଜେନା ବାଲେଶ୍ୱର ଜିଲ୍ଲାର ରେମୁଣାଠାରେ ୧୯୪୧ ମସିହା ଜୁଲାଇ ମାସ ୧୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟାବସ୍ଥାରୁ ନୃତ୍ୟ ସଙ୍ଗୀତ ପ୍ରତି ବିଶେଷ ଆକୃଷ୍ଟ ହୋଇ ସେ ନିଜର ପ୍ରାରମ୍ଭିକ ନୃତ୍ୟ ଶିକ୍ଷା ନିଜ ଗ୍ରାମର ଶିକ୍ଷକମାନଙ୍କ ନିକଟରେ ଆରମ୍ଭ କରିଥିଲେ । ଏହାପରେ ସେ ରଙ୍ଗମଞ୍ଚ ଏବଂ ପେଶାଦାର ଅପେରା ଦଳରେ ଯୋଗ ଦେଇ କିଛି ସମୟ କାର୍ଯ୍ୟ କରିବାପରେ ୧୯୬୫ରେ କଟକର କଳାବିକାଶ କେନ୍ଦ୍ରରେ ଯୋଗଦାନ କରି, ଗୁରୁ ଶ୍ରୀ କେଳୁ ଚରଣ ମହାପାତ୍ର, ଗୁରୁ ଶ୍ରୀ ମାୟାଧର ରାଉତ ଏବଂ ଗୁରୁ ଶ୍ରୀ ରଘୁନାଥ ଦତ୍ତଙ୍କ ତତ୍ତ୍ୱାବଧାନରେ ଶାସ୍ତ୍ରୀୟ ଭାବରେ ବିଧିବଦ୍ଧ ଓଡ଼ିଶୀ ନୃତ୍ୟ ଶିକ୍ଷା ଆରମ୍ଭ କରି ୧୯୬୬ରେ 'ନୃତ୍ୟ ପ୍ରବୀଣ' ଉପାଧି ହାସଲ କରନ୍ତି ।

ଶିକ୍ଷା ସମାପ୍ତି ପରେ ଶ୍ରୀ ଜେନା କଟକର କଳା ବିକାଶ କେନ୍ଦ୍ରରେ ଦୀର୍ଘ ଛଅବର୍ଷ ଶିକ୍ଷାଦାନ କରିବାପରେ ୧୯୬୭ରୁ ୧୯୮୦ ପର୍ଯ୍ୟନ୍ତ ବମ୍ବେର 'କଳାନିଧି' ଏବଂ ମାନ୍ଦ୍ରାଜର 'କଳାକ୍ଷେତ୍ର'ରେ ନୃତ୍ୟଗୁରୁ ଭାବରେ କାର୍ଯ୍ୟ କରି ବହୁ ଶିଳ୍ପୀଙ୍କୁ ଓଡ଼ିଶୀ ନୃତ୍ୟ ଶିକ୍ଷା ଦେଇ ପ୍ରଶଂସା ଅର୍ଜନ କରିଛନ୍ତି । ତାଙ୍କର ବିଶିଷ୍ଟ ଶିଷ୍ୟ ଶିଷ୍ୟାଙ୍କ ମଧ୍ୟରେ ମାଳବିକା ସାରୁକାଇ, ଆଲାରମ ଭଲ୍ଲି ଏବଂ ରାଣୀ ସୁନନ୍ଦା ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଜଣେ ନୃତ୍ୟ ଶିଳ୍ପୀ ଭାବରେ ଶ୍ରୀ ଜେନା ଫ୍ରାନସ୍, ଇଟାଲି, ଗ୍ରୀସ୍ ଓ ସୁଇଜର୍-ଲାଣ୍ଡ ଇତ୍ୟାଦି ଭ୍ରମଣ କରି ସବୁ ଦେଶରେ ନିଜର ନୃତ୍ୟ ପ୍ରଦର୍ଶନ କରି ଓଡ଼ିଶୀ ନୃତ୍ୟ ପ୍ରତି ବିଦେଶୀମାନଙ୍କର ଆଗ୍ରହ ବଢ଼ାଇ ପାରିବାରେ ସଫଳ ହୋଇଥିଲେ । ଜଣେ

ସୁଦକ୍ଷ ନୃତ୍ୟ ଶିଳ୍ପୀ ଏବଂ ନୃତ୍ୟ ଗୁରୁ ଭାବରେ ଭୁବନେଶ୍ୱରଠାରେ ଓଡ଼ିଶୀ ଗବେଷଣା କେନ୍ଦ୍ରରେ କାର୍ଯ୍ୟ କରିବା ସହ ନିଜ ଗୃହ କଟକ ସହରରେ 'କମଳା କଳା ପୀଠ' ନାମରେ ଏକ ଓଡ଼ିଶୀ ନୃତ୍ୟ ଶିକ୍ଷା କେନ୍ଦ୍ର ଖୋଲି ତାର ପରିଚାଳନା ଦାୟିତ୍ୱରେ ଅଛନ୍ତି ।

ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ତାଙ୍କର ଅବଦାନକୁ ସ୍ୱୀକୃତି ଦେଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ଜେନାଙ୍କୁ ୧୯୮୫-୮୬ ବର୍ଷରେ ସମ୍ବର୍ଦ୍ଧିତ, ସମ୍ମାନିତ ଏବଂ ପୁରସ୍କୃତ କରିଅଛନ୍ତି । ଓଡ଼ିଶୀ ନୃତ୍ୟ ତାଙ୍କ ନିକଟରୁ ବହୁତ କିଛି ଆଶା କରେ ।

●

## ଶ୍ରୀ ନରସିଂହ ମହାପାତ୍ର

**କୋଇଣ୍ଡ, ବାଲେଶ୍ୱର**

**ଜନ୍ମ—୧୯୨୭ ମସିହା**



ଓଡ଼ିଶାର ନାଟ୍ୟ ଜଗତର ଅନ୍ୟତମ ସଫଳ ନାଟ୍ୟକାର ଶ୍ରୀ ନରସିଂହ ମହାପାତ୍ର ୧୯୨୭ ମସିହାରେ ବାଲେଶ୍ୱର ଜିଲ୍ଲାର ଭଦ୍ରଖ ନିକଟସ୍ଥ କୋଇଣ୍ଡ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବିଶ୍ୱବିଦ୍ୟାଳୟରୁ ଉଚ୍ଚ ଶିକ୍ଷା ଲାଭ କରିବା ପରେ ଶ୍ରୀ ମହାପାତ୍ର ଆକାଶବାଣୀ କଟକ କେନ୍ଦ୍ରରେ ଜଣେ କର୍ମଚାରୀ ଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ସେ ନିଜକୁ ଜଣେ ସଫଳ ମଞ୍ଚ ଓ ବେତାର ନାଟ୍ୟକାର ରୂପେ ପ୍ରତିଷ୍ଠିତ କରିବାରେ ସଫଳକାମ ହୋଇଥିଲେ । ତାଙ୍କ ରଚିତ ନାଟକଗୁଡ଼ିକ ମଧ୍ୟରେ ବନ୍ଧନ, ଅକ୍ଷିତୃତୀୟା, ସନ୍ଧ୍ୟାସକାଳ, କବି ଗୋପାଳକୃଷ୍ଣ ଓ ବାଉଁଶରାଣୀ ଇତ୍ୟାଦି ନାଟକ ପ୍ରଧାନ । ଆଧୁନିକ ନାଟ୍ୟକାର ଭାବରେ ନିଜ ନାଟକ ସବୁରେ ଏକ ନୂତନ ଦିଗ୍‌ଦର୍ଶନ ଦେଇ ସେ ଦର୍ଶକ ଓ ଶ୍ରୋତାମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିପାରିଥିଲେ । ତାଙ୍କ ରଚିତ ନାଟକ ସବୁରେ ମଞ୍ଚକୌଶଳ ଓ ନାଟକୀୟ ଘଟଣା ଅକ୍ଷୁଣ୍ଣ ରଖିବାରେ ଶ୍ରୀ ମହାପାତ୍ର ବିଶେଷ ଯୋଗ୍ୟତା ପ୍ରଦର୍ଶନ କରିଛନ୍ତି । ନିଖୁଣ ମଞ୍ଚୋପଯୋଗିତା ଏବଂ ସାମାଜିକ ଆବେଦନ ତାଙ୍କ ନାଟ୍ୟକୃତି ସବୁକୁ ଚିର ସବୁଜ ଏବଂ ସରସ କରି ତୋଳିଥାଏ ।

ଏତଦ୍‌ବ୍ୟତୀତ ଆକାଶବାଣୀର ଜଣେ ସଫଳ ଗୀତିକାର ଭାବରେ ସେ ମଧ୍ୟ ସ୍ୱୀକୃତ । ଶ୍ରୀ ମହାପାତ୍ରଙ୍କର ଓଡ଼ିଶାର ନାଟ୍ୟ ସାହିତ୍ୟକୁ ଏତାଦୃଶ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ୧୯୮୫-୮୬ ବର୍ଷ ନିମନ୍ତେ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରାଯାଇଛି ।

ଚାକିରୀରୁ ଅବସର ଗ୍ରହଣ କରିବା ପରେ ଶ୍ରୀ ମହାପାତ୍ର ଏବେ ନିଜ ଗ୍ରାମରେ ଅବସ୍ଥାନ କରି ଗ୍ରାମ୍ୟ ନାଟ୍ୟକଳାର ଉତ୍କର୍ଷସାଧନରେ ବ୍ୟସ୍ତ ।

## ଶ୍ରୀମତୀ ବୀଣା ଦେବୀ

କଟକ

ଜନ୍ମ—୧୯୩୨, ନଭେମ୍ବର ୨୦



ଓଡ଼ିଶାର ସାହିତ୍ୟ ଓ ସଙ୍ଗୀତକୁ ନିଜର ଅକ୍ଳାନ୍ତ ପ୍ରଚେଷ୍ଟା ଦ୍ୱାରା ଯେଉଁମାନେ ସର୍ବଦା ସମୃଦ୍ଧିମନ୍ତ କରି ଆସିଛନ୍ତି, ସେମାନଙ୍କ ମଧ୍ୟରେ ଶ୍ରୀମତୀ ବୀଣା ଦେବୀ ଅନ୍ୟତମା । ବିଶ୍ୱବିଦ୍ୟାଳୟ ସ୍ତରରେ ସର୍ବୋଚ୍ଚ ଡିଗ୍ରୀପ୍ରାପ୍ତ ଏବଂ ଉଚ୍ଚଶିକ୍ଷିତା କଳାକାର ସଙ୍ଗୀତରେ ସ୍ୱୟଂସମ୍ପୂର୍ଣ୍ଣ ଶ୍ରୀମତୀ ବୀଣା ଦେବୀ ୧୯୩୨ ମସିହାରେ ନଭେମ୍ବର ମାସ ୨୦ ତାରିଖରେ ଜନ୍ମଗ୍ରହଣ କରିଥିଲେ ।

ଆକାଶବାଣୀ କଲିକତା କେନ୍ଦ୍ରରୁ କାର୍ଯ୍ୟକ୍ରମ ପ୍ରସାର କରି ୧୯୪୫ରେ ସେ ନିଜର କର୍ମମୟ ଜୀବନ ଆରମ୍ଭ କରିଥିଲେ । ୧୯୫୫ରେ ସେ ଆକାଶବାଣୀର ଜଣେ ଅନନ୍ୟ କଳାକାର ଭାବରେ ସ୍ୱୀକୃତି ଲାଭ କରିଥିଲେ । ଜଣେ ଦକ୍ଷ କଣ୍ଠଶିଳ୍ପୀ ଭାବେ ସେ ସାଧାରଣତଃ ଭଜନ, ଓଡ଼ିଶୀ, ଗ୍ରୁପ ଏବଂ ସୁଗମ ସଙ୍ଗୀତ ଗାନ କରିଥାନ୍ତି । ତାଙ୍କ ଗୀତର ଅନେକ ରେକର୍ଡ ମଧ୍ୟ ରହିଅଛି । ସେ ବହୁ ଓଡ଼ିଆ ଚଳଚ୍ଚିତ୍ରରେ ପ୍ରଚ୍ଛଦପଟ ଗାୟିକା ଭାବରେ କଣ୍ଠଦାନ କରିବା ସଙ୍ଗେ ସଙ୍ଗେ ଦୂରଦର୍ଶନରେ ମଧ୍ୟ ନିଜ ଗାୟନ ପ୍ରସ୍ତୁତ କରିଥିଲେ । ଆକାଶବାଣୀ କଟକ କେନ୍ଦ୍ରରେ କାର୍ଯ୍ୟ କରୁଥିବା ସମୟରେ ସେ ଅନେକ ଗୀତ, ସଙ୍ଗୀତ-ରୂପକମାନ ରଚନା ଏବଂ ପ୍ରଯୋଜନା କରିବା ସହ ଆକାଶବାଣୀର ସଙ୍ଗୀତ ଶିକ୍ଷା କାର୍ଯ୍ୟକ୍ରମରେ ଶିକ୍ଷକଭାବେ ସାର୍ଥକ କାର୍ଯ୍ୟ କରିଛନ୍ତି ।

ଶ୍ରୀମତୀ ବୀଣା ଦେବୀ ନିଜ ପିଲାଦିନରୁ ଲେଖାଲେଖି ଆରମ୍ଭ କରିଥିଲେ । ଫଳରେ ସେ ବିଦ୍ୟାଳୟ ସ୍ତରରେ ଅଧ୍ୟୟନ କରୁଥିବା ସମୟରେ ହିଁ ତାଙ୍କର ପ୍ରଥମ ବହି ପ୍ରକାଶିତ ହୋଇଥିଲା । ଓଡ଼ିଶାର ସବୁ ପତ୍ରିକାରେ ତାଙ୍କର ଲେଖା କ୍ଷୁଦ୍ରଗଳ୍ପ, କବିତା, ନାଟକ ଏବଂ ପ୍ରବନ୍ଧମାନ ପ୍ରକାଶ ପାଇଛି । ତାଙ୍କର ସର୍ବମୋଟ ଛଅଖଣ୍ଡି ଉପନ୍ୟାସ, ଗୋଟିଏ ଶିଶୁମାନଙ୍କ ନିମନ୍ତେ ଗଳ୍ପବହି, ଦୁଇଟି ନାଟକସମାହାର ପ୍ରକାଶ ପାଇଛି ଏବଂ ସେ

ଆକାଶବାଣୀର ଜଣେ ସ୍ୱୀକୃତିପ୍ରାପ୍ତ ସଙ୍ଗୀତ ରଚୟିତ୍ରୀ । ତାଙ୍କ ରଚିତ ବିଭିନ୍ନ ପୁସ୍ତକ ସବୁ ହେଲା ଉପନ୍ୟାସ—ମନ୍ଥର ଜଟ୍ଟୀରାଜା, ଶେଷ ଅଭିନୟ, ମୃତ୍ୟୁଦୂତ, ସୌନ୍ଦର୍ଯ୍ୟର ମୁଖ, ଏତେ ରକ୍ତ ଏବଂ କମିଜ ବନାମ, ନାଟକ—ବିଷ୍ଣୁଜକ ଓ ଅନନ୍ୟ ଏବଂ ଶିଶୁ ଗଳ୍ପ—ଭୂତକୋଠି ।

ତାଙ୍କର ପ୍ରତିଭା କେବଳ ସଙ୍ଗୀତ ଦୁନିଆ ମଧ୍ୟରେ ସୀମାବଦ୍ଧ ରହି ନ ଥିଲା । ସେ ଅନେକ ସାମାଜିକ ଉନ୍ନତିମୂଳକ କାର୍ଯ୍ୟରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି । ଓଡ଼ିଶା ନାରୀ ସେବାସଙ୍ଘ, ଉତ୍କଳ ମହିଳା ସମିତି ଓ କଲ୍ୟାଣୀ ମହିଳା ସମିତିଭଳି ସାମାଜିକ ଅନୁଷ୍ଠାନ ଏବଂ ଯକ୍ଷ୍ମା ନିବାରଣ କାର୍ଯ୍ୟରେ ସେ ଓତପ୍ରୋତ ଭାବରେ ଜଡ଼ିତ ।

ଆକାଶବାଣୀ କଟକ କେନ୍ଦ୍ରରେ ୧୯୫୯ ମସିହାରେ କାର୍ଯ୍ୟକ୍ରମ ଉପସ୍ଥାପକରୂପେ ନିଜର କାର୍ଯ୍ୟ ଆରମ୍ଭ କରି ଶ୍ରୀମତୀ ବୀଣାଦେବୀ ୧୯୬୦ ରେ ମହିଳାମାନଙ୍କ ନିମନ୍ତେ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ଦାୟିତ୍ୱରେ ରହିଥିଲେ । ୧୯୬୮ ରେ ସେ ଆକାଶବାଣୀର ଜୟପୁର କେନ୍ଦ୍ରରେ ପ୍ରଥମ ମହିଳା ଡିରେକ୍ଟର ଭାବେ ଯୋଗ ଦେଇଥିଲେ । ତାଙ୍କ ଚେଷ୍ଟାରେ ଏହି କେନ୍ଦ୍ର ନିଜସ୍ୱ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାର ଅଧିକାରପ୍ରାପ୍ତ ହୋଇଥିଲେ । ସେ ନୂଆଦିଲ୍ଲୀ ଆକାଶବାଣୀରେ ସମୁଦ୍ରପାର ପ୍ରସାରଣ (General Overseas Service) ର ଇଂରାଜୀ ବିଭାଗରେ କାର୍ଯ୍ୟ କରିବା ସହ ଆକାଶବାଣୀ ଦିଲ୍ଲୀର ପରିବାର ନିୟନ୍ତ୍ରଣ ବିଭାଗର ପରିଚାଳିକା ଥିଲେ । ସେ ୧୯୮୪ ଠାରୁ କଟକ ଦୂରଦର୍ଶନର ଡିରେକ୍ଟର ଭାବରେ କାର୍ଯ୍ୟ କରିଥିଲେ ।

ଓଡ଼ିଶୀ ସଙ୍ଗୀତ ପ୍ରତି ତାଙ୍କର ବିଶେଷ ଅବଦାନ ହେତୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀମତୀ ବୀଣା ଦେବୀଙ୍କୁ ୧୯୮୬-୮୭ ବର୍ଷରେ ସମ୍ମାନିତ ଏବଂ ପୁରସ୍କୃତ କରିଅଛନ୍ତି ।



## ଶ୍ରୀମତୀ ଲକ୍ଷ୍ମୀ ଦେବୀ

ବାରଦାଗ୍ରାମ, କଟକ ଜିଲ୍ଲା

ଜନ୍ମ—୧୯୨୩, ଜୁନ୍ ୧

ବିଂଶ ଶତାବ୍ଦୀର ପ୍ରାୟ ମଧ୍ୟଭାଗରେ ଯେଉଁ କେତେଜଣ ଅଭିନେତ୍ରୀ ଓଡ଼ିଆ ରଙ୍ଗମଞ୍ଚରେ ନିଜର ଅଭିନୟକୁଶଳତା ବଳରେ ଆଲୋଡ଼ନ ସୃଷ୍ଟି କରିଥିଲେ, ସେମାନଙ୍କ ମଧ୍ୟରେ ଶ୍ରୀମତୀ ଲକ୍ଷ୍ମୀଦେବୀଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ସେ ୧୯୨୩ ମସିହା ଜୁନ୍‌ମାସ ୧ ତାରିଖ ଦିନ କଟକ ଜିଲ୍ଲାର ବାରଦା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ତାଙ୍କ ମାତାଙ୍କ ବିୟୋଗ ହେବାପରେ ପିତା ବେଣୁଧର ଦାଶ ତାଙ୍କୁ ନେଇ କଟକ ଚାଲିଆସି ତାଙ୍କର ଲାଳନପାଳନ କରିଥିଲେ । ୧୯୩୫ ରେ କାଳୀଚରଣ ପଟ୍ଟନାୟକଙ୍କର ରାସଦଳ କଟକର ଶ୍ରୀରାମଚନ୍ଦ୍ର ଭବନଠାରେ ଅଭିନୟ ପ୍ରଦର୍ଶନ କରୁଥିବା ସମୟରେ ସେଠାରେ ନିଜ ପିତାଙ୍କସହ ବାସକରୁଥିବା ଅଷ୍ଟମବର୍ଷୀୟା ଲକ୍ଷ୍ମୀ ସେହି ଦଳର ଅଭିନୟ ଦେଖି ନାଟ୍ୟକଳା ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ । ସେହି ସମୟରେ କାଳୀବାବୁଙ୍କ ନିକଟରୁ ଅଭିନୟ, ସଙ୍ଗୀତ ଓ ନୃତ୍ୟ ଆଦି ଶିକ୍ଷା କରିବାର ସୌଭାଗ୍ୟ ତାଙ୍କର ହୋଇଥିଲା । ପରବର୍ତ୍ତୀ ସମୟରେ ସେ ନିଜ ପିତାଙ୍କ ସହ ମ୍ୟାଜିକ୍‌ଦଳରେ ବହୁଆଡ଼ ଭ୍ରମଣ କରିଥିଲେ । ୧୯୪୦ ରେ କାଳୀଚରଣଙ୍କର 'ଓଡ଼ିଶା ଥିଏଟର୍ସ' ରଙ୍ଗମଞ୍ଚ ପ୍ରତିଷ୍ଠା ପରେ ଶ୍ରୀମତୀ ଲକ୍ଷ୍ମୀଦେବୀ ତହିଁରେ ଅଭିନୟ ନିମନ୍ତେ ଯୋଗଦାନ କରି କମ୍ ସମୟ ମଧ୍ୟରେ ଉକ୍ତ ରଙ୍ଗମଞ୍ଚର ପ୍ରଧାନ ନାୟିକା ଭାବରେ ସ୍ୱୀକୃତି ଲାଭ କରନ୍ତି ଏବଂ ତହିଁରେ ପାଞ୍ଚବର୍ଷ ମୁଖ୍ୟ ନାୟିକା ଭୂମିକାରେ ଅଭିନୟ କରି ଦର୍ଶକମାନଙ୍କୁ ମୁଗ୍ଧ କରିପାରିଥିଲେ । ୧୯୪୫ ରେ ସେ କଟକର ଅନ୍ନପୂର୍ଣ୍ଣା ବି'ଗ୍ରୁପ୍ ରଙ୍ଗମଞ୍ଚରେ ଯୋଗଦେଇ ଦୀର୍ଘ ଆଠବର୍ଷକାଳ ତହିଁରେ ମୁଖ୍ୟନାୟିକା ଓ ଅନ୍ୟାନ୍ୟ ଚରିତ୍ରାଭିନୟମାନ କରି ବହୁ ପ୍ରଶଂସାର ଅଧିକାରିଣୀ ହୋଇଥିଲେ । 'ଘରସଂସାର' ଏବଂ 'ପଦ୍ମଲରଜ' ଇତ୍ୟାଦି ନାଟକରେ ତାଙ୍କର ବଳିଷ୍ଠ ଅଭିନୟକୁ ଆଜି ବି ଦର୍ଶକମାନେ ଭୁଲିନାହାନ୍ତି ।

୧୯୫୩ ମସିହାରେ ଲକ୍ଷ୍ମୀଦେବୀ ଆସି ଯୋଗଦେଲେ ଅନ୍ନପୂର୍ଣ୍ଣା ଥିଏଟର ଏ'ଗ୍ରୁପ୍ ପୁରୀରେ । ସେଠାରେ ସୁଦୀର୍ଘ ସତରବର୍ଷ ଧରି ମୁଖ୍ୟ ନାୟିକା ଓ ଚରିତ୍ରାଭିନୟ କରି, ଅନୁଷ୍ଠାନ ସହ ଭ୍ରାମ୍ୟମାଣ ଅବସ୍ଥାରେ ଦେଶସାରା ବୁଲି ଦେଶବାସୀଙ୍କର ଅତି ପ୍ରିୟ ଅଭିନେତ୍ରୀ ରୂପେ ସୁପରିଚିତା ହୋଇପାରିଛନ୍ତି । ରଙ୍ଗମଞ୍ଚ ବାହାରେ ଲକ୍ଷ୍ମୀଦେବୀ ଅନ୍ୟୂନ ଦଶଗୋଟି ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରି ଜଣେ ବିଶିଷ୍ଟ ଚରିତ୍ରାଭିନେତ୍ରୀ ଭାବେ ସୁନାମ ଅର୍ଜନ କରିଛନ୍ତି । ୧୯୭୦ ମସିହାଠାରୁ ରଙ୍ଗମଞ୍ଚ ତ୍ୟାଗ କରିବା ପରେ ମଧ୍ୟ ବର୍ତ୍ତମାନର ଏ ଉଣ୍ଣର ବୟସରେ, କୌଣସି ଚଳଚ୍ଚିତ୍ର ଅଥବା ସୌଖୀନ୍ ନାଟ୍ୟ ସଂସ୍ଥାର ନିମନ୍ତ୍ରଣ ପାଇଲେ, ସେ ଆନନ୍ଦରେ ଯାଇ ସଫଳ ଅଭିନୟ କରିପାରୁଛନ୍ତି । ଶ୍ୱାସ ରୋଗରେ ଅତିଷ୍ଠ ହୋଇ ମଧ୍ୟ କଳାନିଶାକୁ ତ୍ୟାଗ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ପାରୁନି ।

ପରମ କଳାକାର ସପ୍ରିୟ ଶ୍ରୀ ଜଗନ୍ନାଥଙ୍କୁ ଭରସାକରି, ତାଙ୍କରି ଶ୍ରୀକ୍ଷେତ୍ର ପୁରୀରେ ରହି ତାଙ୍କର ବାକି ଜୀବନଟି କଟାଇ ନେଉଛନ୍ତି । ଓଡ଼ିଶା ରଙ୍ଗମଞ୍ଚ ଓ ଅଭିନୟ ପାଇଁ ତାଙ୍କର ବିଶେଷ ଅବଦାନ ନିମନ୍ତେ ୧୯୮୬-୮୭ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ମାନିତ, ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି । ଆଜିର ଓ ଆସନ୍ତା କାଲିର ଯୁବଶିଳ୍ପୀଙ୍କ ନିମନ୍ତେ ତାଙ୍କ ଜୀବନ ଏକ ପ୍ରେରଣା ।

●

## ଶ୍ରୀ ଗୋବିନ୍ଦ ଚନ୍ଦ୍ର ତେଜ

ଜନ୍ମ—୧୯୨୯ ମସିହା



ଓଡ଼ିଶାର ରଙ୍ଗମଞ୍ଚ ତଥା ଚଳଚ୍ଚିତ୍ର ଜଗତର ପ୍ରଖ୍ୟାତଯଶା ଅଭିନେତା ଓ ନିର୍ଦ୍ଦେଶକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ତେଜ ୧୯୨୯ ମସିହାରେ ଜନ୍ମଗ୍ରହଣ କରିଥିଲେ । ଶ୍ରୀ ତେଜ୍ ବହୁ ନୃତ୍ୟ ନାଟିକା ରଚନା କରି ତାହାର ପ୍ରଯୋଜନା ଏବଂ ନିର୍ଦ୍ଦେଶନାର ଦାୟିତ୍ୱ ସୁଚାରୁରୂପେ ତୁଲାଇଥିଲେ । ଏହିସବୁ ନୃତ୍ୟନାଟିକା ଓଡ଼ିଶା ମଧ୍ୟରେ ଏବଂ ବାହାରେ ପ୍ରଦର୍ଶିତ ହୋଇଛି । ଓଡ଼ିଶା ସରକାରଙ୍କର ସାଂସ୍କୃତିକ ଦଳ ସହ ସେ କେରଳ ଏବଂ ଆନ୍ଧ୍ରପ୍ରଦେଶ ମଧ୍ୟ ଗସ୍ତ କରିଛନ୍ତି ।

ଓଡ଼ିଶାର ଅନ୍ୟତମ ଲୋକନୃତ୍ୟ 'ଘୁମୁରା' ନୃତ୍ୟକୁ ୧୯୮୨ରେ 'ଏସିଆଡ୍' ଉତ୍ସବରେ ସଫଳ ପରିବେଷଣ କରାଇବାରେ ତାଙ୍କର ବିଶେଷ ଅବଦାନ ରହିଛି । ଏତଦ୍‌ବ୍ୟତୀତ ଛାୟା ଜଣେଇ ନୃତ୍ୟ (ରାବଣ ଛାୟା)ର ଗବେଷକ ଭାବରେ ଏହି ଲୁପ୍ତପ୍ରାୟ କଳାକୁ ବଞ୍ଚାଇ ରଖିବା ନିମନ୍ତେ ତାଙ୍କର ଉଦ୍ୟମ ପ୍ରଶଂସନୀୟ ।

୧୯୪୯ରୁ ଓଡ଼ିଶାର ରଙ୍ଗମଞ୍ଚ ସହ ଅଭିନେତାନିର୍ଦ୍ଦେଶକ ଭାବେ ସଂପୃକ୍ତ ଥିବା ଶ୍ରୀ ତେଜ୍ ଓଡ଼ିଆ ଚଳଚ୍ଚିତ୍ର ଜଗତକୁ ୧୯୫୪ରେ ଅଭିନେତା, ପ୍ରଯୋଜକ, ନିର୍ଦ୍ଦେଶକ ଏବଂ ଚିତ୍ରନାଟ୍ୟ ଲେଖକ ଭାବେ ପ୍ରବେଶ କରି ରଙ୍ଗମଞ୍ଚ ଏବଂ ଚଳଚ୍ଚିତ୍ର କ୍ଷେତ୍ରରେ ତାଙ୍କର ଅବଦାନ ନିମନ୍ତେ ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହୋଇଛନ୍ତି । ଅଭିନୟ ଓ ନିର୍ଦ୍ଦେଶନା କ୍ଷେତ୍ରରେ ନିଜର କୃତିତ୍ୱ ପାଇଁ ଶ୍ରୀ ତେଜ୍ ନିଜ ଜୀବନରେ ବହୁବାର ବହୁ ଅନୁଷ୍ଠାନ ତରଫରୁ ସମ୍ମାନିତ । ତନ୍ମଧ୍ୟରେ ୧୯୫୬ରେ ଉତ୍କଳ ନୃତ୍ୟ ସଙ୍ଗୀତ ନାଟ୍ୟ କଳା ପରିଷଦ ତରଫରୁ ନାଟକ 'ବେଗମ କୋଠି' ନିମନ୍ତେ ଶ୍ରେଷ୍ଠ ଅଭିନେତା ପୁରସ୍କାର, ୧୯୭୭ରେ ଚଳଚ୍ଚିତ୍ର 'ବନ୍ଧୁ ମହାନ୍ତି' ନିମନ୍ତେ ଶ୍ରେଷ୍ଠ ଅଭିନେତା ରୂପେ ରାଜ୍ୟ ସରକାରଙ୍କ ଚଳଚ୍ଚିତ୍ର ପୁରସ୍କାର, ୧୯୮୪ରେ ରାଜ୍ୟ ସରକାରଙ୍କ ତରଫରୁ 'କାବେରୀ' ଚଳଚ୍ଚିତ୍ର ନିମନ୍ତେ ଶ୍ରେଷ୍ଠ ନିର୍ଦ୍ଦେଶକ ପୁରସ୍କାର, ୧୯୮୫ରେ ପୁନଶ୍ଚ ଚଳଚ୍ଚିତ୍ର 'ସ୍କୁଲ ମାଷ୍ଟର' ନିମନ୍ତେ

ରାଜ୍ୟ ସରକାରଙ୍କ ପୁରସ୍କାର, ୧୯୮୬ରେ ଚଳଚ୍ଚିତ୍ର ଜଗତକୁ ନିଜର ଅବଦାନ ନିମନ୍ତେ ରାଜ୍ୟ ସରକାରଙ୍କର 'ଜୟଦେବ ପୁରସ୍କାର' ଲାଭ, ୧୯୮୭ରେ ଚଳଚ୍ଚିତ୍ର 'ଝୁଣ୍ଡ ବାରୁଦ' ନିମନ୍ତେ ଶ୍ରେଷ୍ଠ ନିର୍ଦ୍ଦେଶକ ପୁରସ୍କାର ସହ ୧୯୮୬-୮୭ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଶ୍ରେଷ୍ଠ ଅଭିନେତା ଏବଂ ନିର୍ଦ୍ଦେଶକ ଭାବରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ ।

ଶ୍ରୀଯୁକ୍ତ ତେଜ ପ୍ରଥମରୁ ବହୁ ସାଂସ୍କୃତିକ ଅନୁଷ୍ଠାନ ସହ ଜଡ଼ିତ ଥିଲେ । ତନ୍ମଧ୍ୟରେ କଟକ ନେସନାଲ ମ୍ୟୁଜିକ୍ ଆସୋସିଏସନ୍‌ର ନାଟକ ବିଭାଗର ସମ୍ପାଦକ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର କାର୍ଯ୍ୟକାରୀ ସଭାର ସାଧାରଣ ସଭ୍ୟ, ଭାରତ ସରକାରଙ୍କ ସଙ୍ଗୀତ ନାଟକ ଏକାଡେମୀ ସାଧାରଣ ପରିଷଦର ସଭ୍ୟ, କଳିଙ୍ଗ ଷ୍ଟୁଡିଓର ପରିଚାଳନା ସଭାର ଅନ୍ୟତମ ସଦସ୍ୟ, ଓଡ଼ିଶା ସରକାରଙ୍କ ଚଳଚ୍ଚିତ୍ର ସଂସ୍ଥାର ପରିଚାଳନା ସଦସ୍ୟ ରହିଥିବା ଉଲ୍ଲେଖଯୋଗ୍ୟ ।

ଅଧୁନା ଶ୍ରୀ ତେଜ୍ ଇ. ଜେଡ୍. ସି.ସି.ର କାର୍ଯ୍ୟକାରୀ ସଭାର ସଦସ୍ୟ ଏବଂ ଓଡ଼ିଶାର ଅନ୍ୟତମ ସାଂସ୍କୃତିକ ଅନୁଷ୍ଠାନ 'ସତ୍ୟବାଦୀର କଳାକାର' ସଂସ୍ଥାର ସଭାପତି ଅଛନ୍ତି ।

ଆଜି ପରିଣତ ବୟସରେ ମଧ୍ୟ ଶ୍ରୀ ତେଜ୍ ଓଡ଼ିଶା ରଙ୍ଗମଞ୍ଚ, ଲୋକନୃତ୍ୟ କଳା ଏବଂ ଚଳଚ୍ଚିତ୍ର ଶିଳ୍ପର ଉନ୍ନତି ନିମନ୍ତେ ଭୁବନେଶ୍ୱରଠାରେ ଅବସ୍ଥାନ କରି କାର୍ଯ୍ୟରତ । ତାଙ୍କ ଜୀବନ ଅନ୍ୟ ଆଗନ୍ତୁକ କଳାକାରମାନଙ୍କ ପାଇଁ ପ୍ରେରଣା ହେଉ ।

## ଶ୍ରୀ ରାଜକିଶୋର ରାୟ

ମେଣ୍ଢାଶାଳ, ପୁରୀ

ଜନ୍ମ—୧୯୧୪, ନଭେମ୍ବର ୨୩



ବିଶିଷ୍ଟ ସାହିତ୍ୟିକ, ଶିକ୍ଷାବିତ୍ ଏବଂ ଅଭିନେତା ଭାବରେ ଓଡ଼ିଶାର ସର୍ବଜନ ପରିଚିତ ଶ୍ରୀ ରାଜକିଶୋର ରାୟ ୧୯୧୪ ମସିହା ନଭେମ୍ବର ମାସ ୨୩ ତାରିଖରେ ପୁରୀ ଜିଲ୍ଲାର ଖୋର୍ଦ୍ଧା ସବ୍‌ଡିଭିଜନ୍ ଅନ୍ତର୍ଗତ ମେଣ୍ଢାଶାଳ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଇଂରାଜୀ ଏବଂ ଓଡ଼ିଆ ଉଭୟ ବିଷୟରେ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀ ହାସଲ କରି ସେ ଅଧ୍ୟାପକ ଭାବରେ ନିଜ କର୍ମମୟ ଜୀବନ ଆରମ୍ଭ କରିଥିଲେ ମଧ୍ୟ ରଙ୍ଗମଞ୍ଚରେ ଅଭିନୟ ପ୍ରତି ତାଙ୍କର ଅତ୍ୟଧିକ ଦୁର୍ବଳତା ଥିଲା । ତେଣୁ ଶ୍ରୀ ରାୟ ବିଭିନ୍ନ କଲେଜରେ ଅଧ୍ୟାପନା କାର୍ଯ୍ୟ କରୁଥିବା ସମୟରେ ପ୍ରାୟ ସବୁ କଲେଜ ନାଟ୍ୟ ବିଭାଗର ସଭାପତି ରହି ନିଜ ନିର୍ଦ୍ଦେଶନାରେ ବହୁ ଐତିହାସିକ ଏବଂ ସାମାଜିକ ନାଟକରେ ନିଜ ଛାତ୍ରଛାତ୍ରୀଙ୍କ ସହ ମିଶି ଅଭିନୟ କରୁଥିଲେ । ବଳକା ସମୟରେ ଶ୍ରୀ ରାୟ ବିଭିନ୍ନ ସହରରେ ଥିବା ପେଷାଦାର ରଙ୍ଗମଞ୍ଚରେ ମଧ୍ୟ ସାମୟିକ ଅଭିନୟ କରି ନିଜର ଅଭିନୟ କୁଶଳତା ଦ୍ୱାରା ଦର୍ଶକମାନଙ୍କର ମନକୁ କିଣି ନେଇଥିଲେ । ଗୁରୁଗମ୍ଭୀର ସ୍ୱରରେ ସଂଳାପର ଉଚ୍ଚାରଣ ତାଙ୍କୁ ଅନ୍ୟ ଅଭିନେତାଙ୍କଠାରୁ ସ୍ୱତନ୍ତ୍ର ଭାବେ ଚିହ୍ନିତ କରିଥାଏ । କଟକର କୁମାର ସମିତି ଆୟୋଜିତ ଗୀତିନାଟ୍ୟରେ ମଧ୍ୟ ବହୁବାର ଅଭିନୟ କରି ସେ ପ୍ରଶଂସିତ । ବହୁ ପ୍ରତିଭାସମ୍ପନ୍ନ ଏହି କଳାକାର ୧୯୬୦ରୁ ଆକାଶବାଣୀର ଜଣେ ସ୍ୱୀକୃତ ଅଭିନେତା ଭାବେ ଅଦ୍ୟାବଧି ଅଗଣିତ ବେତାର ନାଟକରେ ଅଂଶ ଗ୍ରହଣ କରିଛନ୍ତି ଓ କରୁଛନ୍ତି । ଓଡ଼ିଆ ଚଳଚ୍ଚିତ୍ର ଶେଷ ଶ୍ରାବଣ, ଭାଇ ଭାଉଜ, ହିସାବ ନିକାଶ, ନାଲିପାନ ବିବି, ଭାରମାଳା ଓ ବଗୁଲ ବଗୁଲି ଇତ୍ୟାଦିରେ ତାଙ୍କର ଅନବଦ୍ୟ ଚରିତ୍ରାଭିନୟ ଓଡ଼ିଆ ଦର୍ଶକମାନଙ୍କର ବହୁଦିନ ମନେ ରହିବ । ଆକାଶବାଣୀ ବ୍ୟତୀତ ଶ୍ରୀ ରାୟ କଟକ ଦୂରଦର୍ଶନ କେନ୍ଦ୍ର ପ୍ରସାରିତ ବିଭିନ୍ନ ନାଟକରେ ଅଂଶ ଗ୍ରହଣ କରୁଥିବା ଜଣେ ସ୍ୱୀକୃତିପ୍ରାପ୍ତ ଶିଳ୍ପୀ । ଶ୍ରୀ ରାୟ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ପ୍ରଥମ ସମ୍ପାଦକ ଭାବେ କାର୍ଯ୍ୟ କରିବାର ଗୌରବ ଲାଭ କରିଛନ୍ତି ।

ଅଭିନୟ କଳା ସହ ସଂଶ୍ଳିଷ୍ଟ ଶ୍ରୀ ରାୟ ଓଡ଼ିଆ ସାହିତ୍ୟର ଜଣେ ଅଗ୍ରଗଣ୍ୟ ଗାଳ୍ପିକ ଓ ପ୍ରାବନ୍ଧିକ ଭାବରେ ରାଜ୍ୟ ମଧ୍ୟରେ ସୁପରିଚିତ । ତାଙ୍କ ରଚିତ ବହୁ ପୁସ୍ତକ ବିଭିନ୍ନ ସମୟରେ ବିଶ୍ୱବିଦ୍ୟାଳୟର ପାଠ୍ୟ ପୁସ୍ତକ ରୂପେ ସ୍ୱୀକୃତ ।

ଓଡ଼ିଶାର ସାହିତ୍ୟ ଏବଂ କଳା ପାଇଁ ନିଜର ଅସାମାନ୍ୟ ଅବଦାନ ନିମନ୍ତେ ଶ୍ରୀ ରାୟ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଥିବାବେଳେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଅଭିନୟ ନିମନ୍ତେ ୧୯୮୬-୮୭ ବର୍ଷରେ ସମ୍ମାନିତ ଏବଂ ପୁରସ୍କୃତ । ତାଙ୍କ ରଚିତ ପାଞ୍ଚଗୋଟି ଏକାଙ୍କିକା ସଙ୍କଳନ 'ପଞ୍ଚପଲ୍ଲବ' ଓଡ଼ିଆ ନାଟ୍ୟ ସାହିତ୍ୟର ଅମୂଲ୍ୟ ରତ୍ନ ।

ସୁବକ୍ତା, ସୁଅଭିନେତା, ଗାୟକ ଓ ରସଜ୍ଞ କଳାବିତ୍ ଭାବେ ଶ୍ରୀ ରାୟଙ୍କର ପ୍ରତିଭା ବହୁମୁଖୀ । କଥାଶିଳ୍ପୀ ଓ ପ୍ରାବନ୍ଧିକ ଭାବେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ସହ ଜଣେ ଦକ୍ଷ ଅଭିନେତା ଏବଂ ନିର୍ଦ୍ଦେଶକ ଭାବେ ସେ ଓଡ଼ିଆ ନାଟ୍ୟ ସାହିତ୍ୟକୁ ମଧ୍ୟ ସମଭାବରେ ଋଦ୍ଧିମନ୍ତ କରିଛନ୍ତି । ୧୯୬୯ରେ ଅବସର ଗ୍ରହଣ ପରେ ଏ ପରିଣତ ବୟସରେ ମଧ୍ୟ ତାଙ୍କର ରସବନ୍ତ ସୃଜନ ପ୍ରତିଭା ଅବ୍ୟାହତ ରହିଅଛି, ଏହି ଦୃଷ୍ଟିରୁ ଶ୍ରୀଯୁକ୍ତ ରାୟ ଚିର ଅଭିନନ୍ଦନୀୟ ।

## ସ୍ୱର୍ଗତ ସୁରେନ୍ଦ୍ର ଧଡ଼ା
**ବୁଢ଼ୀଖମାରି, ମୟୂରଭଞ୍ଜ**

**ଜନ୍ମ—୧୯୨୩, ମଇ ୧୪**



ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ଲୋକନୃତ୍ୟ ଛଉନୃତ୍ୟରେ ଢୋଲବାଦନ କରି ଅଶେଷ ଖ୍ୟାତି ଅର୍ଜନ କରିଥିବା କଳାକାର ସ୍ୱର୍ଗତ ସୁରେନ୍ଦ୍ର ଧଡ଼ା ୧୯୨୩ ମସିହା ମଇ ମାସ ୧୪ ତାରିଖରେ ମୟୂରଭଞ୍ଜ ଜିଲ୍ଲାର ବାରିପଦା ନିକଟବର୍ତ୍ତୀ ବୁଢ଼ୀଖମାରି ଗ୍ରାମରେ ୰ ଶ୍ୟାମସୁନ୍ଦର ଧଡ଼ାଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । ଜାତିରେ ହରିଜନ ହୋଇଥିବାରୁ ପାଠପଢ଼ା ପ୍ରତି ସେ ବିଶେଷ ଗୁରୁତ୍ୱ ନଦେଇ ମାତ୍ର ୮ ବର୍ଷ ବୟସରୁ ନିଜର ବଡ଼ବାପା ୰ ମହେନ୍ଦ୍ର ଧଡ଼ାଙ୍କ ନିକଟରୁ ଛଉନୃତ୍ୟ ଶୈଳୀର ଢୋଲବାଦନ ଶିକ୍ଷା କରିଥିଲେ । ତାଙ୍କ ନିଜ ଗୃହରେ ପ୍ରତିଷ୍ଠିତ ଢୋଲ ଆଖଡ଼ାରେ ଶିଶୁ ସୁରେନ୍ଦ୍ର ଏକାଗ୍ର ମନରେ ଗଭୀର ରାତି ପର୍ଯ୍ୟନ୍ତ ଢୋଲ ବଜାଇବା ଅଭ୍ୟାସ କରି ନିଜର ବାଦ୍ୟକଳା ମଧ୍ୟରେ ପ୍ରାଣ ସଞ୍ଚାର କରି ଯାଇଥିଲେ । ପ୍ରାରମ୍ଭିକ ଜୀବନରେ ଦକ୍ଷିଣ ସାହି ଛଉନୃତ୍ୟ ଦଳରେ ୧୯୩୩ରେ ଢୋଲ ବାଦ୍ୟକାର ଭାବରେ ଯୋଗଦାନ କରିଥିଲେ ଏବଂ ତହିଁରେ ୧୯୪୭ ମସିହା ପର୍ଯ୍ୟନ୍ତ ରହିଥିଲେ । ୧୯୪୭ ପରେ ଛଉନୃତ୍ୟ ରାଜାଙ୍କ ପୃଷ୍ଠ-ପୋଷକତା ହରାଇ ୧୯୪୮ ପର୍ଯ୍ୟନ୍ତ ମୃତ ଅବସ୍ଥାରେ ପଡ଼ିରହିଥିବା ବେଳେ ଶ୍ରୀ ଧିରେନ୍ ଦାଶ, ଶ୍ରୀ ରାମଚନ୍ଦ୍ର ମହାପାତ୍ର (ଆଇ.ଜି) ଏବଂ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଗୁରୁ ଅନନ୍ତ ସାଏଙ୍କ ଚେଷ୍ଟାରେ ୧୯୪୮ରେ ଏକ ଛଉନୃତ୍ୟ ଦଳ ଗଠିତ ହୋଇଥିଲା ଏବଂ ସେହି ବର୍ଷ ପୁରୀଠାରେ ଏବଂ ପରେ ଓଡ଼ିଶା ବାହାରେ ଏହି ନୃତ୍ୟ ପ୍ରଦର୍ଶିତ ହୋଇ ବହୁ ପ୍ରଶଂସା ଲାଭକଲା । ଏହି ଦଳରେ ୰ ଧଡ଼ା ଢୋଲବାଦକର କାର୍ଯ୍ୟରେ ନିଯୁକ୍ତ ଥିଲେ । ପରେ ୧୯୪୯ରେ ମୟୂରଭଞ୍ଜ ଛଉନୃତ୍ୟ ପ୍ରତିଷ୍ଠାନ ପ୍ରତିଷ୍ଠିତ ହେବାପରେ ସେ ତହିଁରେ ଢୋଲ ଗୁରୁ ଭାବରେ ଯୋଗଦାନ କରି ୧୯୭୦ ମସିହା ପର୍ଯ୍ୟନ୍ତ କାର୍ଯ୍ୟକରିଥିଲେ । ୧୯୭୦ରୁ ୧୯୭୬ ମସିହା ପର୍ଯ୍ୟନ୍ତ ସେ ଗୋପାଳଅର୍ଗାନ୍ଥିତ ରଙ୍ଗଶ୍ରୀ ଲିଟଲ୍ ବ୍ୟାଲେ ଗ୍ରୁପ୍‌ରେ ଢୋଲ ଗୁରୁ ଭାବରେ କାର୍ଯ୍ୟ କରିଥିଲେ । ଏହି ସମୟ ମଧ୍ୟରେ ଏହି ଦଳ ସହ ଢୋଲବାଦକ ଭାବରେ ଜାପାନ, ଜାଭା, ଇଣ୍ଡୋନେସିଆ, ହଂକଂ, ସିଙ୍ଗାପୁର ଆଦି ଦେଶ ଓ ୧୯୭୫ରେ

କୋରିଆ, ଥାଇଲଣ୍ଡ ଇତ୍ୟାଦି ଦେଶ ଭ୍ରମଣ କରି ନିଜର ଢୋଲ ବାଦନ କଳା ପ୍ରଦର୍ଶନ କରି ବହୁ ପ୍ରଶଂସା ଲାଭ କରିଥିଲେ । ବିଶେଷ କରି ୧୯୭୧ରେ ଇଣ୍ଡୋନେସିଆର ପାନାଂ ଠାରେ ଏହି ଦଳର ପ୍ରଦର୍ଶିତ 'ସାଗର ସଙ୍ଗମ' ଛଉନୃତ୍ୟ ଦର୍ଶକମାନଙ୍କୁ ବିଭୋର କରିଦେଇ ଆନ୍ତର୍ଜାତିକ ସ୍ତରରେ ଅନ୍ୟତମ ଶ୍ରେଷ୍ଠ ଲୋକନୃତ୍ୟର ମାନ୍ୟତା ପ୍ରାପ୍ତ ହୋଇଥିଲା । ପରବର୍ତ୍ତୀ ଜୀବନରେ ଶ୍ରୀ ଧଡ଼ା ୧୯୭୬ରୁ ୧୯୭୯ ପର୍ଯ୍ୟନ୍ତ ଶ୍ରୀ ରାମ ଭାରତ କଳାକେନ୍ଦ୍ର, ଦିଲ୍ଲୀରେ ଢୋଲ ଗୁରୁ ଭାବରେ ଯୋଗଦାନ କରି କାର୍ଯ୍ୟ କରିଥିଲେ । ଢୋଲ ବାଦନ ବ୍ୟତୀତ ଶ୍ରୀ ଧଡ଼ା ଚନ୍ଦ୍ରକଳାର୍ଦ୍ଧ, ମୃଗୁଣୀ ସ୍ତୁତି ଓ ସାକ୍ଷୀଗୋପାଳ ପ୍ରଭୃତି ଛଉନୃତ୍ୟରେ ସ୍ୱର ସଂଯୋଜକ ଭାବରେ ମଧ୍ୟ ନିଜର ପାରଦର୍ଶିତା ଦେଖାଇ ଅଛନ୍ତି । ତାଙ୍କର ପ୍ରବୀଣ ଶିଷ୍ୟମାନଙ୍କ ମଧ୍ୟରେ ଶ୍ରୀ ସୂର୍ଯ୍ୟ ଘଡ଼ାଇ ଏବଂ ଶ୍ରୀ ଲୋକନାଥ ଧଡ଼ା ବର୍ତ୍ତମାନ ମଧ୍ୟପ୍ରଦେଶର ରାଜଧାନୀ ଭୋପାଳଠାରେ ଥିବା ରଙ୍ଗଶ୍ରୀ ଲିଟଲ୍ ବ୍ୟାଲେ ଗ୍ରୁପ୍‌ରେ କାର୍ଯ୍ୟରତ ଏବଂ ଶ୍ରୀ ବିପ୍ଳବରାଜ ଧଡ଼ା ଓ ଶ୍ରୀ ଦିଲ୍ଲୀପ କୁମାର ଘଡ଼େଇ ବିଦେଶରେ ଛଉନୃତ୍ୟ ଗୁରୁ ଓ ଢୋଲବାଦକ ଭାବରେ କାର୍ଯ୍ୟରତ ।

ଓଡ଼ିଶାର ଲୋକନୃତ୍ୟ ପରମ୍ପରାକୁ ତାଙ୍କର ବିଶେଷ ଅବଦାନ ତଥା ପ୍ରସିଦ୍ଧ ଢୋଲବାଦକ ଭାବେ ୧୯୮୬-୮୭ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଶ୍ରୀ ସୁରେନ୍ଦ୍ର ଧଡ଼ା ପୁରସ୍କୃତ ଏବଂ ସମ୍ମାନିତ ହୋଇଅଛନ୍ତି । ୧୯୮୮ ଡିସେମ୍ବର ୨୧ ତାରିଖରେ ଶ୍ରୀ ଧଡ଼ାଙ୍କର ମହାପ୍ରସ୍ଥାନ ପରେ ଛଉନୃତ୍ୟ କ୍ଷେତ୍ରରେ ଯେଉଁ ଶୂନ୍ୟତା ସୃଷ୍ଟି ହେଲା ତାହା ଆଉ ସହଜରେ ଭରଣା ହେବାର ନୁହେଁ ।

●

## ଶ୍ରୀ ସତ୍ୟନାରାୟଣ ପଣ୍ଡା
ଗାରବନ୍ଧ, ଗଞ୍ଜାମ

ଜନ୍ମ—୧୯୦୮ ମସିହା



ନାଟ୍ୟ ରଚନା କ୍ଷେତ୍ରରେ ନିଜସ୍ୱ ପ୍ରତିଭାର ପରିଚୟ ଦେଇ ଯେଉଁ ନାଟ୍ୟକାର-ମାନେ ଓଡ଼ିଶା ରଙ୍ଗମଞ୍ଚକୁ ଓ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ସେମାନଙ୍କ ମଧ୍ୟରେ ୧୯୦୮ରେ ଗଞ୍ଜାମ ଜିଲ୍ଲାର ଗାରବନ୍ଧଠାରେ ଜନ୍ମଗ୍ରହଣ କରିଥିବା ଶ୍ରୀ ସତ୍ୟନାରାୟଣ ପଣ୍ଡା ଅନ୍ୟତମ । ତାଙ୍କ ପିତା ୬ କାମାକ୍ଷୀ ପ୍ରସାଦ ପଣ୍ଡା ଜଣେ ବିଶିଷ୍ଟ କବିରାଜ ଭାବରେ ସୁଖ୍ୟାତ ଥିଲେ । ନିଜେ ଶ୍ରୀ ପଣ୍ଡା ଏକାଧାରରେ ନାଟ୍ୟକାର, ଚଳଚ୍ଚିତ୍ର ପଟ୍ଟକଥା ଲେଖକ, ସଙ୍ଗୀତ ରଚୟିତା ଏବଂ ସାହିତ୍ୟିକ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ନିଜେ ସେ ସଂସ୍କୃତ, ଇଂରାଜୀ, ତେଲୁଗୁ, ବଙ୍ଗଳା ଓ ଓଡ଼ିଆ ଭାଷାରେ ଅଗାଧ ପାଣ୍ଡିତ୍ୟର ପରିଚୟ ଦେଇଅଛନ୍ତି । ତାଙ୍କ ଲିଖିତ ଓ ନିର୍ଦ୍ଦେଶିତ ନାଟକ ଓଡ଼ିଶାର ବହୁସ୍ଥାନରେ ଅଭିନୀତ ହୋଇ ବହୁ ପ୍ରଶଂସା ଲାଭ କରିଛି । ତାଙ୍କ ରଚିତ ସାହିତ୍ୟ ଓ ନାଟ୍ୟକୃତି ମଧ୍ୟରେ ଉପନ୍ୟାସ 'ବିଜୟ କୁମାର' ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପାଠ୍ୟ ପୁସ୍ତକ ରୂପେ ଗୃହୀତ ଏବଂ ନାଟକ ମଧ୍ୟରେ 'ଉତ୍କଳ ବିଜେତା', ସମ୍ରାଟ ଅଶୋକ, ଉର୍ବଶୀ, ସତୀ ପାର୍ବତୀ, ମେଘଦୂତ ଏବଂ ନୃତ୍ୟ ନାଟିକା 'ଶକୁନ୍ତଳା' ଉଲ୍ଲେଖଯୋଗ୍ୟ ।

ଚଳଚ୍ଚିତ୍ର ଜଗତରେ ପ୍ରବେଶ କରି ୧୯୫୯ରେ ଶ୍ରୀ ପଣ୍ଡା 'ମହାଲକ୍ଷ୍ମୀ ପୂଜା' ଚଳଚ୍ଚିତ୍ରର ଗଳ୍ପ, ପଟ୍ଟକଥା, ସଂଳାପ ଓ ସଙ୍ଗୀତ ଇତ୍ୟାଦି ପ୍ରସ୍ତୁତ କରି ନିଜର ବହୁମୁଖୀ ପ୍ରତିଭାର ପରିଚୟ ଦେଇଅଛନ୍ତି । ଆଧୁନିକ ଲୋକଗୀତ ଏବଂ ମୂଳ ସ୍ୱର ସହ ଆଦିବାସୀ ସଙ୍ଗୀତ ସବୁ ରଚନା କରି ସେ ବହୁ ଲୋକପ୍ରିୟତା ହାସଲ କରିଛନ୍ତି ।

ନିଜେ ନାଚ ଓ ଅନ୍ୟମାନଙ୍କୁ ନଚାଇ ଶ୍ରୀ ପଣ୍ଡା ଅତୀତରେ ବହୁ ରାଜାରାଜୁଡ଼ାଙ୍କ ଦରବାରରେ ସ୍ୱର୍ଣ୍ଣ ପଦକ ଓ ପୁରସ୍କାର ଲାଭ କରିଛନ୍ତି । ତାଙ୍କ ରଚିତ ବହୁ ସଂସ୍କୃତ ଏବଂ ଓଡ଼ିଆ ସଂଗୀତ ବିଜୟନଗରମ୍‌ର ଗୀତନୃତ୍ୟ କଳା ମନ୍ଦିର ଦ୍ୱାରା ଗୃହୀତ ଏବଂ ପ୍ରଯୋଜିତ ହୋଇ ଶ୍ରୀ ପଣ୍ଡାଙ୍କୁ ବହୁ ସମ୍ମାନର ଅଧିକାରୀ କରିଛି ।

ଶ୍ରୀ ପଣ୍ଡାଙ୍କ ରଚିତ 'ପୂଜା ନୃତ୍ୟ' ୧୯୭୪ରେ କଂଗ୍ରେସ ଅଧିବେଶନରେ ପ୍ରଦର୍ଶିତ ହୋଇ ବହୁ ପ୍ରଶଂସା ଲାଭ କରିଥିଲା । ନିଜର କଳା ପ୍ରବଣତା ଏବଂ କଳା ପାରଦର୍ଶିତା ଶ୍ରୀ ପଣ୍ଡାଙ୍କୁ ବହୁ ସମୟରେ ବହୁ ସମ୍ମାନ ଏବଂ ପୁରସ୍କାର ଆଣିଦେଇଛି । ତନ୍ମଧ୍ୟରେ ୧୯୭୨ରେ କଟକର ମଞ୍ଜୁଶ୍ରୀ ପ୍ରତିଷ୍ଠାନ ତରଫରୁ 'ମଞ୍ଜୁଶ୍ରୀ' ଉପାଧି ଓ ୧୯୭୫ ମସିହାରେ ନୃତ୍ୟ, ସଙ୍ଗୀତ ଏବଂ ନାଟକ ପ୍ରଯୋଜକ ଭାବରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଅନ୍ୟତମ । ଏତଦ୍‌ବ୍ୟତୀତ ଶ୍ରୀ ପଣ୍ଡା ଗଞ୍ଜାମ ସାହିତ୍ୟ ସମ୍ମିଳନୀ, ବ୍ରହ୍ମପୁରର କଳା ମଣ୍ଡଳ, ୧୯୭୬ରେ କଟକ କଳା ବିକାଶ କେନ୍ଦ୍ର ଏବଂ ଓଡ଼ିଶା ଦାସକାଠିଆ ପରିଷଦ ଦ୍ଵାରା ସମ୍ମାନିତ ଓ ଉତ୍କଳ ପାଠକ ସମାଜ ଦ୍ଵାରା 'ମଞ୍ଜୁନିଧି' ଉପାଧି ପ୍ରାପ୍ତ । ବିଜୟନଗରମ୍‌ର ଗୀତ ନୃତ୍ୟ କଳା ମନ୍ଦିର ଶ୍ରୀ ପଣ୍ଡାଙ୍କୁ ତାଙ୍କର ଅମର ନୃତ୍ୟ ସାହିତ୍ୟ ପ୍ରତିଭା ନିମନ୍ତେ 'ନୃତ୍ୟାଗ୍ରଣୀ' ଉପାଧିରେ ଭୂଷିତ କରିବା ସଙ୍ଗେ ସଙ୍ଗେ ୧୯୮୭-୮୭ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ପଣ୍ଡାଙ୍କର ଓଡ଼ିଶା ରଙ୍ଗମଞ୍ଚ ଏବଂ ନାଟ୍ୟ ଜଗତ ନିମନ୍ତେ ଅବଦାନକୁ ସ୍ୱୀକୃତି ଦେଇ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରି ଅଛନ୍ତି ।

●



## ଶ୍ରୀ ଦୟାସାଗର ପଣ୍ଡା

**ଅସ୍ତମଲ୍ଲ, ସମ୍ବଲପୁର**

**ଜନ୍ମ--୧୯୦୩ ମସିହା**

ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଲୋକନୃତ୍ୟ (ସମ୍ବଲପୁରୀ) କଳାକାର ଶ୍ରୀ ଦୟାସାଗର ପଣ୍ଡା ୧୯୦୩ ମସିହାରେ ସମ୍ବଲପୁର ଜିଲ୍ଲାର ଅସ୍ତମଲ୍ଲ ଗ୍ରାମରେ ସ୍ୱର୍ଗୀୟ ଗଣେଶରାମ ପଣ୍ଡାଙ୍କ ପୁତ୍ର ରୂପେ ଏକ କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରାରମ୍ଭିକ ଶିକ୍ଷା ଲାରମ୍ବା ଗ୍ରାମ୍ୟ ବିଦ୍ୟାଳୟରେ ମିଡ଼ଲ୍ ଭର୍ଣ୍ଣାକୁଲର୍ ପର୍ଯ୍ୟନ୍ତ ହୋଇଥିଲା । ଅଠର ବର୍ଷ ବୟସରେ ତାଙ୍କର ବିବାହ ହୋଇଥିଲା ।

ପାଠ ଛାଡ଼ିଲା ପରେ ଶ୍ରୀ ପଣ୍ଡା ଗଞ୍ଜାମ ଜିଲ୍ଲାର ଲୀଳା ଓ ସଙ୍ଗୀତ ଦଳ ସହିତ ବୁଲି ବିଭିନ୍ନ ସ୍ଥାନରେ ନିଜର କଳା କୃତିତ୍ୱ ପ୍ରଦର୍ଶନ କରିଥିଲେ । ପରେ ନିଜର ଏକ ନାଟକ ଦଳ ଗଠନ କରିବା ମାନସରେ ସେ ନିଜ ଗ୍ରାମକୁ ଫେରି ଆସିଥିଲେ । ସେହି ସମୟଠାରୁ ଦୀର୍ଘ ପାଠିଏ ବର୍ଷ ଧରି ଶ୍ରୀ ପଣ୍ଡା ଓଡ଼ିଶାର ପଶ୍ଚିମାଞ୍ଚଳ ତଥା ମଧ୍ୟ ପ୍ରଦେଶର ଉପାନ୍ତ ଓଡ଼ିଆ ଅଞ୍ଚଳରେ ଯାତ୍ରା, ଲୀଳା, ସୁଆଙ୍ଗ, ଗୀତିନାଟ୍ୟ ଆଦି ପ୍ରଦର୍ଶନ କରି ପ୍ରତ୍ୟେକ କଳାପ୍ରେମୀ ଦର୍ଶକ ନିକଟରେ ପ୍ରେରଣାର ଉତ୍ସ ହୋଇପଡ଼ିଛନ୍ତି । ନିଜର ବ୍ୟକ୍ତିଗତ ପ୍ରଚେଷ୍ଟାରେ ବହୁ ଗ୍ରାମ୍ୟକବିଙ୍କ ଲିଖିତ ରଚନାବଳୀ ସବୁ ସଂଗ୍ରହ କରି ସେ ସବୁକୁ ଲୋକନୃତ୍ୟ ମାଧ୍ୟମରେ ଲୋକଲୋଚନକୁ ଆଣି ପାରିଛନ୍ତି । ତନ୍ମଧ୍ୟରୁ 'ସୁଭଦ୍ରା ହରଣ', 'ହରିଶ୍ଚନ୍ଦ୍ର ଲୀଳା', 'କର୍ଣ୍ଣଲୀଳା', 'ଶବରଲୀଳା', 'ସୌଦାଗରଲୀଳା', ଆଦି ଲୋକନାଟ୍ୟ ଏବଂ ଲୀଳାମାନ ତାଙ୍କରି ପ୍ରଚେଷ୍ଟାରେ ହିଁ ସଂଗୃହୀତ ଏବଂ ସଙ୍କଳିତ ହୋଇଛି । ଏଇସବୁକୁ କଳାତ୍ମକ ଏବଂ ବ୍ୟବସାୟିକ ଭିତ୍ତିରେ ନୂଆ ରୂପଦେଇ ପ୍ରଦର୍ଶନ କରିବା ଥିଲା ତାଙ୍କ ଜୀବନର ମୂଳ ଲକ୍ଷ୍ୟ ଓ ଏଥିରେ ସେ ଖୁବ୍ ଉତ୍ତମଭାବେ ସଫଳତା ମଧ୍ୟ ଲାଭ କରିଥିଲେ । ତ୍ୟାଗ ଓ ନିଷ୍ଠାର ଜ୍ୱଳନ୍ତ ପ୍ରତୀକ ଶ୍ରୀ ପଣ୍ଡା ନିଜେ ନିଃସନ୍ତାନ । ନିଜର ପିତୃଦତ୍ତ ଏବଂ ସ୍ୱଉପାର୍ଜିତ ସମ୍ପତ୍ତିସବୁ ସେ କଳାର ଉନ୍ନତି ପାଇଁ ହିଁ ବିନିଯୋଗ କରିଅଛନ୍ତି । ଶ୍ରୀ ପଣ୍ଡା ବିଭିନ୍ନ ଜାତି ଓ ବର୍ଣ୍ଣରୁ ଅସହାୟ ପୁଅ ଓ କନ୍ୟା ଗ୍ରହଣ କରି

ସେମାନଙ୍କୁ ନୃତ୍ୟ ସଙ୍ଗୀତ ଶିକ୍ଷା ଦେଇ, ସ୍କୁଲ କଲେଜରେ ପାଠ ପଢ଼ାଇ, ସେମାନଙ୍କୁ ସମାଜରେ ପ୍ରତିଷ୍ଠିତ କରାଇଅଛନ୍ତି ।

ଶ୍ରୀ ପଣ୍ଡାଙ୍କର ଓଡ଼ିଆ ନାଟ୍ୟ ସାହିତ୍ୟ ଏବଂ ଲୋକନୃତ୍ୟ ପ୍ରତି ବିଶେଷ ଅବଦାନକୁ ସ୍ୱୀକୃତି ଦେଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ୧୯୮୬-୮୭ ବର୍ଷ ନିମନ୍ତେ ସମ୍ମାନିତ ଏବଂ ପୁରସ୍କୃତ କରିଅଛନ୍ତି । ଶ୍ରୀ ପଣ୍ଡା ଆଜି ବୃଦ୍ଧ ବୟସରେ ଉପନୀତ ହୋଇ ମଧ୍ୟ ନିଜର ଶାରୀରିକ ଦୁର୍ବଳତା ସତ୍ତ୍ୱେ ମାନସିକ ସ୍ଥିରତା ହରାଇ ନାହାନ୍ତି । ଏବେ ମଧ୍ୟ ବହୁ ନାଟ୍ୟସଂସ୍ଥା ସହ ସେ ଓତଃପ୍ରୋତ ଭାବେ ଜଡ଼ିତ ।

ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ଧରି ଯାତ୍ରା, ଲୀଳା, ସୁଆଙ୍ଗ ଓ ଲୋକନୃତ୍ୟ ମାଧ୍ୟମରେ ଓଡ଼ିଶାର ମୁଖ୍ୟତଃ ପଲ୍ଲୀବେଲାକୁ ମୁଖରିତ କରିଥିବା ଶ୍ରୀ ଦୟାସାଗର ପଣ୍ଡା ଓଡ଼ିଶାବାସୀଙ୍କ ନିକଟରେ ସଦା ସ୍ମରଣୀୟ ହୋଇ ରହିବେ ।

●



## ଶ୍ରୀ ବଟକୃଷ୍ଣ ସେଣ
ଲମ୍ବୋଦରପୁର, ପୁରୀ

ଜନ୍ମ—୧୯୨୨, ଫେବୃଆରୀ ୧୧

ଓଡ଼ିଶୀ ନୃତ୍ୟଶୈଳୀର ଅନ୍ୟତମ ଗୁରୁ ଶ୍ରୀ ବଟକୃଷ୍ଣ ସେଣ ୧୯୨୨ ମସିହା ଫେବୃଆରୀ ୧୧ ତାରିଖରେ ପୁରୀ ଜିଲ୍ଲାର ବାଲିଗାଁ ନିକଟସ୍ଥ ଲମ୍ବୋଦରପୁର ଗ୍ରାମରେ ଏକ କୃଷକ ପରିବାରରେ ସ୍ୱର୍ଗତ ସହଦେବ ସେଣଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । ଗାଁ ଚଟଶାଳୀରେ ପଢ଼ୁଥିବା ସମୟରେ ସେ ପ୍ରାକୃତିକ ସୌନ୍ଦର୍ଯ୍ୟ ଆଡ଼କୁ ବିଶେଷ ଆକର୍ଷଣ ଅନୁଭବ କରୁଥିଲେ । ଏହି ସମୟରେ କଟକ ଜିଲ୍ଲାର ବରୁଁଆ ହରିପୁର ଯାତ୍ରାଦଳ ତାଙ୍କ ଗ୍ରାମରେ ଯାତ୍ରା ପ୍ରଦର୍ଶନ କରିବା ସମୟରେ ଶ୍ରୀ ସେଣ ନୃତ୍ୟ ଓ ଅଭିନୟ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇଉଠିଲେ । ପାଖ ଗ୍ରାମର ସ୍ୱର୍ଗତ ଲିଙ୍ଗରାଜ ନନ୍ଦ ଏବଂ ଚକ୍ରପାଣି ଦାସଙ୍କ ପ୍ରଚେଷ୍ଟାରେ ତାଙ୍କ ଗ୍ରାମରେ ଗଠିତ ନାଟ୍ୟଦଳ ଅନ୍ନପୂର୍ଣ୍ଣା ନାଟ୍ୟମଣ୍ଡଳୀ ନାମରେ ପରିଚିତ ହେଲା ଏବଂ ସମୟକ୍ରମେ ଏହି ନାଟ୍ୟମଣ୍ଡଳୀ ଅନ୍ନପୂର୍ଣ୍ଣା ଥିଏଟର ନାମରେ ନାମିତ ହେଲା । ମାତ୍ର ୮ ବର୍ଷ ବୟସରେ ଶ୍ରୀ ସେଣ ଏହି ରଙ୍ଗମଞ୍ଚରେ ଶିଶୁ କଳାକାର ଭାବରେ ଯୋଗଦେଲେ । ପରବର୍ତ୍ତୀ ଜୀବନରେ ଶ୍ରୀ ସେଣ ସ୍ୱର୍ଗତ ଲିଙ୍ଗରାଜ ନନ୍ଦଙ୍କ ଦ୍ୱାରା ଗଠିତ ଓ ପରିଚାଳିତ ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ରଙ୍ଗମଞ୍ଚରେ ଯୋଗ ଦେଇ ନିଜର କଳାକାର ଜୀବନର ପ୍ରକୃତ ଅସ୍ମାରମ୍ଭ କଲେ । ଏହି ନାଟ୍ୟ ଦଳରେ ସେ ନାଚିବା, ଗାଇବା ଏବଂ ବାଦ୍ୟସବୁ ବଜାଇବା ଶିକ୍ଷା କରିଥିଲେ । ଏହି ସମୟରେ ପ୍ରସିଦ୍ଧ ନୃତ୍ୟଗୁରୁ ଦୟାଲ୍‌ଶରଣ ଆସି ଏ ଦଳରେ ନୃତ୍ୟଗୁରୁ ଭାବରେ ରହିବାପରେ ଶ୍ରୀ ସେଣ ତାଙ୍କ ନିକଟରୁ ନୃତ୍ୟଶିକ୍ଷା କରି ନିଜେ ପ୍ରଥମେ ତାଙ୍କର ନୃତ୍ୟ 'ଶିବତାଣ୍ଡବ' ମଞ୍ଚରେ ପ୍ରଦର୍ଶନ କରି ବହୁ ପ୍ରଶଂସା ଲାଭ କରିଥିଲେ । କ୍ରମେ ସେ ନୃତ୍ୟକଳାରେ ପ୍ରବୀଣ ହୋଇଉଠିଲେ । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ବାରବର୍ଷ କାର୍ଯ୍ୟ କରିବା ପରେ ଶ୍ରୀ ସେଣ ଜନତା ରଙ୍ଗମଞ୍ଚରେ ଯୋଗଦାନ କରି ତହିଁରେ ମୁଖ୍ୟତଃ

ନୃତ୍ୟ ପରିଚାଳନା ଦାୟିତ୍ୱରେ ରହିଥିଲେ ମଧ୍ୟ ଗୋଟିପୁଅ ନାଚ ଏବଂ ମାହାରୀ ନୃତ୍ୟ ଶୈଳୀର ଗବେଷଣା କାର୍ଯ୍ୟରେ ସର୍ବଦା ରତ ରହୁଥିଲେ ।

ଓଡ଼ିଶା ବାହାରେ ପ୍ରଥମଥର ମାର୍ଚ୍ଚ ଦିଲ୍ଲୀରେ ମାଇକ ନୃତ୍ୟ ପ୍ରଦର୍ଶନ କରି ଶ୍ରୀ ସେଣ ବହୁ ପ୍ରଶଂସା ଲାଭ କରିଥିଲେ । ପରେ ସେ ଭାରତଦେଶର ବହୁ ସ୍ଥାନରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରିଥିଲେ । ଓଡ଼ିଶୀ ନୃତ୍ୟର ଉନ୍ନତି ପାଇଁ ଶ୍ରୀ ସେଣ ନିଜ ପ୍ରଚେଷ୍ଟାରେ 'ନୃତ୍ୟଭାରତୀ' ନାମକ ଏକ ଅନୁଷ୍ଠାନ କଟକରେ ଗଠନ କରିଥିଲେ ମଧ୍ୟ ତାହା ବେଶୀଦିନ ସ୍ଥିତି ରହିପାରି ନ ଥିଲା । ହତାଶ ନ ହୋଇ ଶ୍ରୀ ସେଣ ତାଙ୍କର ଅନ୍ୟ ବନ୍ଧୁମାନଙ୍କ ସହାୟତାରେ ପିଠାପୁର (କଟକ) ଠାରେ ଏକ ପାଠାଗାର ସ୍ଥାପନ କରିଥିଲେ ଏବଂ କାଳକ୍ରମେ ଏହା 'ଉତ୍କଳ ନୃତ୍ୟକଳା ମଣ୍ଡପ' ନାମରେ ନାମିତ ହୋଇ ଓଡ଼ିଶୀ ନୃତ୍ୟ ସଙ୍ଗୀତର ପ୍ରଚାର ଏବଂ ପ୍ରସାରଧାରାକୁ ବର୍ଦ୍ଧିତ କରିବାରେ ସାହାଯ୍ୟ କରିଚାଲିଛି । ଶ୍ରୀ ସେଣ ନିଜେ ଏହି ଅନୁଷ୍ଠାନର ଅଧ୍ୟକ୍ଷ ଥିଲେ ଏବଂ ୧୯୬୦ରେ ତତ୍କାଳୀନ ରାଜ୍ୟପାଳଙ୍କ ନିକଟରୁ 'ନୃତ୍ୟଗୁରୁ' ଉପାଧି ପ୍ରାପ୍ତ ହୋଇଥିଲେ । ଏହି କଳାକେନ୍ଦ୍ରର ଛାତ୍ରଛାତ୍ରୀମାନଙ୍କ ସହ ୧୯୬୬ରେ ମଣ୍ଟ୍ରିଅଲ୍‌ଠାରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରି ସେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ଏହି କଳାମଣ୍ଡପର ଅନ୍ୟ ଏକ ଶାଖାରୂପେ 'କଳାଶ୍ରୀ' ଥିଏଟର ଆତ୍ମପ୍ରକାଶ କରି ୧୯୭୬ ପର୍ଯ୍ୟନ୍ତ ବହୁ ନାଟକ ଦର୍ଶକମାନଙ୍କୁ ଉପହାର ଦେଇଥିଲା ।

ଓଡ଼ିଶାର ନିଜସ୍ୱ କଳାର ଉତ୍‌ଥାନ କ୍ଷେତ୍ରରେ ଗୁରୁଶ୍ରୀ ବଟକୃଷ୍ଣ ସେଣଙ୍କର ଜୀବନବ୍ୟାପୀ ସାଧନା ଓ ସଂଗ୍ରାମ ବହୁମୁଖୀ ଓ ପ୍ରଶଂସାର୍ହ । ତାଙ୍କର ଓଡ଼ିଶୀ ନୃତ୍ୟ କଳା ପ୍ରତି ବିଶେଷ ଅବଦାନକୁ ସ୍ୱୀକୃତି ଦେଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୮୬-୮୭ ବର୍ଷରେ ଶ୍ରୀ ସେଣଙ୍କୁ ସମ୍ବର୍ଦ୍ଧନା ଓ ପୁରସ୍କାର ଦେଇଛନ୍ତି ।



## ଶ୍ରୀ ଦୀନବନ୍ଧୁ ଦାସ

**ଚଣାହାଟ, ପୁରୀ ଜିଲ୍ଲା**

**ଜନ୍ମ—୧୯୧୯ ମସିହା**

ଓଡ଼ିଶା ରଙ୍ଗମଞ୍ଚର ବିଶିଷ୍ଟ ହାସ୍ୟ ଅଭିନେତା ଓ ଏକଦା ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରସାରିତ 'କୃଷିସଂସାର' କାର୍ଯ୍ୟକ୍ରମର ପ୍ରସିଦ୍ଧ 'ମଙ୍ଗୁଳିଭାଇ' ଓରଫ ଶ୍ରୀ ଦୀନବନ୍ଧୁ ଦାସ ୧୯୧୯ ରେ ପୁରୀ ଜିଲ୍ଲାର ଚଣାହାଟ ଗ୍ରାମର ହାଟୁଆସାହିରେ ଧର୍ମାତ୍ମା ୰ ହାଡ଼ିବନ୍ଧୁ ଦାସଙ୍କର କନିଷ୍ଠ ସନ୍ତାନ ରୂପେ ଜନ୍ମଲାଭ କରିଥିଲେ । ମାତ୍ର ପାଞ୍ଚବର୍ଷ ବୟସରୁ ପାଲା କୀର୍ତ୍ତନ ଏବଂ ଗାଁ ଭାଗବତ ଟୁଙ୍ଗୀରୁ ଆରମ୍ଭ କରି ଅନ୍ୟାନ୍ୟ ସାଂସ୍କୃତିକ ଅନୁଷ୍ଠାନରେ ଯୋଗଦାନ କରିବା ତାଙ୍କର ଜନ୍ମଗତ ସ୍ୱଭାବ ଥିଲା । ପ୍ରଖର ସ୍ମରଣ ଶକ୍ତି ବଳରେ ଶୁଣୁଥିବା ସଙ୍ଗୀତ ସବୁକୁ ମନେରଖି ନିଜର ସ୍ୱଭାବସୁଲଭ ଲଳିତ କଣ୍ଠରେ ଗାନ କରି ଗ୍ରାମବାସୀମାନଙ୍କ ନିକଟରେ ଅତ୍ୟନ୍ତ ପ୍ରିୟ ହୋଇଥିଲେ । ଏହି ସମୟରେ ତାଙ୍କ ଗ୍ରାମ ଚଣାହାଟ କୀର୍ତ୍ତନମଣ୍ଡଳୀରେ ୰ ମଧୁସୂଦନ ଦାସ ଏବଂ ୰ ଗୌର ସୁନ୍ଦର ଦାସ ଗୋସ୍ୱାମୀଙ୍କ ଶିଷ୍ୟତ୍ୱ ଗ୍ରହଣ କରି, ଗାୟକ ଭାବରେ ଯୋଗଦାନ କଲେ ଏବଂ କ୍ରମେ ଏହି ଦଳର ପ୍ରଧାନ ଗାୟକ ଭାବରେ ଅଜସ୍ର ପ୍ରଶଂସା ଲାଭ କଲେ । ପରେ ସେ ୧୯୬୫ରେ ପୁରୀର ୰ ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସଦଳରେ ଯୋଗଦେଇ କିଛି କାଳ କାର୍ଯ୍ୟ କରିବା ପରେ, ପୁରୀର ରାମଚଣ୍ଡୀ ସାହିର 'ଜଗନ୍ନାଥ କ୍ଲବ୍'ରେ ଯୋଗଦାନ କରି ନାଟକ 'ସୁଦାମା' ଏବଂ 'ବିଲ୍ୱମଙ୍ଗଳ'ରେ ପ୍ରସିଦ୍ଧ ନଟ ୰ କୃଷ୍ଣପଦ ମୁଖାର୍ଜି ଏବଂ ୰ ଶିଶିରଘୋଷଙ୍କ ସହ ଅଭିନୟ କରି ନିଜର ମଞ୍ଚଅଭିନୟ ଜୀବନର ଭିତ୍ତି ସ୍ଥାପନା କରିଥିଲେ । ପୁନଶ୍ଚ ୧୯୬୬ରେ 'ରାଧାରମଣ ରାସୋତ୍ସବ ରାସଦଳ'ରେ ଯୋଗଦାନ କରି ତହିଁର ଶିକ୍ଷକ ୰ କବିଚନ୍ଦ୍ରଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଏହି ସମୟରେ ସେ ତାଙ୍କର ବହୁ ପରିଚିତ ନାମ 'ଟିମା' ୰ କବିଚନ୍ଦ୍ରଙ୍କ ନିକଟରୁ ପ୍ରାପ୍ତ ହୋଇଥିଲେ । ଏହି ରାସଦଳର ପତନ ପରେ ଶ୍ରୀ ଦାସ ୰ କବିଚନ୍ଦ୍ର କାଳୀଚରଣଙ୍କ ପ୍ରତିଷ୍ଠିତ 'ସାକ୍ଷୀଗୋପାଳ ନାଟ୍ୟ ସଂଘ'ରେ ଯୋଗ ଦାନ କଲେ । ଏହି ସଂସ୍ଥାର ଅଭିନୟ ଅତ୍ୟନ୍ତ ମାର୍ଜିତ ଏବଂ ରୁଚିସମ୍ପନ୍ନ ଥିଲା । ଏହି ଦଳପ୍ରଯୋଜିତ ସମସ୍ତ ରାସଲୀଳାର ସେ 'ମଧୁମଙ୍ଗଳ' ଭୂମିକାରେ ଅଭିନୟ କରି ନିଜର ହାସ୍ୟରସ ପରିବେଷଣ ଭଙ୍ଗୀରେ ଦର୍ଶକମାନଙ୍କର ମନୋରଞ୍ଜନ କରୁଥିଲେ ।

ପରେ ଶ୍ରୀ ଦାସ ସ୍ୱତନ୍ତ୍ର ନାଟ୍ୟଦଳ ଓଡ଼ିଶା ଥିଏଟର, ଅନ୍ନପୂର୍ଣ୍ଣା ବି' ଗ୍ରୁପ ଓ ଜନତା-ରଙ୍ଗମଞ୍ଚରେ ଦୀର୍ଘଦିନ ଅଭିନୟ କରି ଜଣେ ବିଶିଷ୍ଟ ହାସ୍ୟ ଅଭିନେତା ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ୧୯୫୩ ମସିହାରେ ଶ୍ରୀ ଦାସ ଆକାଶବାଣୀ କଟକ କେନ୍ଦ୍ରରେ ସ୍ୱୀକୃତ କଳାକାର ଭାବରେ ଏବଂ କୃଷିପରିବାର କାର୍ଯ୍ୟକ୍ରମ ପରିଚାଳକ ଭାବରେ ତହିଁରେ ଅଂଶଗ୍ରହଣ କରି 'ମଙ୍ଗୁଳିଭାଇ' ଭାବରେ ଓଡ଼ିଶାର ଘରେ ଘରେ ପରିଚିତ ହୋଇଥିଲେ । ଅତୀତରେ ରଙ୍ଗମଞ୍ଚଖ୍ୟାତ 'ଟିମା' ଆକାଶବାଣୀର 'ମଙ୍ଗୁଳିଭାଇ' ଭାବରେ ପ୍ରସିଦ୍ଧି ଲାଭକଲେ । ସେ ହାସ୍ୟ ଅଭିନେତା ଭାବରେ ଓଡ଼ିଆ ଚଳଚ୍ଚିତ୍ର 'ନୂଆବୋଉ'ରେ କମ୍ପାଉଣ୍ଡର ଭୂମିକାରେ ଯେଉଁ ଉନ୍ନତମାନର ହାସ୍ୟରସ ପରିବେଷଣ କରିଛନ୍ତି ତାହା ଏକ କଥାରେ ଅନିବଦ୍ୟ । ଶ୍ରୀ ଦାସ ନିଜର ସମ୍ପୂର୍ଣ୍ଣ ଜୀବନୀ ଲେଖି ରଖିଥିଲେ ମଧ୍ୟ ତାହା ଏ ପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ ।

କଳାର ବନ୍ଧୁର ପଥରେ ପଲ୍ଲୀଜୃତି କଳାକୁ ବଞ୍ଚାଇ ତାକୁ ପ୍ରତିଷ୍ଠା ଏବଂ ପ୍ରାଣ ଦେବାରେ ଶ୍ରୀ ଦାସ ଯେଉଁ ପରାକାଷ୍ଠା ଦେଖାଇଅଛନ୍ତି ତାହା ତାଙ୍କୁ ଓଡ଼ିଶାର କଳାପ୍ରେମୀ ସୁଧିବୃନ୍ଦଙ୍କ ମାନସ ମଧ୍ୟରେ ଚିରଦିନ ଅମର କରି ରଖିବ । ଓଡ଼ିଶାର ରଙ୍ଗମଞ୍ଚ ଓ ନାଟ୍ୟକଳାର ଉତ୍କର୍ଷ ସାଧନ ନିମନ୍ତେ ତାଙ୍କର ବିଶେଷ ଅବଦାନକୁ ବିଚାରକରି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀଯୁକ୍ତ ଦୀନବନ୍ଧୁ ଦାସଙ୍କୁ ୧୯୮୮-୮୯ ବର୍ଷରେ ଏକାଡେମୀ ତରଫରୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।



## ଶ୍ରୀଯୁକ୍ତ ଚନ୍ଦ୍ରଧର ସାହୁ
### ଢିଅସାହି, ଗୋପୀନାଥପୁର, କଟକ

### ଜନ୍ମ—୧୯୧୬, ଏପ୍ରିଲ୍ ୭

ଶାସ୍ତ୍ରୀୟ ପଖାଉଜ ବାଦନ ପରଂପରାର ଜଣେ କୃତବିଦ୍ୟ ବାଦ୍ୟଶିଳ୍ପୀରୂପେ ଶ୍ରୀ ଚନ୍ଦ୍ରଧର ସାହୁ ପ୍ରତିଷ୍ଠିତ । ତାଙ୍କର ଜନ୍ମ ୧୯୧୬ ମସିହା ଏପ୍ରିଲମାସ ୭ ତାରିଖ ଦିନ କଟକ ଜିଲ୍ଲା ଅନ୍ତର୍ଗତ ଢିଅସାହି ଗୋପୀନାଥପୁର ଠାରେ ହୋଇଥିଲା । ତାଙ୍କ ପିତାଙ୍କ ନାମ ଥିଲା ୰ ସୁଦର୍ଶନ ସାହୁ । ତାଙ୍କ ପିତା ଜଣେ ଗୁଣୀ ସଙ୍ଗୀତପ୍ରେମୀ ବ୍ୟକ୍ତି ଥିଲେ ଏବଂ ତାଙ୍କର ପ୍ରଭାବ ଶିଶୁ ଚନ୍ଦ୍ରଧରଙ୍କୁ ସଙ୍ଗୀତ ମଧ୍ୟକୁ ଟାଣିନେଇଥିଲା । କିଶୋର ଅବସ୍ଥାରୁ ଶ୍ରୀ ସାହୁ ନବଦ୍ୱୀପ କୀର୍ତ୍ତନ ଆଡ଼କୁ ବିଶେଷ ଆକୃଷ୍ଟ ହୋଇଥିଲେ ଏବଂ ନିଜ ଜେଜେ ୰ ନୃସିଂହ ସାହୁଙ୍କ ନିକଟରୁ ଖୋଲବାଦନ ଶିକ୍ଷା କରିଥିଲେ । ପରେ କଣ୍ଠସଙ୍ଗୀତ ପ୍ରତି ଆକୃଷ୍ଟ ହୋଇ ନିଜ କକା ୰ ଭୂପତି ସାହୁଙ୍କ ନିକଟରୁ କଣ୍ଠସଙ୍ଗୀତ ସହ ତବଲାବାଦନ ଶିକ୍ଷା କରିଥିଲେ ଏବଂ ନିଜ ଅଜା ଦୈତାରି ପାତ୍ରଙ୍କ ନିକଟରୁ ପ୍ରଥମେ ପଖାଉଜ ଶିକ୍ଷା କରିଥିଲେ । ପରବର୍ତ୍ତୀ ସମୟରେ ୧୯୩୪ ମସିହାରୁ ୧୯୬୫ ମସିହା ପର୍ଯ୍ୟନ୍ତ ଶ୍ରୀ ସାହୁ ନିଷ୍ଠାର ସହ ଗାୟକରତ୍ନ ୰ ସିଂହାରି ଶ୍ୟାମସୁନ୍ଦର କରଙ୍କ ନିକଟରୁ ଶାସ୍ତ୍ରୀୟ ପଖାଉଜ ବାଦନ ଶିକ୍ଷା କରିଥିଲେ । ସିଂହାରିଙ୍କର ପ୍ରରୋଚନାରେ ସେ ପଖାଉଜ ବାଦନରେ ସଙ୍ଗୀତର ସର୍ବୋଚ୍ଚ ଡିଗ୍ରୀ (M.Mus.), ଅଖିଳ ଭାରତୀୟ ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳୀ କର୍ତ୍ତୃକ ଆୟୋଜିତ ପରୀକ୍ଷାରେ ସଫଳ ହୋଇ ଲାଭକରିଥିଲେ । ଏଥିପୂର୍ବରୁ ବାଦ୍ୟବିନୋଦ ୰ କ୍ଷେତ୍ରମୋହନ କର, ପଦ୍ମଭୂଷଣ ଜ୍ଞାନପ୍ରକାଶ ଘୋଷଙ୍କ ନିକଟରୁ ତବଲା ଶିକ୍ଷାକରି ଗାନ୍ଧର୍ବ - ମଣ୍ଡଳରୁ 'ସଙ୍ଗୀତ ବିଶାରଦ' ଉପାଧି ଲାଭ କରିଥିଲେ । ପ. ଏ. ଏନ୍ ଗୁଂଜକର ଏବଂ ପ. ରାମଶଙ୍କର ଦାସ ପାଗଲ ଦାସ ମହାରାଜଙ୍କ ପଖାଉଜ ବାଦନର ଶାସ୍ତ୍ରୀୟ ଶୈଳୀ ତାଙ୍କୁ ବିଶେଷ ଭାବରେ ପ୍ରଭାବିତ କରି ପାରିଥିଲା ।

ଅଧୁନା ପାଖାଉଜ ବାଦନର ଗୁରୁ ଭାବରେ ଶ୍ରୀ ସାହୁ ପୁରୀ ସହରର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନରେ ଛାତ୍ରମାନଙ୍କୁ ଶାସ୍ତ୍ରୀୟ ପାଖାଉଜ ବାଦନ ଏବଂ ତବଲ୍ ବାଦନ ଶିକ୍ଷା ଦେଉଅଛନ୍ତି । ଜଣେ ସଫଳ ପଖାଉଜ ଓସ୍ତାଦ୍ ଭାବରେ ବାଦ୍ୟକଳା ଏବଂ ସଙ୍ଗୀତ ଜଗତକୁ ତାଙ୍କର ଅବଦାନ ନିମନ୍ତେ ୧୯୮୮-୮୯ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧିତ କରିଅଛନ୍ତି ।

●

## ଶ୍ରୀ ସତ୍ୟାନନ୍ଦ ବିଶୋୟୀ

ବୁଢ଼ାପଙ୍କ, ଢେଙ୍କାନାଳ

ଜନ୍ମ—୧୯୦୭ ମସିହା



ଓଡ଼ିଶାର ଅନ୍ୟତମ ଲୋକନୃତ୍ୟ ପାଇକ-ନୃତ୍ୟର ପ୍ରବୀଣଗୁରୁ ଶ୍ରୀ ସତ୍ୟାନନ୍ଦ ବିଶୋୟୀଙ୍କ ଜନ୍ମ ୧୯୦୭ ମସିହାରେ ଢେଙ୍କାନାଳ ଜିଲ୍ଲାର ବୁଢ଼ାପଙ୍କଠାରେ ହୋଇଥିଲା । ଶ୍ରୀ ବିଶୋୟୀ ମାତ୍ର ଦଶବର୍ଷ ବୟସରେ ତାଙ୍କ ଗ୍ରାମର ଆଖଡ଼ା ଘରେ ' ଗୁରୁ ପାଣ୍ଡବ ସାମଲଙ୍କ ତତ୍ତ୍ୱାବଧାନରେ ପ୍ରଥମେ ପାଇକନାଚ ଶିକ୍ଷା ଆରମ୍ଭ କରିଥିଲେ । ସେ ଜୀବନରେ ଅନେକ ସମରକୌଶଳ ନିପୁଣ ଗୁରୁମାନଙ୍କ ନିକଟରୁ ଶିକ୍ଷା କରିଥିଲେ । ସେ ତାଙ୍କର ପ୍ରଥମଗୁରୁଙ୍କ ନିକଟରୁ ପାଆ, ଫାଡ଼ି, ଭେଟ ଓ ବାଡ଼ି ଖେଳ, ବୁଢ଼ାପଙ୍କ ଗଡ଼ର ୰ ବିଶ୍ୱନାଥ ଗଡ଼ନାୟକଙ୍କ ନିକଟରୁ ତରବାରି ଚାଳନା, ଶରକମଣି, ଦାଆବାଡ଼ି, ମଲ୍ଲଯୁଦ୍ଧ ଏବଂ ପଞ୍ଝାକୁସ୍ତି, ' ମଥୁରା ସାମଲଙ୍କଠାରୁ ବାଣା, ବିଲଣ୍ଡି ଏବଂ ତାଳଚେରର ଷଡ଼ଗ୍ରାମ ନିବାସି ୰ ଗୁରୁ ବନମାଳୀ ଦାସଙ୍କ ଠାରୁ ଢାଲ, ଖଣ୍ଡା, ବର୍ଚ୍ଛା, ଇନ୍ଦ୍ରବଳୁଳି, କମାଣ ଓ ଚକ୍ରବ୍ୟୂହ ଇତ୍ୟାଦି ରଣକୌଶଳ ଶିକ୍ଷା କରି ତହିଁରେ ପୂର୍ଣ୍ଣତା ଲାଭ କରିଥିଲେ ।

ଏହିସମୟରେ ଶ୍ରୀ ବିଶୋୟୀ ବିଭିନ୍ନ ଗଡ଼ଜାତ ରାଜଦରବାରରେ ନିଜର ରଣକୌଶଳ ଏବଂ ପାଇକ ନୃତ୍ୟ ପ୍ରଦର୍ଶନକରି ବିଶେଷ ସମ୍ମାନ ଏବଂ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ତାଳଚେର ଏବଂ ହିନ୍ଦୋଳ ରାଜଦରବାରରେ ସେ 'ପଗଡ଼ି' ପ୍ରାପ୍ତ ହୋଇଥିଲେ । ରାଜ ଦରବାର ବ୍ୟତୀତ ଶ୍ରୀ ବିଶୋୟୀ ଅନୁଗୁଳଠାରେ ସରକାରୀ ଆୟୋଜିତ ପାଇକ ଖେଳରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ନିଜ ଗ୍ରାମ୍ୟଦଳ ପାଇଁ ସିଲ୍ଡ୍ ଲାଭ କରିଥିଲେ ଓ ଢେଙ୍କାନାଳ ଯୁବକେନ୍ଦ୍ର ତରଫରୁ ଆୟୋଜିତ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ପୁରସ୍କୃତ ହୋଇଥିଲେ । ୧୯୮୮ ରେ ଦିଲ୍ଲୀଠାରେ ନିଜର କଳା ପ୍ରଦର୍ଶନ କରି ଶ୍ରୀ ବିଶୋୟୀ ସେଠାରେ ପ୍ରଶଂସା ଏବଂ ପୁରସ୍କାର ପ୍ରାପ୍ତ ହୋଇଥିଲେ ।

ଓଡ଼ିଶାର 'ଲୋକନୃତ୍ୟ କ୍ଷେତ୍ରରେ ବିଶେଷ ଅବଦାନ ନିମନ୍ତେ ୧୯୮୮-୮୯ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଏ ବିଶିଷ୍ଟ ଶତାୟୁଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଛନ୍ତି । ନିଜ ଜୀବନରେ ଶ୍ରୀ ବିଶୋୟୀ ଅଦ୍ୟାବଧି ପ୍ରାୟ ପନ୍ଦରଟି ଦଳଙ୍କୁ ନିଜ କଳା ଶିକ୍ଷା ଦେଇଅଛନ୍ତି ଏବଂ ଏବେ ମଧ୍ୟ ଯୁବକମାନଙ୍କୁ ପୁରାତନ ପାଇକ ବିଦ୍ୟାରେ ଶିକ୍ଷା ଦେଉଅଛନ୍ତି ।

●

# ସ୍ୱର୍ଗତ ଗଜେନ୍ଦ୍ର ଦାସ

## ଜମ୍ବୁପୁର, କଟକ

## ଜନ୍ମ—୧୮୮୯ ମସିହା



୰ ଗଜେନ୍ଦ୍ର ଦାସ, ଓଡ଼ିଶାର ଅନ୍ୟତମ ଲୋକନାଟ୍ୟ କୁଣ୍ଢେଇ ନାଚର ଜଣେ ବର୍ଷୀୟାନ୍ କଳାକାର । ୧୮୮୯ ମସିହାରେ ତାଙ୍କର ଜନ୍ମ କଟକ ଜିଲ୍ଲାର ଜମ୍ବୁପୁର ଠାରେ ଏକ ପାରମ୍ପରିକ ସୂତ୍ରଧର ପରିବାରରେ ହୋଇଥିଲା । ବାଲ୍ୟକାଳରୁ ବଂଶାନୁକ୍ରମିକ କୁଣ୍ଢେଇ ନାଟକଳା ଶିକ୍ଷାକରି ଶତ ଦୈନ୍ୟତା ମଧ୍ୟରେ ଏହି କଳାକୁ ଉଜ୍ଜୀବିତ ରଖି ଅଛନ୍ତି । କୁଣ୍ଢେଇନାଚର ପରିବେଷଣ କରି ମନୋରଞ୍ଜନ ମାଧ୍ୟମରେ ଗ୍ରାମାଞ୍ଚଳରେ ନୀତିଶିକ୍ଷା ଏବଂ ପୁରାଣ କଥାର ପ୍ରଚାର କରିବା ପାଇଁ ତାଙ୍କର ବୃତ୍ତିକୁ ସେ ଧର୍ମ, ରଙ୍ଗ ଓ ବ୍ରତରୂପେ ଗ୍ରହଣ କରିଛନ୍ତି ।

ଏହି ଏକଶତ ବର୍ଷରୁ ଊର୍ଦ୍ଧ୍ୱ ବର୍ଷୀୟାନ୍ ଶିଳ୍ପୀ ନିଜର ଦୃଷ୍ଟିଶକ୍ତି ହରାଇ ବସିଥିଲେ ମଧ୍ୟ ତାଙ୍କର ଏକମାତ୍ର କନ୍ୟା ବାସନ୍ତୀକୁ ଏହି କୁଣ୍ଢେଇ ନାଟ କଳାରେ ଉତ୍ତମ ପ୍ରଶିକ୍ଷଣ ଦେଇ ତାଙ୍କ ଦ୍ୱାରା କୁଣ୍ଢେଇ ନଚାଇବା କାର୍ଯ୍ୟ କରାଇ ନିଜେ ତାଙ୍କ ତମ୍ବୁରୁ ବଜାଇ, ଗୀତ ଓ ସଂଳାପ କହି ଏହି କଳାକୁ ଅଦ୍ୟାବଧି ଜୀବିତ ରଖିଅଛନ୍ତି ।

ନିଜ ଜୀବନ କାଳ ମଧ୍ୟରେ ୰ ଦାସ ନିଜ ପ୍ରଦେଶ ତଥା ପ୍ରଦେଶ ବାହାରେ ତାଙ୍କର ଏହି କୁଣ୍ଢେଇନୃତ୍ୟ ପ୍ରଦର୍ଶନ କରି ବହୁ ଖ୍ୟାତି ଅର୍ଜନ କରିଛନ୍ତି । ୧୯୮୮ ମସିହାରେ ମହୀଶୂରର ଓରିଏଣ୍ଟାଲ୍ ଲାଂଗୁଏଜ ଇନଷ୍ଟିଚ୍ୟୁଟ୍ ଠାରେ, ବାଙ୍ଗାଲୋରର କ୍ରାଫ୍ଟ କାଉନ୍ସିଲ୍‌ଠାରେ ଏବଂ ମାନ୍ଦ୍ରାଜର ଆଇ. ଏନ୍.ଟି. ଏ ସି. ଏଚ୍ (INTACH) ଠାରେ ଏହି କଣ୍ଢେଇ ନୃତ୍ୟ ପ୍ରଦର୍ଶନ କରି ସମ୍ମାନିତ ହୋଇଛନ୍ତି । ଏବେ କଲିକତାର ସମ୍ପେନ୍ ଥିଏଟର ଆନୁକୂଲ୍ୟରେ କଣ୍ଢେଇ ନାଟ୍ୟକଳା ପ୍ରଦର୍ଶନ କରି ପଶ୍ଚିମବଙ୍ଗ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଅଛନ୍ତି ।

ଲୋକନାଟ୍ୟ କଳା ନିମନ୍ତେ ତାଙ୍କର ଅସାମାନ୍ୟ ଅବଦାନ ପାଇଁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ତାଙ୍କୁ ୧୯୮୮-୮୯ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରାଯାଇଛି ।

# ସ୍ୱର୍ଗତ ଲୋକନାଥ ପାଲ

ମାର୍କଣ୍ଡେଶ୍ୱର ସାହି, ପୁରୀ

ଜନ୍ମ—୧୯୨୩, ମାର୍ଚ୍ଚ ୨୦



ଓଡ଼ିଶୀ ରାଗ ସଙ୍ଗୀତର ସୁନାମଧନ୍ୟ ଶିଳ୍ପୀ ସଙ୍ଗୀତପ୍ରଭାକର ପଣ୍ଡିତ ଲୋକନାଥ ପାଲ ପୁରୀ ସହରର ମାର୍କଣ୍ଡେଶ୍ୱର ସାହିର ଏକ ମଧ୍ୟବିତ୍ତ ପରିବାରରେ ୧୯୨୩ ମସିହା ମାର୍ଚ୍ଚ ମାସ ୨୦ ତାରିଖରେ ଜନ୍ମଗ୍ରହଣ କରିଥିଲେ । ପିତା ୰ ସଦାଶିବ ପାଲ ପୁରୀ ସହରର ଏକ ଜଣାଶୁଣା ଗାୟକ ଥିଲେ ।

ଶୈଶବାବସ୍ଥାରେ ପିତାଙ୍କୁ ହରାଇ ମାତା ତୁଳସୀ ଦେବୀଙ୍କର ଲାଳନପାଳନରେ ଶ୍ରୀ ପାଲ ବଢ଼ିଥିଲେ । ବାଲ୍ୟାବସ୍ଥାରୁ ସୁଶୀଳ ମାଳତୀ, ଅମର ବିଳାସ ପ୍ରଭୃତି ଗୀତିନାଟ୍ୟ ସବୁକୁ ଦେଖି ଉହିଁର ଗୀତଗୁଡ଼ିକୁ କଣ୍ଠସ୍ଥ କରି ଗାନକରିବା ଥିଲା ତାଙ୍କ ସଙ୍ଗୀତ ସାଧନାର ପ୍ରଥମ ସୋପାନ । ଦାରିଦ୍ର୍ୟାବସ୍ଥା ଯୋଗୁ ମଧ୍ୟଇଂରାଜୀ ସ୍ତର ପରେ ହିଁ ପାଠପଢ଼ାର ପରିସମାପ୍ତି ଘଟିଥିଲା ।

ଏହି ସମୟରେ ଶ୍ରୀ ପାଲ ପୁରୀ ସହରର ପୁରାତନ ଗାୟକମାନଙ୍କ ନିକଟରୁ ଓଡ଼ିଶୀ ଗୀତ ଶିକ୍ଷାକରି ଗାନ କରୁଥିଲେ । ଏହି ସମୟରେ ଗାୟକରତ୍ନ ୰ ସିଂହାରୀ ଶ୍ୟାମସୁନ୍ଦର କରଙ୍କ ସୁନଜରରେ ପଡ଼ି ପୁରୀ କାଳିକାକୋଟଠାରେ ତାଙ୍କ ନିକଟରୁ ବିଧିବଦ୍ଧ ଓଡ଼ିଶୀ ଶାସ୍ତ୍ରୀୟ କଣ୍ଠ ସଙ୍ଗୀତ ଶିକ୍ଷା କରିଥିଲେ । ୧୯୩୯ ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିବା ପରେ ସେ ଯୁଦ୍ଧକାଳୀନ ସଙ୍ଗୀତ ପ୍ରଚାର ବିଭାଗରେ ଚାକିରି କରି ନିଜ କଣ୍ଠରେ ଦୁଇଟି ଯୁଦ୍ଧ ସଙ୍ଗୀତ ହିଜ୍ ମାଷ୍ଟରସ ଭଏସ୍ କମ୍ପାନୀ ଦ୍ୱାରା ରେକର୍ଡ଼ କରାଇଥିଲେ । ଯୁଦ୍ଧ ବିରତିପରେ ଉତ୍କଳ ସଙ୍ଗୀତ ସମାଜରେ ୰ ସିଂହାରୀଙ୍କର ସହକାରୀ ରୂପେ ଯୋଗଦାନ କରିଥିଲେ ଏବଂ ପରେ ପରେ ଭଦ୍ରଖର ବି. ଏମ୍. ବାଗୁରାଇ ଉଚ୍ଚଇଂରାଜୀ ବିଦ୍ୟାଳୟରେ ସଙ୍ଗୀତ ଶିକ୍ଷକ ରୂପେ କାର୍ଯ୍ୟକରି ପ୍ରଖ୍ୟାତ ଶାସ୍ତ୍ରୀୟ କଣ୍ଠସଙ୍ଗୀତ ଶିଳ୍ପୀ ୰ କ୍ଷିତୀଶ ମୈତ୍ରଙ୍କ ନିକଟରୁ ହିନ୍ଦୁସ୍ତାନୀ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିଥିଲେ । ୧୯୬୨ରେ ଆହ୍ଲାବାଦର ପ୍ରୟାଗ ସଙ୍ଗୀତ ସମିତିଠାରୁ ସଙ୍ଗୀତ ପ୍ରଭାକର ଉପାଧି ପ୍ରାପ୍ତ ହୋଇଥିଲେ । ଆକାଶବାଣୀର ଜଣେ ସ୍ୱୀକୃତ କଣ୍ଠଶିଳ୍ପୀ ଭାବେ ଶ୍ରୀ ପାଲ କଲିକତା ଏବଂ କଟକ ଆକାଶବାଣୀ କେନ୍ଦ୍ରରେ ବହୁଦିନ ଓଡ଼ିଶୀ, ଚମ୍ପୂ, ଛାନ୍ଦ, ଜଣାଣ ପ୍ରଭୃତି ଓଡ଼ିଶୀ ସଙ୍ଗୀତ ପରିବେଷଣ

କରିଥିଲେ । ଓଡ଼ିଶାର ବହୁ ସଙ୍ଗୀତ ଅନୁଷ୍ଠାନରେ ଶ୍ରୀ ପାଲ ସାମୟିକ ଶିକ୍ଷକତା କରିଛନ୍ତି । ତନ୍ମଧ୍ୟରେ ପୁରୀର ସଙ୍ଗୀତ କଳା ପ୍ରତିଷ୍ଠାନ, ପ୍ରଣତି କଳା ମନ୍ଦିର, ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ ଓ ଶ୍ରୀ ସଦାଶିବ ସଂସ୍କୃତ କେନ୍ଦ୍ରୀୟ ବିଦ୍ୟାପୀଠର ନାମ ପ୍ରଣିଧାନଯୋଗ୍ୟ ।

ଓଡ଼ିଶୀ ସଙ୍ଗୀତପ୍ରତି ବିଶେଷ ଅବଦାନ ହେତୁ ଏହି ନିଷ୍ଠାପର ସଙ୍ଗୀତ ଶିକ୍ଷକ ଓ ସଙ୍ଗୀତ ଶିଳ୍ପୀଙ୍କୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୮୮-୮୯ ବର୍ଷରେ ସମ୍ମାନିତ କରିଛନ୍ତି । ଏତଦ୍‌ବ୍ୟତୀତ ସଙ୍ଗୀତକଳା ପ୍ରତିଷ୍ଠାନର ୨୯ଶ ସମାବର୍ତ୍ତନ ଉତ୍ସବରେ ତତ୍କାଳୀନ ରାଜ୍ୟପାଳ ବି ଏନ୍. ପାଣ୍ଡେଙ୍କ ନିକଟରୁ ମାନପତ୍ର ଓ ଉପାଧି ଲାଭ କରିଥିଲେ । ୧୯୮୫ରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର Board of Studiesରେ ନିଯୁକ୍ତ ଥିଲେ ତଥା ପରୀକ୍ଷକ ଭାବରେ କାର୍ଯ୍ୟ କରିଥିଲେ ।

ତାଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟାରେ ୧୯୭୯ ଏବଂ ୧୯୮୪ ରେ 'ଓଡ଼ିଶୀ ରାଗ ସଙ୍ଗୀତ' ପୁସ୍ତକର ପ୍ରଥମ ଓ ଦ୍ୱିତୀୟ ଖଣ୍ଡର ରଚନା ଏବଂ ପ୍ରକାଶନ ସମ୍ଭବ ହୋଇଥିଲା । ଏହି ପୁସ୍ତକର ତୃତୀୟ ଭାଗ ଏବେ ପ୍ରକାଶ ଅପେକ୍ଷାରେ ।



## ଶ୍ରୀଯୁକ୍ତ ବିଜୟ ମିଶ୍ର

**ବାଲିପାଟଣା, ବାଲେଶ୍ୱର**

**ଜନ୍ମ—୧୯୩୬ ମସିହା**

ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ଜଣେ କୃତବିଦ୍ୟ ନାଟ୍ୟକାର ଭାବେ ସୁପରିଚିତ ଶ୍ରୀ ବିଜୟ ମିଶ୍ର ୧୯୩୬ ମସିହାରେ ବାଲେଶ୍ୱର ଜିଲ୍ଲା ନୀଳଗିରି ସବ୍‌ଡିଭିଜନ୍ ଅନ୍ତର୍ଗତ ବାଲିପାଟଣା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବିଦ୍ୟାଳୟ ସ୍ତରରେ ଶିକ୍ଷାଲାଭ କରୁଥିବା ସମୟରୁ ହିଁ ନାଟ୍ୟସାହିତ୍ୟ ପ୍ରତି ତାଙ୍କର ଗଭୀର କଳାପ୍ରାଣତା ପ୍ରକାଶ ପାଇଥିଲା । ତାଙ୍କର ପ୍ରଥମ ପ୍ରକାଶିତ ନାଟକ 'ଜନନୀ' ୧୯୬୦ ରେ ପ୍ରକାଶିତ ହୋଇଥିଲା ଏବଂ ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ଦ୍ୱାରା ମଞ୍ଚସ୍ଥ ହୋଇ ଆଲୋଡ଼ନ ସୃଷ୍ଟି କରିଥିଲା । ଏହା ବ୍ୟତୀତ ଅଶାନ୍ତ ଗ୍ରହ, ତମିର ତୀର୍ଥ, ପ୍ରତୀକ୍ଷା, ସାଯାବର, ... ସ୍ୱର୍ଗ ବିଦାୟ, ଅସତ୍ୟ ସହର, ଶବ ବାହକମାନେ, ଏଠି ସେଠି ସବୁଠି, ଲାଗ୍ନ, ଅମରକବି, ସାଗରତୀରେ, ଚନ୍ଦ୍ରଗ୍ରହଣ, ଯାହାର, ଭଞ୍ଜନରଞ୍ଜନା, ଜଣେ ଥିଲାଥିଲେ, ନିଶିଥ ସ୍ୱପ୍ନ, ଫେରିବାର ସମୟ, ଅନ୍ୟ ଅରଣ୍ୟ, ଇତିହାସର ମରଣ, ସାକ୍ଷୀ ଇତିହାସ, ହେକ, ବାଦ୍‌ଶାହା ଇତ୍ୟାଦି ଅନେକ ନାଟକ ନାଟ୍ୟକାରଙ୍କର ଅନବଦ୍ୟ ସୃଷ୍ଟି । ଆକାଶବାଣୀର ଜଣେ ସ୍ୱୀକୃତ ନାଟ୍ୟକାର ରୂପେ ତାଙ୍କ ଲିଖିତ ନାଟକ, 'ଭଞ୍ଜନରଞ୍ଜନା' ଓ 'ଦୁଇଟି ସୂର୍ଯ୍ୟଦଗ୍‌ଧ ଫୁଲକୁ ନେଇ' ଆକାଶବାଣୀକର୍ତ୍ତୃକ ପ୍ରଚାରିତ ହୋଇ ରାଜ୍ୟ ମଧ୍ୟରେ ଏବଂ ସର୍ବଭାରତୀୟ ସ୍ତରରେ ଆଲୋଡ଼ନ ସୃଷ୍ଟି କରିଥିଲା । ୧୯୬୮ ରେ ତାଙ୍କ କୃତୀ 'ଶବବାହକମାନେ' ଶ୍ରେଷ୍ଠ ନାଟକ ଭାବରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲାବେଳେ ୧୯୭୨ ରେ ସର୍ବଭାରତୀୟ ବେତାର ନାଟକ କାର୍ଯ୍ୟକ୍ରମରେ ପ୍ରସାରିତ ତାଙ୍କ ନାଟକ 'ଦୁଇଟି ସୂର୍ଯ୍ୟଦଗ୍‌ଧ ଫୁଲକୁ ନେଇ' ଶ୍ରେଷ୍ଠ ବିବେଚିତ ହୋଇ ଦେଶର ବିଭିନ୍ନ ବେତାର କେନ୍ଦ୍ରରୁ ଚଉଦଟି ଭାଷାରେ ପ୍ରସାରିତ ହୋଇଥିଲା ।

ନାଟ୍ୟକାରଙ୍କ ଲିଖିତ ବହୁନାଟକ ଓଡ଼ିଆ ଚଳଚ୍ଚିତ୍ରରେ ରୂପାନ୍ତରିତ ହୋଇଛି । ଏତଦ୍‌ବ୍ୟତୀତ ବହୁ ଓଡ଼ିଆ ଚଳଚ୍ଚିତ୍ରର ଚିତ୍ରନାଟ୍ୟ ଓ ସଂଳାପ ଶ୍ରୀ ମିଶ୍ରଙ୍କ ଦ୍ୱାରା ଲିଖିତ ।

ଓଡ଼ିଶାର ନାଟ୍ୟ ଆନ୍ଦୋଳନରେ ତାଙ୍କର ଅସାମାନ୍ୟ ଭୂମିକା ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ବିଜୟ ମିଶ୍ରଙ୍କୁ ୧୯୮୮-୮୯ ବର୍ଷରେ ସମ୍ବର୍ଦ୍ଧନା ଦେବା ସହ ପୁରସ୍କୃତ ମଧ୍ୟ କରିଅଛନ୍ତି ।



# ସ୍ୱର୍ଗତ ଆର୍ତ୍ତବନ୍ଧୁ ରାଉତରାୟ

**ସମଙ୍ଗ, ଜଗତସିଂହପୁର, କଟକ**

**ଜନ୍ମ—୧୯୨୮, ମଇ ୧୧**

ଓଡ଼ିଶାର ମୁକ୍ତ ରଙ୍ଗମଞ୍ଚ ଯାତ୍ରା ପରଂପରାର ଅନ୍ୟତମ ଶ୍ରେଷ୍ଠ ଅଭିନେତା ଏବଂ ନିର୍ଦ୍ଦେଶକ ୰ ଆର୍ତ୍ତବନ୍ଧୁ ରାଉତରାୟ ୧୯୨୮ ମସିହା ମଇ ମାସ ୧୧ ତାରିଖରେ କଟକ ଜିଲ୍ଲା ଜଗତସିଂହପୁରର ଅନ୍ତର୍ଗତ ସମଙ୍ଗଗ୍ରାମର ଏକ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ପାରିବାରିକ ଆର୍ଥିକ ଅସ୍ୱଚ୍ଛଳତା କାରଣରୁ ଚାଟଶାଳୀ ପାଠ ପରେ ତାଙ୍କର ପୋଥିରେ ଡୋରି ବନ୍ଧା ହୋଇଥିଲା । ଏହି ସମୟରେ ପଲାଶୋଳର ନାଟ୍ୟାଚାର୍ଯ୍ୟ କବି ୰ ବାଳକୃଷ୍ଣ ମହାନ୍ତିଙ୍କ ପ୍ରତିଷ୍ଠିତ 'ଜୟଦୁର୍ଗା ନାଟ୍ୟମଣ୍ଡଳୀ'ରେ ଜଣେ ଶିଶୁ କଳାକାର ଭାବେ ଯୋଗଦାନ କରି ସେ ତାଙ୍କର ଶିଳ୍ପୀ ଜୀବନ ଆରମ୍ଭ କରିଥିଲେ । ପରେ ଏହି ନାଟ୍ୟମଣ୍ଡଳୀ ବନ୍ଦ ହୋଇଯିବା ପରେ ସେ ଗୁଜୁରାଣ ମେଣ୍ଟାଇବାକୁ କଲିକତା ଚାଲିଯାଇ କଲିକତାରେ ଫେରିବ୍ୟବସାୟ କରିବାସହ ସେଠାରେ ଥିବା ଓଡ଼ିଆ ଲୋକମାନଙ୍କୁ ନେଇ ଏକ ସୌଖିନ୍ ନାଟ୍ୟସଂସ୍ଥା କରି ନାଟକ ପରିବେଷଣ କରୁଥିବା ସମୟରେ କଲିକତାର ପ୍ରସିଦ୍ଧ ଷ୍ଟାର୍ ଥିଏଟର୍‌ରେ ଯୋଗଦାନ କରିଥିଲେ । କିଛି ସମୟ ପରେ ସେ କଟକ ଫେରିଆସି ପ୍ରଥମେ ଓଡ଼ିଶା ଥିଏଟର୍ସ ଏବଂ ପରେ 'ନ୍ୟୁଷ୍ଟାର୍ ଥିଏଟର୍ସ'ରେ ଯୋଗଦେଇ ଅଭିନେତା ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରିଥିଲେ । ପରେ ସେ ଜନତା ରଙ୍ଗମଞ୍ଚରେ ଦୁଇବର୍ଷ କାର୍ଯ୍ୟ କରିବା ପରେ ଅପେରାଜଗତକୁ ପ୍ରବେଶ କରି ପ୍ରଥମେ ବେଣୀରାମପୁର ନାରାୟଣୀ ଅପେରାରେ ଅଭିନେତା ନିର୍ଦ୍ଦେଶକ ରୂପେ ଯୋଗ ଦେଇଥିଲେ । ଏହି ସମୟରେ ନାଟକ ପରିବେଷଣ ଶୈଳୀରେ ପରିବର୍ତ୍ତନ ଆଣି ଆଲୋଡ଼ନ ସୃଷ୍ଟି କରିଥିବା ସମୟରେ ପ୍ରଥମ ଥର କମନ୍ତ୍ରେ ଅପେରାରେ ସାମାଜିକ ନାଟକ ପରିବେଷଣ କରାଇଥିଲେ । ପରବର୍ତ୍ତୀ ଜୀବନରେ ସେ ବୀଣାପାଣି କଳାକୁଞ୍ଜ, ତୁଳସୀ ଗଣନାଟ୍ୟ, ବଳଦେବଜୀଉ ଗଣନାଟ୍ୟ, ରାଜେଶ୍ୱରୀ ଗଣନାଟ୍ୟ ଓ ସାବିତ୍ରୀ ଗଣନାଟ୍ୟ ଦଳରେ ଦୀର୍ଘଦିନ ଚିତ୍ତାକର୍ଷକ ଅଭିନୟ ପ୍ରଦର୍ଶନ କରି ଓଡ଼ିଶାର ପୁରପଲ୍ଲୀରେ ସେ

ସର୍ବତ୍ର ନିଜକୁ ପରିଚିତ କରାଇ ପାରିଥିଲେ । ବେଣୀରାମପୁର ଦଳରେ ଥିବା ସମୟରେ 'ପିତୃଭକ୍ତ କୁନାଳ' ନାଟକରେ 'କୁନାଳ' ଭୂମିକାରେ ତାଙ୍କର ସାବଲୀଳ ଏବଂ ପ୍ରାଣସ୍ପର୍ଶୀ ଅଭିନୟ ତାଙ୍କୁ ଯଥେଷ୍ଟ ଖ୍ୟାତି ଆଣି ଦେବା ସଙ୍ଗେ ସଙ୍ଗେ ଆଜି ବି ତାଙ୍କୁ ଓଡ଼ିଶା, ପଶ୍ଚିମବଙ୍ଗ ଏବଂ ବିହାରର ଦର୍ଶକମାନଙ୍କ ନିକଟରେ ଅବିସ୍ମରଣୀୟ କରି ରଖିଛି । ନିଜ ଜୀବନ କାଳ ମଧ୍ୟରେ ସେ ପ୍ରାୟ ତିନିଶହ ନାଟକରେ ଅଭିନୟ କରିବା ସହ ପାଞ୍ଚଶହରୁ ଊର୍ଦ୍ଧ୍ୱ ନାଟକରେ ନିର୍ଦ୍ଦେଶନା ଦେଇଅଛନ୍ତି । ଏକାଧାରରେ ପୌରାଣିକ, ଐତିହାସିକ ଏବଂ ସାମାଜିକ ନାଟକସମୂହରେ ପ୍ରାଣବନ୍ତ ଅଭିନୟ ପ୍ରଦର୍ଶନ କରି ସେ ଓଡ଼ିଶାର ଯାତ୍ରା ପରଂପରାକୁ ଅଧିକ ପ୍ରଚାର ଏବଂ ପ୍ରସାର କରି ପାରିଛନ୍ତି । ମଞ୍ଚ ଓ ଅପେରା ବ୍ୟତୀତ ୬ ରାଉତରାୟ ଓଡ଼ିଆ କଥାଚିତ୍ର 'ଜିନାଥ ମେଲା'ରେ ଉଚ୍ଚକୋଟୀର ଅଭିନୟ କରି ବିଶେଷ ପ୍ରଶଂସିତ ।

ଓଡ଼ିଶାର ଯାତ୍ରା କଳାକୁ ଲୋକପ୍ରିୟ କରିବାରେ ତାଙ୍କର ବିଶେଷ ଅବଦାନ ନିମନ୍ତେ ୬ ରାଉତରାୟ ଓଡ଼ିଶା ଓ ଓଡ଼ିଶା ବାହାରେ ବହୁସ୍ଥାନରେ ପୁରସ୍କୃତ ହୋଇଥିଲେ ଏବଂ ୧୯୮୯-୯୦ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଥିଲେ । ୧୯୯୧ ଫେବ୍ରୁୟାରୀ ୨୦ ତାରିଖରେ ନିଜ ଗ୍ରାମରେ ତାଙ୍କର ମହାପ୍ରୟାଣ ଘଟିଥିଲା ।

●

✓ ଡାଃ ବସନ୍ତ କୁମାର ମହାପାତ୍ର

ପୁରୁଣା ବଜାର, ଭଦ୍ରଖ

ଜନ୍ମ—୧୯୩୦, ଫେବୃୟାରୀ ୧୧



ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠିତ ନାଟ୍ୟକାର ଭାବରେ ସୁପରିଚିତ ✓ ଡା. ବସନ୍ତ କୁମାର ମହାପାତ୍ର ୧୯୩୦ ମସିହା ଫେବୃୟାରୀ ମାସ ୧୧ ତାରିଖରେ ବାଲେଶ୍ୱର ଜିଲ୍ଲାର ସଂସ୍କୃତିର ପୀଠସ୍ଥଳୀ ଭଦ୍ରଖ ସହରର ପୁରୁଣାବଜାରଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ✓ ବୈଷ୍ଣବ ଚରଣ ମହାପାତ୍ର ଏବଂ ମାତାଙ୍କ ନାମ ✓ ଇନ୍ଦୁମତୀ ଦେବୀ । ପିଲାଦିନରୁ ଯାତ୍ରା ଏବଂ ଲୀଳା ଆଦି ଦେଖି ସେ ଏହି ଅଭିନୟ କଳା ପ୍ରତି ଆକୃଷ୍ଟ ହୋଇଥିଲେ ମଧ୍ୟ ତାଙ୍କ ପ୍ରତିଭାର ବିକାଶ ସାହିତ୍ୟସାଧନାରେ ହିଁ ବିଶେଷ ପ୍ରକାଶିତ ହୋଇଥିଲା । ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ 'ସୈନିକର ସ୍ୱପ୍ନ' ନାମକ ଏକ ଗଳ୍ପ ରଚନା କରି ବିଦ୍ୟାଳୟରେ ପୁରସ୍କୃତ ହେବା ପରେ ସେ ବାକି ଜୀବନରେ ଲେଖାଲେଖିକୁ ହିଁ ଆଦରି ନେଇଥିଲେ । ୧୯୫୫-୫୬ରେ ମହାବିଦ୍ୟାଳୟରେ ଅଧ୍ୟୟନ କରିବା ସମୟରେ ତାଙ୍କ ଲିଖିତ ନାଟକ ଗ୍ରନ୍ଥି, ବିସ୍ମୃତ ଓ ଚୈତନ୍ୟମଣି ଇତ୍ୟାଦି ତାଙ୍କ ନିଜ ଚେଷ୍ଟାରେ ମଞ୍ଚସ୍ଥ କରାଇ ଓ ନିଜେ ତହିଁରେ ଅଭିନୟ କରି ବହୁ ପ୍ରଶଂସିତ ହୋଇଥିଲେ । ଆଜି ଏ ସବୁ ନାଟକର ପାଣ୍ଡୁଲିପି ଦୁଷ୍ପ୍ରାପ୍ୟ ।

୧୯୫୮ରେ ଡାକ୍ତରୀ ବିଦ୍ୟାରେ ସ୍ନାତକ ଉପାଧି ହାସଲ କରି ସେ ନିଜର ଜୀବିକା ଭାବରେ ସରକାରୀ ଚାକିରୀ ଗ୍ରହଣ କରିଥିଲେ ମଧ୍ୟ ନାଟକ ରଚନା ପ୍ରତି ବିତସ୍ପୃହ ହୋଇ ନଥିଲେ ବରଂ ନାଟକ ଓ ଚଳଚ୍ଚିତ୍ର ଚିତ୍ରନାଟ୍ୟ ପ୍ରସ୍ତୁତ କରି ଓଡ଼ିଆ ସାହିତ୍ୟ ଓ କଳାକୁ ସମୃଦ୍ଧ କରିବା ତାଙ୍କର ଏକ ନିଶାରେ ପରିଣତ ହୋଇଯାଇଥିଲା ।

ତାଙ୍କ ରଚିତ ନାଟକ ସ୍ୱର୍ଗବଳୟ, ଶେଷ ଶ୍ରାବଣ, ସୂର୍ଯ୍ୟସ୍ନାନ, ପାଷାଣକାବ୍ୟ, କାଳଜ୍ୟୋତ୍ସ୍ନା, ମୋନାଲିସାର ହସ, କାଚ ଘର, ମୁକ୍ତ ମଶାଲ, ମୁଠାଏମାଟି, ଅନ୍ଧକାରର ପୂରବୀ, ଜ୍ୱାଳା, ବହ୍ନିକନ୍ୟା, ଶୃଙ୍ଗାର ଶତକ, ମୂଳମନ୍ତ୍ର ଆଦି ଓଡ଼ିଆ ନାଟ୍ୟ ସାହିତ୍ୟ ଭଣ୍ଡାରର ଗୋଟିଏ ଗୋଟିଏ ଅମୂଲ୍ୟ ରତ୍ନ । ତାଙ୍କର ଅପ୍ରକାଶିତ ନାଟ୍ୟକୃତି ହେଲା

ଅଲଭା ଦୀପ ନାଟକ । ନାଟକ ବ୍ୟତୀତ ସ୍ୱ ମହାପାତ୍ର ଅନେକ ଓଡ଼ିଆ ଚଳଚ୍ଚିତ୍ରର କାହାଣୀ, ସଂଳାପ ଆଦି ରଚନା କରିଯାଇଛନ୍ତି । ତନ୍ମଧ୍ୟରେ ଚଳଚ୍ଚିତ୍ର ମନ ଆକାଶ (ଝିଅବଉଳ), କନକଲତାର ବିଳାପ, ଗପ ହେଲେ ବି ସତ, ସାକ୍ଷୀଗୋପିନାଥ, ସଉତୁଣୀ, ଟିକେ ହସ ଟିକେ ଲୁହର କାହାଣୀ ଓ ସଂଳାପ, ଚଳଚ୍ଚିତ୍ର ଶେଷ ଶ୍ରାବଣ, ନାଗଫାଶ ଓ କାଚଘର ଆଦିର କାହାଣୀ ଲେଖକ ଭାବେ ସେ ଯଶସ୍ୱୀ । ଏତଦ୍‌ବ୍ୟତୀତ ଚଳଚ୍ଚିତ୍ର ଶେଷ ଶ୍ରାବଣ ହିନ୍ଦୀ ଚଳଚ୍ଚିତ୍ର 'ନୟା'କୁ ରୂପାନ୍ତରିତ ହୋଇଛି । ତାଙ୍କ ଲିଖିତ ଯେଉଁ ନାଟ୍ୟ ଚଳଚ୍ଚିତ୍ର ପ୍ରସ୍ତୁତି ପର୍ବରେ ରହିଯାଇଛି ସେସବୁ ହେଲା କୋଣାର୍କ, କାଞ୍ଚି କାବେରୀ, ବିଦଗ୍ଧ ଚିନ୍ତାମଣି, ପର ଆପଣା, ସନ୍ଧ୍ୟାତାରା, ସଂକଳ୍ପ, ନୂପୁର, କ୍ଷୀରଚୋରା ଗୋପିନାଥ ଆଦି ।

ମଞ୍ଚ ଓ ଚଳଚ୍ଚିତ୍ର ବ୍ୟତୀତ ସ୍ୱ ମହାପାତ୍ର ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତ ନାଟ୍ୟକାର ଏବଂ ତାଙ୍କ ରଚିତ ଏହି କେନ୍ଦ୍ର ଦ୍ୱାରା ପ୍ରସାରିତ ନାଟକମାନଙ୍କ ମଧ୍ୟରେ ପଳାତକ, ଅନ୍ତରାଗର କବିତା, ନନ୍ଦକେଶରୀ, ଏଇ ମାଟିର ଶିଶୁ ଇତ୍ୟାଦି ପ୍ରଧାନ ।

ନାଟ୍ୟକଳା କ୍ଷେତ୍ରରେ ନିଜର ଉଲ୍ଲେଖନୀୟ ଯୋଗଦାନ ନିମନ୍ତେ ସ୍ୱ ମହାପାତ୍ର ନିଜ ଜୀବନରେ ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ । ନାଟକ 'ପଳାତକ' ନିମନ୍ତେ ବେତାର ପୁରସ୍କାର, ୧୯୮୩ରେ 'ଜୀବନ ରଙ୍ଗ'ରୁ ମାନପତ୍ର ପ୍ରାପ୍ତି, ୧୯୭୯ରେ 'ଚିତ୍ର-ତରଙ୍ଗ' ତରଫରୁ, ଶ୍ରୀ ରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜ ଡ୍ରାମାଟିକ ଆସୋସିଏସନ୍ ତରଫରୁ, ରୂପସ୍ୱାଚିତ୍ର ଅନୁଷ୍ଠାନ ତରଫରୁ ସମ୍ମାନିତ ହେବା ସଙ୍ଗେ ସଙ୍ଗେ, 'ଶେଷ ଶ୍ରାବଣ'ର କାହାଣୀ ରଚୟିତା ଭାବେ ୧୯୭୭ରେ ରାଜ୍ୟ ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା, ୧୯୮୦ରେ ରାଉରକେଲାର 'ନୀଳଚକ୍ର' ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହେବା ସହ ୧୯୮୧ରେ କଳାବିନୋଦ ଅନୁଷ୍ଠାନରୁ 'ନାଟ୍ୟ ଭୂଷଣ' ଉପାଧି ପ୍ରାପ୍ତ ହୋଇଥିଲେ । ଓଡ଼ିଶା ନାଟ୍ୟ ଓ ଚଳଚ୍ଚିତ୍ର ଜଗତକୁ ତାଙ୍କର କୃତିତ୍ୱପୂର୍ଣ୍ଣ ଅବଦାନ ନିମନ୍ତେ ୧୯୮୯-୯୦ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ସ୍ୱ ମହାପାତ୍ରଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଛନ୍ତି । ୧୯୯୧ ମସିହା ଏପ୍ରିଲ ୭ ତାରିଖରେ ତାଙ୍କର ଅକାଳ ବିୟୋଗରେ ଓଡ଼ିଶାର ନାଟ୍ୟ ଜଗତରେ ଯେଉଁ ଶୂନ୍ୟତା ସୃଷ୍ଟି ହେଲା ତାହା ସହଜରେ ପୂରଣ ହେବାର ନୁହେଁ ।

●

## ଶ୍ରୀ ଭକ୍ତବତ୍ସଳ ପାତ୍ର

**ପାରଳାଖେମୁଣ୍ଡି, ଗଞ୍ଜାମ**

**ଜନ୍ମ—୧୯୩୦, ସେପ୍ଟେମ୍ବର ୧୯**



ଉତ୍କଳର ତାଳତରଙ୍ଗ କଳେବରକୁ ଯାହାଙ୍କର ବୀଣା ଓ ମର୍ଦ୍ଦଳ ବାଦନ ରସୋତ୍ତୀର୍ଣ୍ଣ କରିଛି, ସେହି ବାଦ୍ୟକାର ଶ୍ରୀ ଭକ୍ତବତ୍ସଳ ପାତ୍ର ୧୯୩୦ ମସିହା ସେପ୍ଟେମ୍ବର ମାସ ୧୯ ତାରିଖରେ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡିଠାରେ ଜନ୍ମଗ୍ରହଣ କରିଥିଲେ । ପାରଳା ରାଜଦରବାରର ବରିଷ୍ଠ ବୀଣାବାଦକ ଶ୍ରୀ ରୁଚ୍ୟାନ୍ନା ନରସିଂହମ୍ ପାନ୍ତୁଲୁଙ୍କ ଅମୃତମୟ ଆଶୀର୍ବାଦ ଶିଳ୍ପୀଙ୍କୁ ଜଣେ ସ୍ୱନାମଧନ୍ୟ କଳାକାର ରୂପେ ଗଢ଼ି ତୋଳିବାରେ ପ୍ରାଣପ୍ରଚୋଦିତ କରିଥିଲା । ସେ ମାତ୍ର ଦଶବର୍ଷ ବୟସରୁ ସଂକୀର୍ତ୍ତନମଣ୍ଡଳୀ ମଧ୍ୟରେ ମୃଦଙ୍ଗ ବାଦନ କରି ଭାବବିହ୍ୱଳିତ ହୋଇ ପଡୁଥିଲେ ।

ତୁଳସୀ ଦୁଇ ପତ୍ରରୁ ବାସିଲାଭଳି ୧୯୫୮ରେ ମଞ୍ଜୁଷାଗଡ଼ର ବ୍ରହ୍ମଉତ୍ସବ, ୧୯୩୦ ରେ ନିଖିଳ ଉତ୍କଳ ସଙ୍ଗୀତ ସଭା, ୧୯୩୯ ରେ କାଙ୍କଡ଼ା ଗାନସଭା ଓ ୮୯୪୭ ରେ ପୁରୀ ଜଗନ୍ନାଥବଲ୍ଲଭଠାରେ ଶିଳ୍ପୀ ଶ୍ରୀ ପାତ୍ରଙ୍କର ବାଦନ ଶୈଳୀ ସମସ୍ତଙ୍କୁ ପ୍ରୀତୀଭୂତ କରିଥିଲା ।

୧୯୪୮ ରେ ଆକାଶବାଣୀ କଟକ କେନ୍ଦ୍ରର ପ୍ରତିଷ୍ଠାପରେ ଶ୍ରୀ ପାତ୍ର ତହିଁରେ ସ୍ୱୀକୃତ କଳାକାର ଭାବରେ ଯୋଗଦାନ କରି ଅଦ୍ୟାବଧି କଟକ ବେତାର କେନ୍ଦ୍ରରେ ସ୍ୱୀୟ କଳା ପ୍ରଦର୍ଶନ କରିଆସୁଛନ୍ତି । ୧୯୫୪ ମସିହାଠାରୁ ପାରଳାଖେମୁଣ୍ଡିର ପ୍ରାଚୀନତମ କଳା ସଂସ୍ଥା 'ଉତ୍କଳ ହିତୈଷିଣୀ ସମାଜ' ସହ ଶିଳ୍ପୀ ସଂପୃକ୍ତ ରହି ସମ୍ପ୍ରତି ଏହାର ଅଧ୍ୟକ୍ଷ ଭାବେ କର୍ମରତ ।

ଓଡ଼ିଶୀ ସଙ୍ଗୀତ କ୍ଷେତ୍ରକୁ ତାଙ୍କର ଏତାଦୃଶ ଅବଦାନ ନିମନ୍ତେ ୧୯୮୯-୯୦ ବର୍ଷରେ ଶ୍ରୀ ପାତ୍ର ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ସମ୍ମାନିତ ଏବଂ ପୁରସ୍କୃତ ହୋଇଅଛନ୍ତି ।

# ଶ୍ରୀ ଶୁକଦେବ ପନ୍ଥୀ

**କେନ୍ଦ୍ରାପଡ଼ା, କଟକ**

**ଜନ୍ମ—୧୯୨୭ ମସିହା**



ଓଡ଼ିଶୀ ସଙ୍ଗୀତର ଜଣେ କୃତବିଦ୍ୟ କଳାକାର ଭାବେ ଶ୍ରୀ ଶୁକଦେବ ପନ୍ଥୀ ସୁପରିଚିତ । ତାଙ୍କର ଜନ୍ମ ୧୯୨୭ ମସିହାରେ କଟକ ଜିଲ୍ଲାର କେନ୍ଦ୍ରାପଡ଼ାଠାରେ ହୋଇଥିଲା । ରକ୍ଷଣଶୀଳ ପାରିବାରିକ ବନ୍ଧନ କାଟି ସେ ସ୍ୱର୍ଗତ ଗାୟକରତ୍ନ ସିଂହାରୀ ଶ୍ୟାମସୁନ୍ଦର କରଙ୍କର ଶିଷ୍ୟତ୍ୱ ଗ୍ରହଣକରି ତାଙ୍କ ଶିଳ୍ପୀଜୀବନକୁ ଜାତିପାଇଁ ଉତ୍ସର୍ଗ କରିଛନ୍ତି । ତାଙ୍କ କଣ୍ଠରେ ପରିବେଷିତ ଓଡ଼ିଶୀ, ଛାନ୍ଦ, ଚମ୍ପୂ ଓ ଜଣାଣମାନ ଆକାଶବାଣୀର ସଙ୍ଗୀତ କାର୍ଯ୍ୟକ୍ରମକୁ ସରସ, ସୁନ୍ଦର ଓ ମନୋଜ୍ଞ କରିଛି ।

୧୯୫୪ ରେ ଜଣେ ଉଦୀୟମାନ କୃତୀ କଣ୍ଠଶିଳ୍ପୀ ରୂପେ ଉତ୍କଳ ନୃତ୍ୟନାଟ୍ୟ ପରିଷଦ ( ବର୍ତ୍ତମାନ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ) ପକ୍ଷରୁ ଛାତ୍ରବୃତ୍ତି ଲାଭକରି ସଙ୍ଗୀତଚର୍ଚ୍ଚା ନିମନ୍ତେ ପ୍ରେରଣାପ୍ରାପ୍ତ ହୋଇଥିଲେ । ପରବର୍ତ୍ତୀ ଜୀବନରେ ୰ ଗୁରୁ ବ. ସି. ପଲୁସ୍କର, ୰ କୁଣ୍ଡଳାଦ୍ରି ନାରାୟଣ ରାଓ ଓ ୰ କ୍ଷିତୀଶ ଚନ୍ଦ୍ର ମୈତ୍ର ପ୍ରମୁଖ ଶାସ୍ତ୍ରୀୟ ସଙ୍ଗୀତର ମହାନ୍ ଶିଳ୍ପୀବୃନ୍ଦ ତାଙ୍କର ସଙ୍ଗୀତ ଶିକ୍ଷାର ଜୀବନପଥକୁ ମାର୍ଗଦର୍ଶନ ପ୍ରଦାନ କରିଛନ୍ତି ।

ଓଡ଼ିଶାର ମୌଳିକ ଗାୟନପରଂପରାକୁ ଉତ୍ତରସୂରୀମାନଙ୍କ ମଧ୍ୟରେ ନିଜ ଶିକ୍ଷାଦାନ ମାଧ୍ୟମରେ ଶ୍ରୀ ପନ୍ଥୀ ଅଧିକ ବ୍ୟାପକ କରିବା ପ୍ରଚେଷ୍ଟା କରି ଚାଲିଛନ୍ତି । ଦୀର୍ଘଦିନଧରି କଟକ ଉତ୍କଳ ସଙ୍ଗୀତ ସମାଜରେ ଅଧ୍ୟାପନା କରିବା ସହିତ ସମ୍ପ୍ରତି 'କୋକିଳ କଳା ପରିଷଦ' ଗଠନ କରି ତହିଁର ଅଧ୍ୟକ୍ଷ ରୂପେ ଅବସ୍ଥାପିତ ।

ସଙ୍ଗୀତ କଳା କ୍ଷେତ୍ରରେ ନିଜର ପାରଦର୍ଶିତା ନିମନ୍ତେ ଓଡ଼ିଶାର ବହୁ ସାଂସ୍କୃତିକ ଅନୁଷ୍ଠାନ, ଶରଧାବାଲି ସାଂସ୍କୃତିକ ସଂସଦ, ତୁଳସୀକ୍ଷେତ୍ର, ଶ୍ରୀ ବଳଦେବଜୀଉ ସେବକ ସମାଜ, ସମ୍ବଲପୁର ଶିଶୁସାହିତ୍ୟ ସଂସଦ ପକ୍ଷରୁ ଶିଳ୍ପୀ ଶ୍ରୀ ପନ୍ଥୀଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ଶିକ୍ଷାଦାନ ମାଧ୍ୟମରେ ନିଜର କଳାମୟ ଜୀବନକୁ ସଦା କର୍ମମୁଖର କରି ରଖିଥିବା ଶ୍ରୀ ପନ୍ଥୀଙ୍କୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ୧୯୮୯-୯୦ ବର୍ଷର ଉପାୟନ ଏବଂ ପୁରସ୍କାର ପ୍ରଦତ୍ତ ହୋଇଅଛି ।

●

## ଶ୍ରୀ ବୃନ୍ଦାବନ ପାଣ୍ଡ

ଗୁଡ଼ିଆଳି, ଗଞ୍ଜାମ

ଜନ୍ମ—୧୯୨୫, ମଇ ୧୪



ଓଡ଼ିଶା ପେଶାଦାର ରଙ୍ଗମଞ୍ଚର ଜଣେ ହାସ୍ୟ ଅଭିନେତା ଭାବେ ଓଡ଼ିଶାର ସର୍ବଜନ ସୁପରିଚିତ ଅଭିନେତା 'ବୁଲ୍‌ବୁଲ୍' ଓରଫ ଶ୍ରୀ ବୃନ୍ଦାବନ ପାଣ୍ଡ ୧୯୨୫ ମସିହା ମଇ ମାସ ୧୪ ତାରିଖରେ ଗଞ୍ଜାମ ଜିଲ୍ଲାର ଗୁଡ଼ିଆଳିଠାରେ ଜନ୍ମଗ୍ରହଣ କରିଥିଲେ । ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଥିଏଟରର ପ୍ରାରମ୍ଭକାଳରୁ ଅଦ୍ୟାବଧି ଶିଳ୍ପୀ ନିଜର ନିଷ୍ଠା ଓ ଭାବ-ପ୍ରବଣ ପ୍ରାଣବନ୍ତ ଅଭିନୟ ମାଧ୍ୟମରେ ସମସ୍ତଙ୍କ ହୃଦୟରେ ସ୍ମୃତ ଓ ସମ୍ପୃକ୍ତ ହୋଇ ରହିଛନ୍ତି ।

ମାତ୍ର ୧୦ ବର୍ଷ ବୟସରୁ ଅଭିନୟ ଜୀବନ ଆରମ୍ଭକରି ଧାରାବାହିକ ଭାବେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ରଙ୍ଗମଞ୍ଚରେ ଦେବଯାନୀ, କୂଳଚନ୍ଦ୍ରମା, ଲକ୍ଷହୀରା, କଂସାକବାଟ, ସ୍ୱର୍ଣ୍ଣଚମ୍ପା ଓ ବାଡ଼ୁଅଛିଅ ଆଦି ଅଗଣିତ ନାଟକରେ ତାଙ୍କର ରସାପ୍ଲୁତ ମନଛୁଆଁ ଅଭିନବ ଅଭିନୟ ଶୈଳୀ ଦର୍ଶକ ପ୍ରାଣକୁ ବିମୋହିତ କରିଆସିଛି ।

ସୁମଧୁର କଣ୍ଠ ଏବଂ ଯାଦୁକରୀ ଅଭିନୟ ସ୍ପର୍ଶରେ ମୁଗ୍ଧ ହୋଇ ଜୟପୁର ମହାରାଜା ଶ୍ରୀଯୁକ୍ତ ବିକ୍ରମଦେବ ବର୍ମନ ଶିଳ୍ପୀ ଶ୍ରୀ ପାଣ୍ଡଙ୍କୁ 'ବୁଲ୍‌ବୁଲ୍' ନାମରେ ନାମିତ କରିଥିଲେ ଯାହା ଶିଳ୍ପୀଙ୍କ ସେହି ମନୋମୁଗ୍ଧକର ନାମରେ ସର୍ବତ୍ର ପରିଚିତ କରାଇ ପାରିଛି ।

ରଙ୍ଗମଞ୍ଚ ବ୍ୟତୀତ ଶ୍ରୀ ପାଣ୍ଡ ଓଡ଼ିଆ ଚଳଚ୍ଚିତ୍ର ଜଗତରେ ପାଦ ଦେଇ 'ଶ୍ରୀ ଲୋକନାଥ' 'ଗପହେଲେ ବି ସତ' 'ଅଦିନ ମେଘ' ଆଦି ଓଡ଼ିଆ କଥାଚିତ୍ରରେ ଅଭିନୟ କରି ବହୁ ପ୍ରଶଂସିତ ।

ଓଡ଼ିଶାର ନାଟ୍ୟ ଆନ୍ଦୋଳନକୁ ନିଜର ଅବଦାନ ନିମନ୍ତେ ଶ୍ରୀ ପାଣ୍ଡ ୧୯୮୯-୯୦ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ କର୍ତ୍ତୃକ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ ହୋଇଅଛନ୍ତି ।

●



## ଶ୍ରୀ ଶ୍ରୀକାନ୍ତ ସେନ

**ବାରିପଦା, ମୟୂରଭଞ୍ଜ**

**ଜନ୍ମ—୧୯୨୭, ନଭେମ୍ବର ୬**

ଓଡ଼ିଶାର ଜଣେ କୃତବିଦ୍ୟ ଛଉନୃତ୍ୟ ଶିଳ୍ପୀଭାବରେ ସୁପରିଚିତ ଶ୍ରୀ ଶ୍ରୀକାନ୍ତ ସେନ୍ ୧୯୨୭ ମସିହା ନଭେମ୍ବର ମାସ ୬ ତାରିଖରେ ମୟୁରଭଞ୍ଜର ବାରିପଦା ସହରରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ଦଶବର୍ଷ ବୟସରୁ ଶିଳ୍ପୀ ମୟୁରଭଞ୍ଜ ଶୈଳୀର ଛଉନୃତ୍ୟ ଶିକ୍ଷା ଆରମ୍ଭ କରି ସଂପ୍ରତି ଜଣେ ପ୍ରତିଭାବାନ୍ ନୃତ୍ୟଶିଳ୍ପୀ ଭାବେ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି । ବାରିପଦାର ଦକ୍ଷିଣସାହି ଛଉ ଆଖଡ଼ାଠାରେ ଗୁରୁ ଦିବାକର ଭଞ୍ଜଙ୍କ ପ୍ରଥମ ମାର୍ଗଦର୍ଶନ ଶିଳ୍ପୀ ଶ୍ରୀ ସେନ୍‌ଙ୍କର କଳାମୟ ଜୀବନକୁ ପ୍ରେରଣାସିକ୍ତ କରିଛି । ପରବର୍ତ୍ତୀ ଜୀବନରେ ଶିଳ୍ପୀଙ୍କୁ ଦୀନବନ୍ଧୁ ବେହେରା, ଯୋଗେନ୍ଦ୍ର କୁଅଁର ଓ ମହମ୍ମଦ ରାଜା ଖାଁ ଛଉନୃତ୍ୟ ଶିକ୍ଷାଦାନ କରି ତାଙ୍କର ନୃତ୍ୟଶୈଳୀକୁ ଅଧିକ ମଞ୍ଜୁଳ ଓ ପ୍ରାଣବନ୍ତ କରାଇ ପାରିଛନ୍ତି ।

ଦଣ୍ଡୀ, ରଘୁରାଜ, ବାଳକୃଷ୍ଣ, ବଂଶୀଚୋର, ମାୟାଶବରୀ, ଦଶାବତାର ଏବଂ କିରାତାର୍ଜ୍ଜୁନ ଆଦି ଛଉନୃତ୍ୟର ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇ ସେ ସହସ୍ରାଧିକ ଦର୍ଶକଙ୍କୁ ବହୁବାର ମନ୍ତ୍ରମୁଗ୍ଧ କରିପାରିଛନ୍ତି । ୧୯୬୮ ମସିହାରେ ଶ୍ରୀ ସେନ୍ ମୟୁରଭଞ୍ଜ ଛଉନୃତ୍ୟ ପ୍ରତିଷ୍ଠାନର ଗୁରୁଭାବରେ ଅବସ୍ଥାପିତ ହେବା ସହ ଗୋଆଲିୟର୍ ଲିଟଲ୍ ବ୍ୟାଲେ ଟ୍ରୁପ୍‌ରେ ଛଅବର୍ଷ ନୃତ୍ୟ ପରିବେଷଣ କରି ବହୁ ପ୍ରଶଂସା ଲାଭ କରିଛନ୍ତି । ୧୯୭୫ ଓ ୧୯୭୭ ମସିହାରେ ସିଓଲଠାରେ ଏସିଆନ ଏବଂ ପେସିଫିକ୍ ଡ୍ୟାନସ୍ ଏଣ୍ଡ ଫୋକ୍ ଆର୍ଟ ଫେଷ୍ଟିଭାଲ ଏବଂ ଯୋଧପୁରଠାରେ ଯୋଧପୁର ସଙ୍ଗୀତ କଳା ପରିଷଦ ତରଫରୁ ତାଙ୍କୁ ସମ୍ବର୍ଦ୍ଧନା କରାଯାଇଥିଲା ।

ଓଡ଼ିଶାର ଲୋକନୃତ୍ୟ କ୍ଷେତ୍ରରେ ତାଙ୍କର ବିଶେଷ ନୈପୁଣ୍ୟ ନିମନ୍ତେ ୧୯୮୯-୯୦ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ସେନ୍‌ଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଛନ୍ତି ।



## ଶ୍ରୀ ପ୍ରସନ୍ନ କୁମାର ଚୌଧୁରୀ

କୁଳଅଣା, ମୟୂରଭଞ୍ଜ

ଜନ୍ମ—୧୯୨୧, ଜାନୁଆରୀ ୫

ଓଡ଼ିଶାର ପ୍ରସିଦ୍ଧ ଛଉନୃତ୍ୟ ପରଂପରାର ଜଣେ ପ୍ରତିଭାଧର ନୃତ୍ୟଶିଳ୍ପୀ ରୂପେ ପରିଚିତ ଶ୍ରୀ ପ୍ରସନ୍ନ କୁମାର ଚୌଧୁରୀ ୧୯୨୧ ମସିହା ଜାନୁଆରୀ ମାସ ୫ ତାରିଖରେ ମୟୂରଭଞ୍ଜ ଜିଲ୍ଲାର କୁଳଅଣାଠାରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନରୁ ଗୁରୁ ସ୍ୱର୍ଗତ ରଘୁନାଥ ସିଂହବାବୁଙ୍କ ଠାରୁ ଛଉନୃତ୍ୟ ଶିକ୍ଷାକରି ୧୯୩୮ ମସିହାଠାରୁ 'ଗରୁଡ଼ବାହନ' ନୃତ୍ୟରେ ଚମକ ସୃଷ୍ଟି କରିଥିଲେ । ପରବର୍ତ୍ତୀ କାଳରେ ଗୁରୁ ମଦନ ମୋହନ ଲେଙ୍କା, ସ୍ୱ ରଘୁନନ୍ଦନ କୁଅଁରବାବୁ ପ୍ରମୁଖଙ୍କ ନିକଟରୁ ଛଉନୃତ୍ୟରେ ସ୍ୱତନ୍ତ୍ର ଶିକ୍ଷା ଗ୍ରହଣ କରି 'ଶବରଢୋକା', 'ଓଡ଼ିଆ', 'ଗଙ୍ଗା ଅବତାର' ଓ 'କାଳଚକ୍ର' ଆଦି ଛଉନୃତ୍ୟ କାର୍ଯ୍ୟକ୍ରମ ପରିବେଷଣ କରି ଉଚ୍ଚ ପ୍ରଶଂସିତ ହୋଇ ପାରିଛନ୍ତି ।

ମୟୂରଭଞ୍ଜ ଉତ୍ତରପାର୍ଶ୍ୱ ନୃତ୍ୟ ଆଖଡ଼ାର ନୃତ୍ୟଶିଳ୍ପୀ ଏବଂ ପରେ ପରେ ଜଣେ ପ୍ରତିଷ୍ଠିତ ନୃତ୍ୟଗୁରୁ ଭାବରେ ଛଉନୃତ୍ୟାନୁରାଗୀ ଉତ୍ତରଦାୟାଦମାନଙ୍କୁ ତାଲିମ ଦେଇ ଗୁରୁ ପରଂପରାର ସୁରକ୍ଷା କରି ଆସିଛନ୍ତି ।

ମୟୂରଭଞ୍ଜ ଛଉନୃତ୍ୟ ପ୍ରତିଷ୍ଠାନ ମାଧ୍ୟମରେ ଭାରତର ବିଭିନ୍ନ ନୃତ୍ୟ ସମାରୋହରେ ଅପୂର୍ବ ନୃତ୍ୟ ପରିବେଷଣ କରି ଶ୍ରୀ ଚୌଧୁରୀ ଉଚ୍ଚ ପ୍ରଶଂସିତ । ଓଡ଼ିଶା ଲୋକନୃତ୍ୟ କ୍ଷେତ୍ରରେ ତାଙ୍କର ଏତାଦୃଶ ବିଶେଷ କୃତିତ୍ୱ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶିଳ୍ପୀଙ୍କୁ ୧୯୮୯-୯୦ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।



## ଶ୍ରୀ ରାଧାକୃଷ୍ଣ ଭଞ୍ଜ

ବାରିପଦା, ମୟୂରଭଞ୍ଜ

ଜନ୍ମ—୧୯୨୮, ନଭେମ୍ବର ୫

ଓଡ଼ିଶାର ପାରମ୍ପରିକ ଲୋକ-ସଙ୍ଗୀତର ପ୍ରତିଷ୍ଠିତ ଶିଳ୍ପୀ ଶ୍ରୀ ରାଧାକୃଷ୍ଣ ଭଞ୍ଜ ୧୯୨୮ ମସିହା ନଭେମ୍ବର ମାସ ୫ ତାରିଖରେ ମୟୂରଭଞ୍ଜ ଜିଲ୍ଲାର ବାରିପଦାଠାରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ବାରବର୍ଷ ବୟସରୁ ସେ ଗୁରୁ ସୀତାଂଶୁ ନନ୍ଦୀ ଓ ନାରାୟଣ ଦାସଙ୍କଠାରୁ ସଙ୍ଗୀତ ଶିକ୍ଷା କରି ଆଜି ଜଣେ ପ୍ରତିଭାବାନ୍ ସୁଗମ ସଙ୍ଗୀତ ଏବଂ ଲୋକ ସଙ୍ଗୀତ ଗାୟକ ଭାବରେ ଯଶସ୍ୱୀ ।

ପିଲାଦିନରୁ ପରିବାରର କୌଳିକବୃତ୍ତି ଛଉନୃତ୍ୟ ଶିକ୍ଷା କରି ମୟୂରଭଞ୍ଜ ରାଜ ଦରବାରରେ ନୃତ୍ୟ ପରିବେଷଣ କରିବା ସହିତ ପରବର୍ତ୍ତୀ ଜୀବନରେ ଓଡ଼ିଶା ଥିଏଟର୍ସ ଏବଂ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ରଙ୍ଗଶାଳାରେ ଜଣେ କୃତୀ ନୃତ୍ୟ-ସଙ୍ଗୀତ ଶିଳ୍ପୀ ଭାବରେ ଆତ୍ମପ୍ରକାଶ କରି ଶ୍ରୀ ଭଞ୍ଜ ଓଡ଼ିଶାର ସଙ୍ଗୀତ ଜଗତକୁ ଋଦ୍ଧିମନ୍ତ କରିଥିଲେ । ୧୯୩୫ରେ ପ୍ରଥମ କରି ଶ୍ରୀ ଭଞ୍ଜ ଆକାଶବାଣୀ କଲିକତା କେନ୍ଦ୍ରର ଓଡ଼ିଆ କାର୍ଯ୍ୟକ୍ରମରେ ସ୍ୱୀକୃତ ଶିଳ୍ପୀ ଭାବରେ ଅଂଶ ଗ୍ରହଣ କରି ଲଘୁ ସଙ୍ଗୀତ ଗାନ କରି ସମସ୍ତଙ୍କୁ ମୁଗ୍ଧ କରି ପାରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ୧୯୪୮ରେ ଆକାଶବାଣୀ କଟକ କେନ୍ଦ୍ର ଉଦ୍‌ଘାଟିତ ହେବାପରେ ତହିଁରେ କର୍ମରତ କଳାକାର ଭାବରେ ଯୋଗ ଦେଇ ଆଧୁନିକ, ଭଜନ ଓ ପଲ୍ଲୀଗୀତର ଅଗଣିତ ଗ୍ରାମୋଫୋନ ରେକର୍ଡ ସୃଷ୍ଟି କରିଛନ୍ତି । ଓଡ଼ିଶାର ସୁପ୍ରସିଦ୍ଧ 'ଝୁମର' ଗାୟକ ଭାବେ ସେ ବହୁମହଲରେ ଉଚ୍ଚ ପ୍ରଶଂସିତ ।

ଓଡ଼ିଆ ଚଳଚ୍ଚିତ୍ରର ଜଣେ ସଫଳ ସଙ୍ଗୀତକାର ଭାବେ 'ମାନିନୀ' କଥାଚିତ୍ର ପାଇଁ ଶିଳ୍ପୀଙ୍କୁ ଓଡ଼ିଶା ଚଳଚ୍ଚିତ୍ର ସାମ୍ବାଦିକ ସଂଘ ପକ୍ଷରୁ ପୁରସ୍କାର ପ୍ରଦାନ କରାଯାଇଛି । ଅଧୁନା ବେତାର ଓ ଦୂରଦର୍ଶନ ମାଧ୍ୟମରେ ଶିଳ୍ପୀ ଜଣେ ଲୋକପ୍ରିୟ ଗାୟକ ଭାବରେ ଉଚ୍ଚ ପ୍ରଶଂସିତ । ଓଡ଼ିଶାର ଲୋକ ସଙ୍ଗୀତ କ୍ଷେତ୍ରରେ ବିଶେଷ ଯୋଗ୍ୟତା ନିମନ୍ତେ ୧୯୮୯-୯୦ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ଶିଳ୍ପୀ ଶ୍ରୀ ରାଧାକୃଷ୍ଣ ଭଞ୍ଜଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରାଯାଇଛି ।

●

## ଶ୍ରୀ ମାଧବାନନ୍ଦ କର

ଧର୍ମଶାଳା, କଟକ

ଜନ୍ମ—୧୯୧୮, ଜୁଲାଇ ୯



ଓଡ଼ିଶା ପେଶାଦାର ରଙ୍ଗମଞ୍ଚର ଅନ୍ୟତମ ନିଷ୍ଠାବାନ୍ ଶିଳ୍ପୀ ଭାବେ ସୁପରିଚିତ ଶ୍ରୀ ମାଧବାନନ୍ଦ କର ୧୯୧୮ ମସିହା ଜୁଲାଇ ମାସ ୯ ତାରିଖରେ କଟକ ଜିଲ୍ଲାର ଧର୍ମଶାଳାଠାରେ ଜନ୍ମଗ୍ରହଣ କରିଥିଲେ । ୧୯୧୦ ମସିହାଠାରୁ ଯାଜପୁରର 'ଦୁର୍ଗାମଣି ଥିଏଟର୍'ରେ ତାଙ୍କର କଳାମୟ ଜୀବନ ଆରମ୍ଭ ହୋଇଥିଲେ ମଧ୍ୟ ୧୯୪୫ରେ ସେ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍‌ରେ ଯୋଗଦାନ କରି ଜଣେ କୃତୀ ଅଭିନେତା ଏବଂ ମଞ୍ଚ ସଂଗଠକ ରୂପେ ସ୍ୱୀୟ ଶିଳ୍ପୀ ଜୀବନକୁ ସାର୍ଥକ କରି ପାରିଥିଲେ ।

ସୁଦୀର୍ଘ ୩୬ ବର୍ଷ ଧରି ଅନ୍ନପୂର୍ଣ୍ଣା ବି' ଗ୍ରୁପ୍‌ର ପାଦପ୍ରଦୀପ ତଳେ 'ମ୍ୟାନେଜର', 'ମୂଲିଆ', 'ଭାଇ ଭଉଜ', 'ମାଣିକଯୋଡ଼ି', 'ପରଫସାଦ', 'କଲ୍ୟାଣୀ', 'ଡାକ ବଙ୍ଗଳା' ଓ 'ଅଶାନ୍ତ ଗ୍ରହ' ଆଦି ଅନ୍ୟୁନ ଦେଢ଼ଶହ ନାଟକରେ ସଫଳତାର ସହ ଅଭିନୟ କରି ଉଚ୍ଚ ପ୍ରଶଂସିତ ।

ପରବର୍ତ୍ତୀ ଜୀବନରେ ନାଟ୍ୟ ନିର୍ଦ୍ଦେଶନାର ଦାୟିତ୍ୱ ବହନ କରି ଉଦୀୟର ଦାୟାଦମାନଙ୍କୁ ନାଟ୍ୟ କ୍ଷେତ୍ରରେ ତାଲିମ ଦେଇ ଆସୁଛନ୍ତି । ୧୯୪୮ରୁ ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତ ଅଭିନେତା ଭାବେ ଅଦ୍ୟାବଧି ବେତାର ନାଟକମାନଙ୍କରେ ଅଂଶ ଗ୍ରହଣ କରି ଓଡ଼ିଶାର ଅଗଣିତ ଶ୍ରୋତାମାନଙ୍କୁ ଆନନ୍ଦ ଦେଇ ଆସୁଛନ୍ତି । ତାଙ୍କ ଶିଳ୍ପୀ ଜୀବନର ସାଧନାର ସ୍ୱୀକୃତି ସ୍ୱରୂପ ସେ ୧୯୬୫ରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଏବଂ ୧୯୮୦ରେ ଏକାମ୍ର ଥିଏଟର୍ ନିକଟରୁ ଅଭିନନ୍ଦନ ପ୍ରାପ୍ତ ହେବା ସହ ଉପାସନ ମଞ୍ଚ ଲାଭ କରିଥିଲେ ।

ଓଡ଼ିଶାର ରଙ୍ଗମଞ୍ଚ ଆନ୍ଦୋଳନରେ ତାଙ୍କର ବିଶେଷ ଭୂମିକା ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ତାଙ୍କୁ ୧୯୮୯-୯୦ ବର୍ଷରେ ସମ୍ମାନିତ ଏବଂ ପୁରସ୍କୃତ କରାଯାଇଛି ।



## ଶ୍ରୀ କୃଷ୍ଣଚନ୍ଦ୍ର ରଥ

ସତ୍ୟନାରାୟଣପୁର, ଗଞ୍ଜାମ

ଜନ୍ମ—୧୯୨୨, ଡିସେମ୍ବର ୨୮

ଓଡ଼ିଶା ରଙ୍ଗମଞ୍ଚ ଆନ୍ଦୋଳନର ଅନ୍ୟତମ ପ୍ରଧାନ ରଥୀ ଶ୍ରୀ କୃଷ୍ଣଚନ୍ଦ୍ର ରଥ ୧୯୨୨ ମସିହା ଡିସେମ୍ବର ମାସ ୨୮ ତାରିଖରେ ଗଞ୍ଜାମ ଜିଲ୍ଲାର ସତ୍ୟନାରାୟଣପୁର-ଠାରେ ଜନ୍ମଗ୍ରହଣ କରିଥିଲେ । ସ୍ୱର୍ଗତ କାଳୀଚରଣ ପଟ୍ଟନାୟକଙ୍କ ପଟ୍ଟଶିଷ୍ୟ ଭାବରେ ତାଙ୍କର ଶିଳ୍ପୀ ଜୀବନ ରଙ୍ଗମଞ୍ଚରୁ ଆରମ୍ଭ ହୁଏ । ନିଜ ଅଭିନୟ କାଳ ମଧ୍ୟରେ 'ଜୟଦେବ', 'ଭକ୍ତ' 'ଅତିବଡ଼ୀ ଜଗନ୍ନାଥ ଦାସ' ଏବଂ 'ରକ୍ତମାଟି' ଇତ୍ୟାଦି ନାଟକରେ ସଫଳ ଅଭିନୟ ମାଧ୍ୟମରେ ସେ ନିଜର କୃତିତ୍ୱର ପରିଚୟ ଦେଇଅଛନ୍ତି ।

ଓଡ଼ିଆ ରଙ୍ଗମଞ୍ଚର ବିକାଶ ନିମନ୍ତେ ଶିଳ୍ପୀଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରଥମ ବ୍ୟବସାୟିକ ରଙ୍ଗାଳୟ ପ୍ରତିଷ୍ଠାନ 'କୃଷ୍ଣ ରଙ୍ଗାଳୟ'ରୁ ତାଲିମ ପାଇ ସମ୍ପ୍ରତି ବହୁ ଯୁବକ ରାଜ୍ୟର ପୁରପଲ୍ଲୀରେ ରଙ୍ଗାଳୟମାନ ପ୍ରତିଷ୍ଠା କରି ଜୀବିକା ନିର୍ବାହ କରିପାରୁଛନ୍ତି । ଜଣେ କରିତ୍-କର୍ମା ସ୍ଥପତି ହିସାବରେ ଓଡ଼ିଶାର ବହୁ ବରେଣ୍ୟ ନରପୁଙ୍ଗବଙ୍କ ଅବିକଳ ପ୍ରତିମୂର୍ତ୍ତି ନିର୍ମାଣ କରି ସେ ଅଜସ୍ର ପ୍ରଶଂସା ସହ ପୁରସ୍କାର ଲାଭ କରି ଅଛନ୍ତି । ତାଙ୍କର ନିଜସ୍ୱ ପ୍ରଚେଷ୍ଟାରେ ନିର୍ମିତ ଓଡ଼ିଆ କଥାଚିତ୍ର 'ଶିନାଥ ମେଳା' ମୁକ୍ତିଲାଭ କରି ଓଡ଼ିଶାର ଦର୍ଶକମାନଙ୍କ ମନରେ ସାରସ୍ୱତ ଚେତନା ଜାଗ୍ରତ କରିପାରିଥିଲା ।

କଳା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ଓଡ଼ିଆ ନାଟକ ଶତାବ୍ଦୀ ଅବସରରେ ଉତ୍କଳ ନାଟ୍ୟସଂଘ, ଉତ୍କଳ ହିତୈଷିଣୀ ସମାଜ, ଅଲରନାଥ ସାଂସ୍କୃତିକ ସଂସଦ, ମଧୁମଣି ସାହିତ୍ୟ ସଂସଦ ଓ ଚିଲିକା ସାହିତ୍ୟ ସଂସଦ ଦ୍ୱାରା ଶ୍ରୀ ରଥ ଅଭିନନ୍ଦିତ ହୋଇଛନ୍ତି । ଏକାଧାରରେ ମଞ୍ଚ ଅଭିନେତା, ରୂପକାର, ସ୍ଥପତି, ଚଳଚ୍ଚିତ୍ର ପ୍ରଯୋଜକ ଓ ମଞ୍ଚକଳା ନିର୍ଦ୍ଦେଶକ ଭାବରେ ସୁଖ୍ୟାତ ଶ୍ରୀ ରଥଙ୍କୁ ତାଙ୍କର କୃତିତ୍ୱ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୮୯-୯୦ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।

●



## ଶ୍ରୀ ରାମଚନ୍ଦ୍ର ମହାପାତ୍ର

ପାଟଘର ସାହି, ରେମୁଣା, ବାଲେଶ୍ୱର

ଜନ୍ମ—୧୯୨୯, ଜୁଲାଇ ୧୫

ରାଜ୍ୟର ଅନ୍ୟତମ ପ୍ରତିଷ୍ଠିତ ସଙ୍ଗୀତସାଧକ ଶ୍ରୀ ରାମଚନ୍ଦ୍ର ମହାପାତ୍ର ୧୯୨୯ ମସିହା ଜୁଲାଇମାସ ୧୫ ତାରିଖରେ ବାଲେଶ୍ୱର ଜିଲ୍ଲାର ରେମୁଣା ନିକଟସ୍ଥ ପାଟଘରସାହି ଗ୍ରାମରେ ସ୍ୱ. ନାରାୟଣ ପ୍ରସାଦ ମହାପାତ୍ରଙ୍କର ଜ୍ୟେଷ୍ଠ ସନ୍ତାନ ଭାବେ ଜନ୍ମଗ୍ରହଣ କରିଥିଲେ । କିଶୋର ରାମଚନ୍ଦ୍ରଙ୍କର କଳାପ୍ରତି ବିଶେଷ ଆଗ୍ରହ ହେତୁ 'କିଶୋର ଥିଏଟରର୍ସ' ରେ ସେ ଯୋଗଦାନ କରି ଗୁରୁ ସ୍ୱ. ଭାଗବତ ମହାନ୍ତିଙ୍କ ନିକଟରୁ ସଙ୍ଗୀତ ଏବଂ ସ୍ୱ. ପୂର୍ଣ୍ଣଆ ପଣ୍ଡା ଏବଂ ପରେ ସ୍ୱ. ରାମବିହାରୀ ପ୍ରଧାନଙ୍କ ନିକଟରୁ ଛଉନୃତ୍ୟ ଶିକ୍ଷା କରିଥିଲେ । ପରବର୍ତ୍ତୀ କାଳରେ ସେ ନୀଳଗିରି ରାଜଭବନରେ ରହି ଶ୍ରୀ ସମରେନ୍ଦ୍ର ଦାସଙ୍କ ନିକଟରୁ ସିତାର ବାଦନ ଶିକ୍ଷା କରିବା ସହ ଗୁରୁ ନଗିବାବୁ, ବିନ୍ଦୁବାରିକଙ୍କ ନିକଟରୁ ତବଲା ବାଦନ ଶିକ୍ଷା କରିଥିଲେ । ୧୯୪୬ ରେ ଓଡ଼ିଶୀ ସଙ୍ଗୀତର ପ୍ରବୀଣ ଗୁରୁ ସ୍ୱ. ସିଂହାରୀ ଶ୍ୟାମସୁନ୍ଦର କରଙ୍କ ନିକଟରୁ ଓଡ଼ିଶୀ ସଙ୍ଗୀତ ଏବଂ ବିଖ୍ୟାତ ତବଲା ବାଦକ ସ୍ୱ. କ୍ଷେତ୍ରମୋହନ କରଙ୍କ ନିକଟରୁ ତବଲା ବାଦନ ଶିକ୍ଷାକରି ନିଜ କଳାକୁ ଅଧିକ ଋଦ୍ଧିମନ୍ତ କରି ପାରିଥିଲେ । ଶ୍ରୀ ମହାପାତ୍ର ଅନେକଦିନ ଜଣେ ରାଜନୀତିଜ୍ଞଭାବେ କମ୍ୟୁନିଷ୍ଟ ଦଳରେ କାର୍ଯ୍ୟ କରିଥିଲେ ମଧ୍ୟ ସଙ୍ଗୀତଠାରୁ କେବେହେଲେ ଦୂରେଇ ଯାଇନଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀ ମହାପାତ୍ର ସ୍ୱ. କବିଚନ୍ଦ୍ର କାଳୀଚରଣଙ୍କ ପ୍ରତିଷ୍ଠିତ 'ଓଡ଼ିଶା ଥିଏଟର୍ସ' ରେ ଜଣେ ସିତାର ବାଦକ ଭାବେ ଯୋଗ ଦେଇଥିଲେ ଏବଂ ପରେ ଅନ୍ନପୂର୍ଣ୍ଣା ଏ'ଗ୍ରୁପ୍ ରେ କାର୍ଯ୍ୟ କରିଥିଲେ । ଏହି ସମୟରେ ୧୯୪୮ ରେ କଟକ ବେତାର କେନ୍ଦ୍ର ପ୍ରତିଷ୍ଠିତ ହେବାପରେ ସେ ତହିଁରେ ଜଣେ ସ୍ୱୀକୃତ କଣ୍ଠଶିଳ୍ପୀ ରୂପେ ଯୋଗଦାନ କରି ଓଡ଼ିଶୀ, ଗ୍ରାମ୍ୟ, ଚମ୍ପୂ ଆଦି ପରିବେଷଣ କରି ଆସୁଥିଲେ । ଏହା ମଧ୍ୟରେ ସଙ୍ଗୀତରେ ଉଚ୍ଚଶିକ୍ଷା ଲାଭ ନିମନ୍ତେ ସେ ଲକ୍ଷ୍ନୌ ଗମନ କରି ସେଠାରେ ନିଜ ସାଧନାରେ ଉତ୍କର୍ଷତା ଆଣି ପାରିଥିଲେ । ଏହି ସମୟରେ ପ୍ରାଚୀନ କଳାକେନ୍ଦ୍ର ଚଣ୍ଡୀଗଡ଼ ଶିଳ୍ପୀଙ୍କୁ 'ସଙ୍ଗୀତ ବିଶାରଦ' ଉପାଧିରେ ଭୂଷିତ କରିଥିଲେ ।

୧୯୫୫-୫୬ ରେ ବାଲେଶ୍ୱର ସହରରେ ଗଢ଼ି ଉଠିଥିବା 'କଳାସଂସ୍କୃତି ପରିଷଦ' ରେ ମଧ୍ୟ ସେ ପ୍ରଥମେ ସଭ୍ୟ ଓ ପରେ ସମ୍ପାଦକର ଦାୟିତ୍ୱ ତୁଳାଇ ଥିଲେ । ଶ୍ରୀ ମହାପାତ୍ରଙ୍କ ପ୍ରଚେଷ୍ଟାରେ ବାଲେଶ୍ୱର ଓ ତାର ଆଖପାଖରେ ଅନେକଗୁଡ଼ିଏ କଳାକେନ୍ଦ୍ର ଗଢ଼ି ଉଠିଥିଲା । ତନ୍ମଧ୍ୟରେ ଦାମୋଦରପୁରଠାରେ 'କଳାକୁଞ୍ଜ' ସଙ୍ଗୀତ ବିଦ୍ୟାଳୟ, ଟାଉନ୍ ହଲ୍ ଠାରେ 'ନୃତ୍ୟ ସଙ୍ଗୀତ କଳା ମନ୍ଦିର', ନୀଳଗିରିଠାରେ କଳା ବିକାଶ କେନ୍ଦ୍ର ଓ ୧୯୭୨ ଠାରୁ ବାଲେଶ୍ୱରଠାରେ 'ସାଇ କଳା ମନ୍ଦିର' ପ୍ରତିଷ୍ଠା କରାଇ ତାହାର ମାଧ୍ୟମରେ ନିଜ କଳାସାଧନା ଅବ୍ୟାହତ ରଖି ପାରିଛନ୍ତି ।

ନିଜର ସଙ୍ଗୀତ ପରିବେଷଣ ଶୃଙ୍ଖଳା ନିମନ୍ତେ ସେ ରାଜ୍ୟମଧ୍ୟରେ ବହୁ କଳାନୁଷ୍ଠାନ ଦ୍ୱାରା ସମ୍ମାନିତ ହୋଇଥିବା ବେଳେ ୧୯୯୦-୯୧ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି । ଶ୍ରୀ ମହାପାତ୍ର ଏବେ ସାଇକଳାମନ୍ଦିରର ଅଧ୍ୟକ୍ଷଭାବେ କାର୍ଯ୍ୟ କରିବା ସହ ରେମୁଣା ଉଚ୍ଚଇଂରାଜୀ ବିଦ୍ୟାଳୟରେ ସଙ୍ଗୀତ ଶିକ୍ଷକ ଭାବେ କାର୍ଯ୍ୟ କରୁଛନ୍ତି । ସଙ୍ଗୀତ ପ୍ରତି କଠୋର ସାଧନା ଏବଂ ସମସ୍ତଙ୍କ ପ୍ରତି ମୈତ୍ରୀଭାବାପନ୍ନ ବ୍ୟବହାର ତାଙ୍କ ଚରିତ୍ରର ବିଶେଷତ୍ୱ ।

●

## ଶ୍ରୀ ସୋମନାଥ ଦାସ

ପୁରୀ

ଜନ୍ମ—୧୯୦୭, ନଭେମ୍ବର ୧୫



ପାରମ୍ପରିକ ଓଡ଼ିଶୀ ସଙ୍ଗୀତର ଜଣେ ସାଧନାସିଦ୍ଧ କଣ୍ଠଶିଳ୍ପୀରୂପେ ଶ୍ରୀ ସୋମନାଥ ଦାସ ସୁପରିଚିତ । ଶ୍ରୀମନ୍ଦିରକୁ କେନ୍ଦ୍ର କରି ପୁରୀ ଜିଲ୍ଲାର ଜାଗା, ଆଖଡ଼ା ଷୋଳଶାସନ ଓ ଛତିଶ କରବାଡ଼ରେ ପ୍ରଚଳିତ ବୈଠକୀ ଓଡ଼ିଶୀ ଗାୟନଶୈଳୀର ଜଣେ ପୁରାତନ ବର୍ଷୀୟାନ୍ ଓଡ଼ିଶୀ ଗାୟକ ଭାବରେ ଶିଳ୍ପୀ ଶ୍ରୀ ଦାସ ସ୍ୱୀୟ କୃତିତ୍ୱ ପାଇଁ ପ୍ରତିଷ୍ଠିତ । ମର୍ଦ୍ଦଳର ଉତ୍କୃଷ୍ଟ ତାଳରେ ଶିଳ୍ପୀ ତାଙ୍କର ବାଲ୍ୟ ଜୀବନରୁ ସ୍ୱର୍ଗତ ଗୁରୁ ବାଳ ସାହୁଙ୍କଠାରୁ ବହୁ ପ୍ରାଚୀନ ଓଡ଼ିଶୀ ଗୀତକୁ ଅଭ୍ୟାସ କରି ଆସିଛନ୍ତି । ଅକ୍ଷର ଛନ୍ଦରେ ଅଂଶାକଳାର ଗାୟନଶୈଳୀରେ ଶିଳ୍ପୀ ସିଦ୍ଧହସ୍ତ । ପ୍ରାଚୀନ ଗୀତ କବିମାନଙ୍କର ଗୀତ ଝଂରକୁ କଣ୍ଠସ୍ଥ କରି ସେ ବହୁ ମେଳା ମହୋତ୍ସବରେ ଓଡ଼ିଶୀ ସଙ୍ଗୀତ ଗାୟନ କରି ସମସ୍ତଙ୍କୁ ମୁଗ୍ଧ କରିଛନ୍ତି । ବୟସର ଅପରାହ୍ନରେ ମଧ୍ୟ ସେ ଅଦ୍ୟାବଧି ସଙ୍ଗୀତ ମୂର୍ଚ୍ଛନା ମଧ୍ୟରେ ଆତ୍ମବିସ୍ମୃତ ।

ଓଡ଼ିଶୀ ସଙ୍ଗୀତ ପ୍ରତି ତାଙ୍କର ଅସାମାନ୍ୟ ଅବଦାନକୁ ସ୍ୱୀକୃତି ଦେଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶିଳ୍ପୀ ଶ୍ରୀ ଦାସଙ୍କୁ ୧୯୯୦-୯୧ ମସିହାରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।

●



## ଶ୍ରୀ ନାରାୟଣ ବେହେରା

ମାଅଳା, ଗଞ୍ଜାମ

ଜନ୍ମ—୧୯୧୭, ଡିସେମ୍ବର ୧୪

ଓଡ଼ିଶୀ ସଙ୍ଗୀତରେ ଏକ ସ୍ୱତନ୍ତ୍ର ଶୈଳୀର ପ୍ରତିନିଧି ପ୍ରଖ୍ୟାତ କଣ୍ଠଶିଳ୍ପୀ ଶ୍ରୀ ନାରାୟଣ ବେହେରା ୧୯୧୭ ମସିହା ଡିସେମ୍ବର ମାସ ୧୪ ତାରିଖରେ ଗଞ୍ଜାମ ଜିଲ୍ଲାର ମାଅଳା ଗ୍ରାମରେ ୰ ଶ୍ରୀ ସାରଥି ବେହେରାଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । ନିଜ ପିତା ସଙ୍ଗୀତାନୁରାଗୀ ଥିବା କାରଣରୁ ଅନୁରୂପ ଭାବାପନ୍ନ ବାଳକ ନାରାୟଣ ବାଲ୍ୟକାଳରୁ କୀର୍ତ୍ତନ, ଭଜନ ଇତ୍ୟାଦିରେ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଥିଲେ । ତେଣୁ ପିତାଙ୍କ ଅଶେଷ ଚେଷ୍ଟା ସତ୍ତ୍ୱେ ଜାତଶିଳ୍ପୀ ଶ୍ରୀ ବେହେରା ଅଧ୍ୟୟନ ଅପେକ୍ଷା ସଙ୍ଗୀତ କଳା ପ୍ରତି ଅଧିକ ଅଭିନିବିଷ୍ଟ ହୋଇଥିଲେ ।

ମାତ୍ର ୧୧ ବର୍ଷ ବୟସରେ ପାରଳାଖେମୁଣ୍ଡି ସହରକୁ ଆସି କଳାପ୍ରେମୀ ୰ ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କର ପ୍ରେରଣାରେ ୰ ଆପଣା ପରିଚ୍ଛାଙ୍କ ପରିଚାଳିତ ନାଟ୍ୟ ସଂସ୍ଥାରେ ଯୋଗଦାନ କରି ନିଜର କଳାମୟ ଜୀବନ ଆରମ୍ଭ କରିଥିଲେ । ସ୍ୱୀୟ ଅଭିନୟପଟୁତା ଓ ସୁମଧୁର କଣ୍ଠରେ ସଙ୍ଗୀତ ପରିବେଷଣ କରି ଗଜପତିଙ୍କ ନିକଟରୁ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ସେ ଟମଲ ଗ୍ରାମର ଶ୍ରୀ ସୂର୍ଯ୍ୟନାରାୟଣ ଶାସ୍ତ୍ରୀଙ୍କ ନିକଟରୁ ଉଚ୍ଚାଙ୍ଗ କଣ୍ଠ ସଙ୍ଗୀତ ଶିକ୍ଷା କରି ବିଜୟନଗରମ୍‌ର ଗୁରୁ ଭେଙ୍କଟସ୍ୱାମୀ ନାଇଡୁଙ୍କ ଛାତ୍ର ରୂପେ କର୍ଣ୍ଣାଟକୀ ପଦ୍ଧତି ଶାସ୍ତ୍ରୀୟ ଗାୟନ ତଥା ବୀଣାବାଦନ ଶିକ୍ଷା କରିଥିଲେ । ଏହି ସମୟରେ ବିଭିନ୍ନ ରାଜଦରବାରରେ ନିଜ କଳା ପ୍ରଦର୍ଶନ କରି ସେ ବହୁ ସମ୍ମାନ ଏବଂ ପୁରସ୍କାର ଲାଭ କରିଥିଲେ । ଏହା ୧୯୩୮ ମସିହା ଏବଂ ୧୯୪୬ ମସିହା ମଧ୍ୟର କଥା । ସ୍ୱାଧୀନତା ପରେ ଗଡ଼ଜାତ ମିଶ୍ରଣ ପରେ ଶ୍ରୀ ବେହେରା ଆକାଶବାଣୀ କଲିକତା କେନ୍ଦ୍ରରେ ନିଜର କଳା ପ୍ରଦର୍ଶନ କରି ବହୁ ଖ୍ୟାତି ଅର୍ଜନ କରିଥିଲେ । ୧୯୫୬ରେ ଶ୍ରୀ ବେହେରା ନିଜ ଜନ୍ମଭୂମିକୁ ଫେରି ବ୍ରହ୍ମପୁରଠାରେ ପୌରସଂସ୍ଥା ବିଦ୍ୟାଳୟରେ ସଙ୍ଗୀତ ଶିକ୍ଷକ

ରୂପେ କାର୍ଯ୍ୟ କରିଥିଲେ ଏବଂ କଳାପରିଷଦ ସହ ସଂଶ୍ଳିଷ୍ଟ ରହି ବିଭିନ୍ନ ଅନୁଷ୍ଠାନରେ ନିଜର କଳାନୈପୁଣ୍ୟ ପ୍ରଦର୍ଶନ କରି ପ୍ରସିଦ୍ଧି ଲାଭ କରିଥିଲେ ।

୧୯୪୮ରେ କଟକ ବେତାର କେନ୍ଦ୍ରରେ ସ୍ୱୀକୃତ କଣ୍ଠଶିଳ୍ପୀ ଭାବରେ ଯୋଗଦାନ କରି ଶ୍ରୀ ବେହେରା ତହିଁରେ ଅଦ୍ୟାବଧି ଓଡ଼ିଶୀ, ଛାନ୍ଦ, ଚମ୍ପୂ ଇତ୍ୟାଦି ଗାନ କରି ଆସୁଛନ୍ତି । କର୍ଣ୍ଣାଟକୀ ଶୈଳୀର ସମ୍ମିଶ୍ରଣରେ ତାଙ୍କ ପରିବେଷିତ ଓଡ଼ିଶୀ ସଙ୍ଗୀତ ଏକ ସ୍ୱତନ୍ତ୍ର ଶୈଳୀର ବାର୍ତ୍ତାବହ । ନିଜର ଅସାଧାରଣ କୃତିତ୍ୱ ନିମନ୍ତେ ସେ ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ଏବଂ ପୁରସ୍କୃତ । ତନ୍ମଧ୍ୟରେ ପାରଳାଖେମୁଣ୍ଡିର ଉତ୍କଳ ହିତୈଷିଣୀ ସମାଜ, ଭକ୍ତ ସଙ୍ଗୀତ ସଂସଦ, ବ୍ରହ୍ମପୁରର ଗଞ୍ଜାମ ସଂଗୀତ କଳା ପରିଷଦ ଏବଂ 'ଗୀତମ୍' ସଂଗୀତ ସଂସ୍ଥା ସବୁର ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଶୀ ସଂଗୀତକୁ ତାଙ୍କର ଏତାଦୃଶ ବିଶେଷ ଅବଦାନ ନିମନ୍ତେ ୧୯୯୦-୯୧ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶିଳ୍ପୀଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।

ଶ୍ରୀ ନାରାୟଣ ବେହେରା ୧୯୭୫ରେ ଚାକିରିରୁ ଅବସର ଗ୍ରହଣ କରିଥିଲେ ମଧ୍ୟ କଳାଚର୍ଚ୍ଚାରୁ ନିଜକୁ ଦୂରେଇ ନେଇନାହାନ୍ତି । ବ୍ରହ୍ମପୁରଠାରେ ଛାତ୍ରଛାତ୍ରୀମାନଙ୍କୁ ଓଡ଼ିଶୀ ଶାସ୍ତ୍ରୀୟ କଣ୍ଠ ସଂଗୀତ ଏବଂ ଶାସ୍ତ୍ରୀୟ ବୀଣାବାଦନ ଶିକ୍ଷା ଦେଇ ସେ ସମୟ ଅତିବାହିତ କରୁଅଛନ୍ତି ।

●

# ଶ୍ରୀ ଗୋପୀନାଥ ବେହେରା

**ଗଞ୍ଜାମ**

**ଜନ୍ମ – ୧୯୧୯, ଜାନୁୟାରୀ ୧୫**

ଓଡ଼ିଶାର ଲୋକନୃତ୍ୟ ନାଟ୍ୟକଳାର ବିକାଶ ଧାରାରେ ଶ୍ରୀ ଗୋପୀନାଥ ବେହେରାଙ୍କ ଅବଦାନ ସର୍ବଜନ ସ୍ୱୀକୃତ । ପିଲାଟି ଦିନରୁ ନିଜ ପିତାଙ୍କ ନିକଟରୁ ସଙ୍ଗୀତ ଓ ବାଦ୍ୟ ଶିକ୍ଷା କରି ସେ ନିଜ ଜୀବନକୁ ସଙ୍ଗୀତଚର୍ଚ୍ଚା ନିମନ୍ତେ ଉତ୍ସର୍ଗ କରି ଦେଇଥିଲେ । ଗଞ୍ଜାମର ସଖୀନାଚ ଗୁରୁ ରଘୁନାଥ ପୁରୋହିତଙ୍କଠାରୁ ବିଭିନ୍ନ ବାଦ୍ୟ ଶିକ୍ଷା କରି ଶାସ୍ତ୍ରୀୟ ସଙ୍ଗୀତର ଧାରା ଉପରେ ଆଧାରିତ ଲୋକନାଟ୍ୟ 'ପ୍ରହ୍ଲାଦ' ନାଟକରେ ମର୍ଦ୍ଦଳ ବାଦକ ଭାବରେ କାର୍ଯ୍ୟ କରି ସେ ବହୁ ପ୍ରଶଂସା ଲାଭ କରିଥିଲେ । ପରବର୍ତ୍ତୀ ଜୀବନରେ ସେ ସଖୀନାଚ, ରାମନାଟକ, ଦଣ୍ଡନାଟ ଓ ସଙ୍କୀର୍ତ୍ତନମଣ୍ଡଳୀରେ ମର୍ଦ୍ଦଳ ବାଦନ କରି ଶତ ମୁଖରେ ଉଚ୍ଚପ୍ରଶଂସା ଲାଭ କରିଛନ୍ତି । ସ୍ୱୀୟ କଳାଚର୍ଚ୍ଚା ପାଇଁ ସେ ବହୁ ରାଜ-ଦରବାରରେ ସମ୍ମାନିତ ଏବଂ ପୁରସ୍କୃତ ।

ଓଡ଼ିଶାର ଲୋକନାଟ୍ୟକଳାର ବାଦ୍ୟକାର ଭାବେ ତାଙ୍କର ପ୍ରତିଭାକୁ ସମ୍ମାନ ଦେଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶିଳ୍ପୀଙ୍କୁ ୧୯୯୦-୯୧ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି । ବାଦନ କ୍ଷେତ୍ରରେ ନିଜର ଉଲ୍ଲେଖନୀୟ ସଫଳତା ଶ୍ରୀ ବେହେରାଙ୍କୁ ଚିରଦିନ ଅମର କରି ରଖିବ ।

## ଗୁରୁ ଶ୍ରୀ ଗୋପୀନାଥ ବେହେରା

ଚର୍ଚ୍ଚିକା, କଟକ

ଜନ୍ମ—୧୯୩୦, ସେପ୍ଟେମ୍ବର ୧୦



ଓଡ଼ିଆ ରଙ୍ଗମଞ୍ଚର ଜଣେ ସୁନାମଧନ୍ୟ ନୃତ୍ୟ ନିର୍ଦ୍ଦେଶକ ଏବଂ ଅଭିନେତା ରୂପେ ସୁପରିଚିତ ଗୁରୁ ଗୋପୀନାଥ ବେହେରା କଟକ ଜିଲ୍ଲାର ବାଙ୍କୀ ନିକଟବର୍ତ୍ତୀ ଚର୍ଚ୍ଚିକା ଗ୍ରାମରେ ୧୯୩୦ ମସିହା ସେପ୍ଟେମ୍ବର ମାସ ୧୦ ତାରିଖରେ ସ୍ୱ. ସୁବଳ ବେହେରାଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । କଳାକାର ଜୀବନ ଆରମ୍ଭର ପ୍ରଥମ ପର୍ଯ୍ୟାୟରେ ଶ୍ରୀ ବେହେରା ବାଲ୍ୟ ସମୟରୁ ସ୍ୱ. ହରିହର ରାଉତଙ୍କ ନିକଟରୁ ପାଦ ସାଧନା ଶିକ୍ଷା କରି ଗୁରୁ ପଦ୍ମନାଭ ସାହୁଙ୍କ ନିକଟରୁ ନୃତ୍ୟଶିକ୍ଷା ଲାଭ କରିଥିଲେ । ନୃତ୍ୟ ବ୍ୟତୀତ ନିଜ ଜୀବନର ପ୍ରଥମ ଅଭିନୟ ଶିକ୍ଷା ସ୍ୱ. ଶ୍ରୀ ରାଧେଶ୍ୟାମ ଦାସଙ୍କ ନିକଟରୁ ଆରମ୍ଭ କରିଥିଲେ ଏବଂ ପରବର୍ତ୍ତୀ ଅବସ୍ଥାରେ ଓଡ଼ିଶା ଥିଏଟର୍ସରେ ଯୋଗ ଦେଇ ସ୍ୱ. କବିଚନ୍ଦ୍ରଙ୍କ ନିକଟରୁ ମଞ୍ଚକଳା ସମ୍ବନ୍ଧରେ ସବିଶେଷ ଜ୍ଞାନ ଲାଭ କରିବା ପରେ କିଛିଦିନ ବରଗଡ଼ର 'ସଦାନନ୍ଦ ନାଟ୍ୟ ନିକେତନ'ରେ ନୃତ୍ୟ ଶିକ୍ଷକ ଭାବରେ କାର୍ଯ୍ୟ କରିଥିଲେ । ସେଠାରୁ ଫେରି ଅନ୍ନପୂର୍ଣ୍ଣା ଥିଏଟର୍ସରେ ପେଷାଦାର କଳାକାର ଭାବରେ ଯୋଗଦାନ କରିଥିଲେ ମଧ୍ୟ କିଛି ସମୟ ନିମନ୍ତେ ଦିଲ୍ଲୀସ୍ଥିତ ନାଟ୍ୟ ବ୍ୟାଲେ ସେଣ୍ଟର୍‌ରେ 'କୃଷ୍ଣଲୀଳା' ଦଳରେ କାର୍ଯ୍ୟ କରିଛନ୍ତି । ଅଧୁନା ଓଡ଼ିଆ ଯାତ୍ରା ଜଗତର ବୟୋଜ୍ୟେଷ୍ଠ ଏବଂ ପ୍ରତିଷ୍ଠିତ ନୃତ୍ୟ ନିର୍ଦ୍ଦେଶକ ତଥା ପରିଚାଳକ ଭାବରେ ବହୁ ସୁଖ୍ୟାତି ଅର୍ଜନ କରି ଓଡ଼ିଶାର ପୁରପଲ୍ଲୀରେ ସୁପରିଚିତ । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ କାର୍ଯ୍ୟ କରୁଥିବା ସମୟରେ ଅଭିନେତା ନିର୍ଦ୍ଦେଶକ ଶ୍ରୀ ଦୁର୍ଲଭ ସିଂହଙ୍କ ନିକଟରୁ ଅଭିନୟ କଳା ସମ୍ବନ୍ଧରେ, ସେ ବିଶେଷ ଜ୍ଞାନ ଲାଭ କରିଥିଲେ ।

ନିଜର କଳା ପାଣ୍ଡିତ୍ୟ ନିମନ୍ତେ ଶ୍ରୀ ବେହେରା ୧୯୮୮ରେ ରାଜ୍ୟସ୍ତରୀୟ ଯାତ୍ରା ଉତ୍ସବରେ ଶ୍ରେଷ୍ଠ ନୃତ୍ୟ ନିର୍ଦ୍ଦେଶକ ଭାବରେ ପୁରସ୍କୃତ । ଖଡିଆଳ ସାହିତ୍ୟ ସମିତି, ଓଡ଼ିଶା ନୃତ୍ୟ ଏକାଡେମୀ, ଲୋକ ନାଟକ ଉତ୍ସବ, ରାଉରକେଲା ସାଂସ୍କୃତିକ ଏକାଡେମୀ ଦ୍ୱାରା

ସମ୍ମାନିତ ହେବା ସଙ୍ଗେ ସଙ୍ଗେ ୧୯୯୦-୯୧ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ କର୍ତ୍ତୃକ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ ।

ନୃତ୍ୟ ନିର୍ଦ୍ଦେଶକ ଭାବରେ ଓଡ଼ିଆ ଚଳଚ୍ଚିତ୍ର ମନ ଆକାଶ, ସିନ୍ଦୂର ବିନ୍ଦୁ, ଚିଲିକା ତୀରେ ଏବଂ ଜିନାଥମେଲା କଥାଚିତ୍ରରେ କାର୍ଯ୍ୟକରି ସେ ଉଚ୍ଚପ୍ରଶଂସିତ ।

ଗୁରୁ ଶ୍ରୀ ବେହେରା ଏକାଧାରରେ ଜଣେ ସଫଳ ନୃତ୍ୟ ଶିଳ୍ପୀ, ନୃତ୍ୟ ନିର୍ଦ୍ଦେଶକ, ସଂଯୋଜକ, ଗୀତିକାର, ଗାୟକ, ମଞ୍ଚ ନିର୍ଦ୍ଦେଶକ ଏବଂ ଅଭିନେତା ଭାବରେ ନିଜର ବହୁମୁଖୀ ପ୍ରତିଭା ପ୍ରତିପାଦିତ କରି ପାରିଛନ୍ତି । ଅପେରା (ଯାତ୍ରା) ଜଗତର ଯୁଗ୍ମନୃତ୍ୟ ସଂଯୋଜନା ବେଳେ ସାମାଜିକ ସଂସ୍କାର ଯଥା ନିଶା ନିବାରଣ, ପ୍ରୌଢ଼ଶିକ୍ଷା, ଜନ୍ମ ନିୟନ୍ତ୍ରଣ ତଥା ଅନ୍ୟାନ୍ୟ ଯୋଜନା ଓ ସରକାରୀ ନୀତି ସବୁ ଦର୍ଶକମାନଙ୍କ ଆଗରେ ଆକର୍ଷଣୀୟ ଭଙ୍ଗୀରେ ଶାଳୀନତା ସହ ଉପସ୍ଥାପିତ କରି ମନୋରଞ୍ଜନ ସହିତ ଜନ-ଚେତନା ସୃଷ୍ଟି କରିବାର ଅନନ୍ୟ ପ୍ରଚେଷ୍ଟା କେବଳ ଗୁରୁ ଶ୍ରୀ ଗୋପୀନାଥ ବେହେରାଙ୍କ କାର୍ଯ୍ୟକ୍ରମରେ ହିଁ ବିଶେଷ ପରିଦୃଷ୍ଟ । ପରିଣତ ବୟସ୍କ ଏହି କଳାସାଧକ ସାରା ଓଡ଼ିଶାର ଗୌରବ ।

●

## ଶ୍ରୀ ମାଗୁଣି ଚରଣ ଦାସ

ରଘୁରାଜପୁର, ପୁରୀ

ଜନ୍ମ--୧୯୨୧, ଅଗଷ୍ଟ ୫



ଗୋଟିପୁଅ ନୃତ୍ୟପରମ୍ପରାର ଅନ୍ୟତମ ଏକନିଷ୍ଠ ସାଧକ ଗୁରୁ ଶ୍ରୀ ମାଗୁଣିଚରଣ ଦାସ ୧୯୨୧ ମସିହା ଅଗଷ୍ଟ ମାସ ୫ ତାରିଖରେ ପୁରୀ ଜିଲ୍ଲାର ରଘୁରାଜପୁର ଗ୍ରାମରେ ୰ କୁଳମଣି ଦାସଙ୍କ ପୁତ୍ର ଭାବେ ଏକ ବଂଶୀୟ ଚିତ୍ରକାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲେ ମଧ୍ୟ ପିଲାଦିନରୁ ନୃତ୍ୟ ସଙ୍ଗୀତ ପ୍ରତି ତାଙ୍କର ଜନ୍ମଗତ ଆକର୍ଷଣକୁ ଲକ୍ଷ୍ୟ କରି ତାଙ୍କ ପିତା ତାଙ୍କ ନିମନ୍ତେ ଜଣେ ନୃତ୍ୟ ଗୃହଶିକ୍ଷକ ରଖି ତାଙ୍କର କଳାକାର ଜୀବନ ଆରମ୍ଭ କରାଇ ଦେଇଥିଲେ । ନିଜର ପ୍ରଥମ ଗୁରୁ ୰ ପଦ୍ମନାଭ ମିଶ୍ରଙ୍କ ନିକଟରୁ ବିଭିନ୍ନ ବାଦ୍ୟ ଏବଂ ନୃତ୍ୟ ଶିକ୍ଷା କରି ସେ ନିଜ ଗ୍ରାମର ଯାତ୍ରାଦଳରେ ଯୋଗଦାନ କରି ତହିଁରେ ମୁଖ୍ୟ ନାୟିକା ଭୂମିକାରେ ଅଭିନୟ କରି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ପରବର୍ତ୍ତୀ ଜୀବନରେ ସେ ଆଜିର ପ୍ରଖ୍ୟାତ ନୃତ୍ୟଗୁରୁ କେଳୁଚରଣ ମହାପାତ୍ରଙ୍କ ସହ ତତ୍କାଳୀନ ପ୍ରସିଦ୍ଧ ଗୋଟିପୁଅ ନୃତ୍ୟଗୁରୁ ୰ ବଳଭଦ୍ର ସାହୁଙ୍କ ନିକଟରୁ ନୃତ୍ୟଶିକ୍ଷା କରି ବିଭିନ୍ନ ସ୍ଥାନରେ ତାହା ପରିବେଷଣ କରି ବହୁ ପ୍ରଶଂସା ଲାଭ କରିଥିଲେ ।

ସର୍ବଦା ନୃତ୍ୟ ସଙ୍ଗୀତରେ ମାତି ରହୁଥିବାରୁ ତାଙ୍କର ଆର୍ଥିକ ଦୁର୍ଗତି ଦେଖା ଦେଇଥିଲେ ମଧ୍ୟ ସେ ତହିଁରେ ହତୋତ୍ସାହ ନହୋଇ ଏକ ଗୋଟିପୁଅ ନୃତ୍ୟଦଳ ଗଠନ କରିଥିଲେ ଏବଂ ତାହା ଅଦ୍ୟାବଧି କାର୍ଯ୍ୟ କରୁଅଛି । ଏ ମଧ୍ୟରେ ତାଙ୍କର ଦୃଷ୍ଟିଶକ୍ତି ଠିକ୍ କରାଇବା ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସାହାଯ୍ୟ ମଧ୍ୟ କରିଛନ୍ତି । ନିଜର କଳା ପରିବେଷଣ ନିମନ୍ତେ ଶ୍ରୀ ଦାସ ବହୁ ବିଶିଷ୍ଟ ସାଂସ୍କୃତିକ ଅନୁଷ୍ଠାନରେ ଅଂଶ ଗ୍ରହଣ କରି ପ୍ରଶଂସା ଲାଭ କରିଅଛନ୍ତି । ତନ୍ମଧ୍ୟରେ ୧୯୮୫ ମସିହାରେ ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳ ପକ୍ଷରୁ ଆୟୋଜିତ ଦିଲ୍ଲୀଠାରେ ହୋଇଥିବା ସାଂସ୍କୃତିକ ଅନୁଷ୍ଠାନ, ୧୯୮୬ରେ କୋଣାର୍କଠାରେ ଅନୁଷ୍ଠିତ ଗୋଟିପୁଅ ମେଳା, ୧୯୯୦ରେ ହୃଚନା

ଭବନଠାରେ ସଙ୍ଗୀତ ନାଟକ ଏକାଡେମୀ କର୍ତ୍ତୃକ ଅନୁଷ୍ଠିତ ଗୋଟିପୁଅ ମେଳାର ନାମ ଉଲ୍ଲେଖଯୋଗ୍ୟ । ଏହି ସମୟରେ ରାଜ୍ୟସ୍ତରରେ 'ଗୋଟିପୁଅ ନୃତ୍ୟ କଳାକାର ସଙ୍ଘ' ଗଠିତ ହୋଇଥିଲା ଏବଂ ଶ୍ରୀ ଦାସ ତହିଁର ସ୍ଥାୟୀ ସଭାପତି ଭାବରେ ନିର୍ବାଚିତ ହେଲେ । ନିଜ ପ୍ରତିଷ୍ଠିତ ଗୋଟିପୁଅ ଅନୁଷ୍ଠାନ 'ଦଶଭୂଜା ଗୋଟିପୁଅ ନୃତ୍ୟ ପରିଷଦ'କୁ ନେଇ ସେ ୧୯୯୧ରେ ନୂଆଦିଲ୍ଲୀଠାରେ ଆୟୋଜିତ ଓଡ଼ିଶା ଉତ୍ସବରେ ଯୋଗଦାନ କରି ଓଡ଼ିଶାର ଏହି ପାରମ୍ପରିକ ନୃତ୍ୟକୁ ରାଜ୍ୟବାହାରେ ପରିଚିତ କରାଇପାରିଛନ୍ତି ।

ଓଡ଼ିଶାର ନୃତ୍ୟଜଗତପ୍ରତି ତାଙ୍କର ଏହି ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ଦାସଙ୍କୁ ୧୯୯୦-୯୧ ବର୍ଷ ନିମନ୍ତେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି । ଓଡ଼ିଶୀ ଗୋଟିପୁଅ ନୃତ୍ୟ କ୍ଷେତ୍ରରେ ମୌଳିକତା ସୃଷ୍ଟି ଏବଂ ସମନ୍ୱୟ ନିମନ୍ତେ ସେ ଓଡ଼ିଶାର ନାଟ୍ୟପ୍ରେମୀଙ୍କ ନିକଟରେ ସବୁଦିନ ପାଇଁ ଆଦରର ପାତ୍ର ହୋଇ ରହିବେ ।

●

## ଶ୍ରୀ ବୈଷ୍ଣବ ଚରଣ ପ୍ରଧାନ

**ଦାମୋଦରପୁର, କଟକ**

**ଜନ୍ମ—୧୯୧୮, ଅଗଷ୍ଟ ୧୪**



ଓଡ଼ିଶା ପାଲା ଗାୟକ ଜଗତର ଅନ୍ୟତମ କୃତୀ ସନ୍ତାନ ଶ୍ରୀ ବୈଷ୍ଣବ ଚରଣ ପ୍ରଧାନ ୧୯୧୮ ମସିହା ଅଗଷ୍ଟ ମାସ ୧୪ ତାରିଖରେ କଟକ ଜିଲ୍ଲା ଅନ୍ତର୍ଗତ ଦାମୋଦରପୁର ଗ୍ରାମରେ ସ୍ୱର୍ଗତ ନରହରି ପ୍ରଧାନଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । ଶୋଚନୀୟ ଆର୍ଥିକ ଦୁର୍ଗତି ହେତୁ ଗ୍ରାମ୍ୟ ଚାଟଶାଳୀ ଠାରୁ ପଢ଼ା ଶେଷ କରି ସେ କୁଲଥା ଗ୍ରାମର ସଂସ୍କୃତ ଟୋଲ୍‌ରେ ପ. ବାସୁଦେବ ଦାଶଙ୍କ ତତ୍ତ୍ୱାବଧାନରେ ସଂସ୍କୃତ ଶିକ୍ଷା କରି ପ୍ରାଚୀନ ସାହିତ୍ୟ ଏବଂ ପୁରାଣ ଆଦିରେ ଯଥେଷ୍ଟ ଜ୍ଞାନ ଆହରଣ କରିଥିଲେ । ପ୍ରାଚୀନ ରାଗରାଗିଣୀର ଗାୟନ କରିବାରେ ତାଙ୍କର ଦକ୍ଷତା ଦେଖି ତାଙ୍କ ଗ୍ରାମର [illegible] ଜଗିରାମ [illegible] ଏକ ପାଲା ଦଳ ଗଠନ କରି ତହିଁରେ ଶ୍ରୀ ପ୍ରଧାନଙ୍କ ବାୟକ କାର୍ଯ୍ୟ ଦେଇଥିଲେ । ପରବର୍ତ୍ତୀ ସମୟରେ ଆହୁରି ଅଧ୍ୟୟନ ପରେ ଶ୍ରୀ ପ୍ରଧାନ ମାତ୍ର କୋଡ଼ିଏ ବର୍ଷ ବୟସରେ ନିଜକୁ ପାଲା ଗାୟକ ଭାବରେ ନିଜ ଗ୍ରାମରେ ଉପସ୍ଥାପିତ କରି ପ୍ରଥମ ପଦାର୍ପଣରେ ହିଁ ସମସ୍ତଙ୍କର ଅକୁଣ୍ଠ ପ୍ରଶଂସା ଲାଭ କଲେ । ତା'ପରେ ତାଙ୍କର ଦୀର୍ଘ କର୍ମମୟ ଜୀବନ ଆରମ୍ଭ କରି ସେ ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ପାଲାଗାୟନ କରି ବହୁ ରାଜଦରବାରରେ ପୁରସ୍କୃତ ହୋଇଥିଲେ । ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ନିର୍ଭୁଲ୍ ଗାୟନ ଏବଂ ବ୍ୟାଖ୍ୟା କରି, ସୁଲଳିତ କଣ୍ଠରେ ଛାନ୍ଦ, ଚମ୍ପୂ ଓ ଚଉପଦୀ ଗାନ କରି ସମସ୍ତଙ୍କୁ ମୁଗ୍ଧ କରିବା ସହ ରାଜ୍ୟ ବାହାରେ ମଧ୍ୟ ସାହିତ୍ୟପ୍ରେମୀ ଜନଗଣଙ୍କଦ୍ୱାରା ଉଚ୍ଚପ୍ରଶଂସିତ ହୋଇଥିଲେ । ରାଗରାଗିଣୀଭିତ୍ତିକ ସ୍ୱୀୟ ଗାୟନଶୈଳୀ ପାଇଁ ସେ ଓଡ଼ିଶାର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ତଥା ସାଂସ୍କୃତିକ ଅନୁଷ୍ଠାନ ତରଫରୁ ସମ୍ମାନ ଏବଂ ପ୍ରଶଂସା ଲାଭ କରିଅଛନ୍ତି । ପାଲାଗାୟନ ମାଧ୍ୟମରେ ସ୍ୱାଧୀନତା ସଂଗ୍ରାମକୁ ତେଜାଇବାରେ ସେ ମଧ୍ୟ ସେତେବେଳେ ବିଶେଷ ଭୂମିକା ଗ୍ରହଣ କରିଥିଲେ ।

ନିଜର ସାହିତ୍ୟ ପରିବେଷଣ ମଧ୍ୟରେ ସେ ଶସ୍ତା ସାହିତ୍ୟକୁ ଆଦୌ ସ୍ଥାନ ଦେଉ ନଥିଲେ । ସଂସ୍କୃତି ନାମରେ ପାଲା ମାଧ୍ୟମରେ ପରିବେଷିତ ଅଶ୍ଳୀଳ ଓ ଅପ୍ରାସଙ୍ଗିକ ସାହିତ୍ୟକୁ ସେ ସର୍ବଦା ବିରୋଧ କରି ଆସିଛନ୍ତି । ପ୍ରାଚୀନ ସଂସ୍କୃତ ସାହିତ୍ୟ ନୈଷଧ କାବ୍ୟର ପରିବେଷଣରେ ସେ ସର୍ବଶ୍ରେଷ୍ଠ ପାଲକାର ଭାବରେ ସ୍ୱୀକୃତ । ତାଙ୍କ ଦ୍ୱାରା ରଚିତ ଅପ୍ରକାଶିତ 'ଶ୍ରୀରାମ ଅଭିଷେକ' କାବ୍ୟ ଅତ୍ୟନ୍ତ ହୃଦୟସ୍ପର୍ଶୀ ଏବଂ ଓଡ଼ିଶା ସାହିତ୍ୟ ଜଗତର ଏକ ଅମୂଲ୍ୟ ରତ୍ନ । ଏହା ବ୍ୟତୀତ ଶ୍ରୀ ପ୍ରଧାନଙ୍କର ବହୁ କବିତା ଓ କାବ୍ୟକୃତ ଅନ୍ୟାନ୍ୟ ପାଲା ଗାୟକମାନଙ୍କ ଦ୍ୱାରା ଆଦୃତ, ମାତ୍ର ଅପ୍ରକାଶିତ । ଶ୍ରୀ ପ୍ରଧାନ ନିଖିଳ ଉତ୍କଳ ପାଲା ଗାୟକ ପରିଷଦର ଦୀର୍ଘ ଦିନ ଧରି ସଦସ୍ୟ ଥିଲେ । ପାଲା ଗାୟନରେ ନିଜର ପଟୁତା ତଥା ବାଗ୍ମିତା ପାଇଁ ଶ୍ରୀ ପ୍ରଧାନ ଗାୟକସମ୍ରାଟ୍ ଉପାଧି ପ୍ରାପ୍ତ । ଓଡ଼ିଆ ସାହିତ୍ୟ ଓ ସଙ୍ଗୀତ ଜଗତକୁ ତାଙ୍କର ବିଶେଷ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ପ୍ରଧାନଙ୍କୁ ୧୯୯୦-୯୧ ବର୍ଷରେ ଅଭିନନ୍ଦିତ ଏବଂ ପୁରସ୍କୃତ କରିଛନ୍ତି । ପ୍ରାଚୀନ ସଂସ୍କୃତି ସହିତ ପରିଚୟ, ନୀତିଶିକ୍ଷା, ସଂସ୍କୃତି ସଚେତନତା, ଧର୍ମ ବିଶ୍ୱାସ, ସାଂପ୍ରଦାୟିକତାର ବିଲୋପ, ଜାତୀୟ ସଂହତି ରକ୍ଷା ଓ ପରିବେଶ ସୁରକ୍ଷା ଆଦି ମୌଳିକ ସମସ୍ୟା ସବୁକୁ ନିଜ ପାଲା ମାଧ୍ୟମରେ ସଫଳ ଭାବେ ଓଡ଼ିଶା ଲୋକମାନଙ୍କ ଚକ୍ଷୁ ସମ୍ମୁଖରେ ତୋଳି ଧରିଥିବା ଏହି ବାଣୀ ବରପୁତ୍ର ଶ୍ରୀ ବୈଷ୍ଣବ ପ୍ରଧାନ ସବୁଦିନେ ରାଜ୍ୟବାସୀଙ୍କ ନିକଟରେ ଅତିପ୍ରିୟ ହୋଇ ରହିଥିବେ ।

# ଶ୍ରୀ ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ

**ମୁଣ୍ଡହଟା, କାକଟପୁର, ପୁରୀ**

**ଜନ୍ମ—୧୯୩୦, ନଭେମ୍ବର ୨୪**



ଓଡ଼ିଶାର ନାଟ୍ୟସାହିତ୍ୟ ଆନ୍ଦୋଳନର ଅନ୍ୟତମ ସଫଳ ରଥୀ ଶ୍ରୀ ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ ୧୯୩୦ ମସିହା ନଭେମ୍ବର ମାସ ୨୪ ତାରିଖରେ ପୁରୀ ଜିଲ୍ଲାର କାକଟପୁର ନିକଟସ୍ଥ ମୁଣ୍ଡହଟା ଗ୍ରାମର ସମ୍ଭ୍ରାନ୍ତ ଜମିଦାର ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ଶ୍ରୀ ବ୍ରଜକିଶୋର କାନୁନ୍‌ଗୋ ଓ ମାତାଙ୍କ ନାମ ଶରତ କୁମାରୀ ଦେବୀ । ୧୯୫୧ରେ ରେଭେନ୍ସା ମହାବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରି ୧୯୫୩ରେ ମଧୁସୂଦନ ଆଇନ ମହାବିଦ୍ୟାଳୟରୁ ଆଇନ ଶାସ୍ତ୍ରରେ ସ୍ନାତକ ଉପାଧି ଲଭି କରିଥିଲେ ହେଁ ଛାତ୍ରଜୀବନର ଗତାନୁଗତିକ ପରିସର ମଧ୍ୟରେ ରହି ସେ ସାହିତ୍ୟ ପ୍ରତି ମନୋନିବେଶ କରିପାରିଥିଲେ । ସେହି ସମୟରେ ତାଙ୍କ ସୃଷ୍ଟ ଅନେକ ଗଳ୍ପ, ରହସ୍ୟ ଗଳ୍ପ, କବିତା ଇତ୍ୟାଦି, ପ୍ରଜାତନ୍ତ୍ର, ଦିଗନ୍ତ ଓ ଆମନ୍ତ୍ରାକାଳ ଆଦି ମୁଖ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଆଇନ ବ୍ୟବସାୟକୁ ପେଷା ଭାବରେ ଗ୍ରହଣ କରିଥିଲେ ମଧ୍ୟ ତାଙ୍କର ଲେଖନୀ ପୁନଶ୍ଚ ୧୯୬୮ରୁ ସାରସ୍ୱତ ସାଧନାରେ ଚଳଚଞ୍ଚଳ ହୋଇ ଉଠିଥିଲା । ସାଂପ୍ରତିକ ପରୀକ୍ଷା-ଧର୍ମୀ ପ୍ରୟୋଗାତ୍ମକ ନାଟ୍ୟସ୍ରୋତରେ ମନୋରଞ୍ଜନଧର୍ମୀ ନାଟକ ବିଲୁପ୍ତ ହେବା ପୂର୍ବରୁ ଶ୍ରୀ କାନୁନ୍‌ଗୋ ତା'ର ଏକ ପରିବର୍ତ୍ତିତ ଏବଂ ପରିମାର୍ଜିତ ଉପସ୍ଥାପନା କରି ଓଡ଼ିଶାର ପୁରପଲ୍ଲୀରେ ନାଟ୍ୟଚେତନାର ଅବେଗକୁ ପୁନଃପ୍ରତିଷ୍ଠିତ କରିପାରିଛନ୍ତି । ଜଣେ ଆଇନଜ୍ଞ ଭାବରେ ଅପରାଧମୂଳକ ମନସ୍ତତ୍ତ୍ୱର ଏକ ବିଶ୍ଳେଷଣାତ୍ମକ ପରିଫଳନକୁ ନେଇ ତାଙ୍କର ଅନେକ ନାଟକ ରଚିମନ୍ତ । ଏତଦ୍‌ବ୍ୟତୀତ ପରିବର୍ତ୍ତନଶୀଳ ସମାଜର ସମସ୍ୟା ଓ ଯନ୍ତ୍ରଣା, ମନସ୍ତାତ୍ତ୍ୱିକ ସଂଘର୍ଷ ଓ ଦ୍ୱନ୍ଦ୍ୱର ସନ୍ତୁଳିତ ନିଛକ ଚିତ୍ରକଳା ତାଙ୍କର ନାଟକ ମାଧ୍ୟମରେ ପରିସ୍ଫୁଟିତ ହୋଇ ସମସ୍ତ ନାଗରିକ ଦ୍ୱନ୍ଦ୍ୱ ଓ ସଙ୍କୀର୍ଣ୍ଣତାର ଊର୍ଦ୍ଧ୍ୱକୁ ଯାଇ

ଏକ ଧର୍ମନିରପେକ୍ଷ ଗଣଚେତନା ସୃଷ୍ଟି କରି ଏକ ନୂତନ ସମାଜ ସୃଷ୍ଟିର ସମସ୍ତ ସୃଜନଶୀଳତା ଯୋଗାଇ ଦେଇଥିଲେ ।

ତାଙ୍କ ଲିଖିତ ପ୍ରଥମ ଏକାଙ୍କିକା ଭାବରେ 'ମରୁନିର୍ଝରଣୀ' ଏକ ସାର୍ଥକ ସୃଷ୍ଟି । ତାଙ୍କ ରଚିତ ଅନ୍ୟୂନ କୋଡ଼ିଏ ଖଣ୍ଡ ନାଟକ ମଧ୍ୟରେ ଅଭିଶପ୍ତ ସୁନ୍ଦର, ମୁଁ ସୈତାନ କହୁଛି, ରାମଦାସ ତୁମେ ହାରିଗଲ, ମହାକାଳର କ୍ରନ୍ଦନାଦ, ଦେବଦାସୀ, ସୁବିର ରଜନୀଗନ୍ଧା, କୃଷ୍ଣକୁମାର ହସ ଇତ୍ୟାଦି ସହ ନାଟିକା 'ରତିବିଳାସ' ଆଦିର ନାମ ଉଲ୍ଲେଖଯୋଗ୍ୟ । ତାଙ୍କ ରଚିତ ଅନ୍ୟ ଦୁଇଟି ନାଟକ ଲକ୍ଷେଶ୍ୱରଙ୍କର ମଉଡ଼ମଣି, ଏବଂ ରକ୍ତ ଗଙ୍ଗାର ମାଝି ପ୍ରକାଶ ଅପେକ୍ଷାରେ । ତାଙ୍କ ରଚିତ ନାଟକ ସବୁ ରାଜ୍ୟର ବିଭିନ୍ନ ସୌଖୀନ ଓ ପେଷାଦାର ନାଟ୍ୟସଂସ୍ଥାମାନଙ୍କଦ୍ୱାରା ଅଭିନୀତ ହୋଇ ଶତମୁଖରେ ଉଚ୍ଚପ୍ରଶଂସିତ ହୋଇଛି ।

ଓଡ଼ିଆ ନାଟ୍ୟଜଗତକୁ ତାଙ୍କର ଏହି ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତରଫରୁ ତାଙ୍କୁ ୧୯୯୦-୯୧ ବର୍ଷରେ ଅଭିନନ୍ଦିତ ଏବଂ ପୁରସ୍କୃତ କରାଯାଇଛି । ନାଟକସ୍ରଷ୍ଟା ଭାବରେ ସମାଜଧର୍ମୀ, ଜୀବନବାଦୀ ଓ ବାସ୍ତବମୁଖୀ ଭାବଧାରାର ପ୍ରବର୍ତ୍ତକ ଭାବେ ଶ୍ରୀ ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ ରାଜ୍ୟ ଜନମାନସରେ ଚିରସ୍ମରଣୀୟ ହୋଇ ରହିବେ ।

●



# ଶ୍ରୀ ଲକ୍ଷ୍ମୀଧର ନାୟକ

## ଗୁନୁପାଇଲ, ତେଲଙ୍ଗ, ପୁରୀ

**ଜନ୍ମ - ୧୯୧୩, ନଭେମ୍ବର ୧**

ଓଡ଼ିଆ ନାଟ୍ୟଜଗତର ପୁରାତନ ନାଟ୍ୟକାର ଭାବରେ ସୁପରିଚିତ ଶ୍ରୀ ଲକ୍ଷ୍ମୀଧର ନାୟକ ୧୯୧୩ ମସିହା ନଭେମ୍ବର ମାସ ୧ ତାରିଖରେ ପୁରୀ ଜିଲ୍ଲାର ତେଲଙ୍ଗ ନିକଟବର୍ତ୍ତୀ ଗୁନୁପାଇଲ ଗ୍ରାମରେ ୰ ବଳଭଦ୍ର ନାୟକଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଟାଟାନଗରରେ ଚାକିରି କରୁଥିବାରୁ ଶ୍ରୀ ନାୟକଙ୍କୁ ମାତ୍ର ପାଞ୍ଚବର୍ଷ ବୟସରୁ ସେଠାରେ ରହିବାକୁ ହୋଇଥିଲା । ସେହି ବିଚ୍ଛିନ୍ନାଞ୍ଚଳ ଲୌହନଗରୀ ଟାଟାନଗରଠାରେ ତାଙ୍କର ବାଲ୍ୟ ଶିକ୍ଷା ଏବଂ ତରୁଣ ବୟସର କର୍ମମୟ ଜୀବନରେ ସାହିତ୍ୟ ସାଧନା ଆରମ୍ଭ ହୋଇଥିଲା । ୧୯୨୫ ମସିହାରେ ୰ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସଂସର୍ଗରେ ଆସି ସେ ଓଡ଼ିଶା ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଆନ୍ଦୋଳନରେ ଭାଗ ନେଇଥିଲେ ଏବଂ ୧୯୩୨ ମସିହାରେ ଓଡ଼ିଆମାନଙ୍କୁ ଏକତ୍ରିତ କରି ଟାଟା ନଗରଠାରେ ମା ଦୁର୍ଗାଙ୍କର ପୂଜା କରାଇ ସେହି ଅବସରରେ ସ୍ୱରଚିତ ନାଟକ 'ବିଲ୍ୱମଙ୍ଗଳ' ମଞ୍ଚସ୍ଥ କରାଇ ନିଜ ନାଟ୍ୟକାର ଜୀବନ ଆରମ୍ଭ କରିଥିଲେ । ଏହି ନାଟକକୁ ଦେଖିବା ନିମନ୍ତେ ଦର୍ଶକମାନଙ୍କୁ ଟିକେଟ କରିବାକୁ ପଡ଼ିଥିଲା । ୧୯୩୪ରେ ନିଜର ଲେଖକ ଜୀବନ ଆରମ୍ଭ କରି ସେ 'ନିଖିଳ ଉତ୍କଳ ଗଞ୍ଜାମ କବି ସମ୍ମିଳନୀ' କର୍ତ୍ତୃକ ଆୟୋଜିତ କବି ସମ୍ମିଳନୀରେ ଅଂଶ ଗ୍ରହଣ କରି ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ସେହି ବର୍ଷ ସେ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ' ନାମକ ଏକ ସାଂସ୍କୃତିକ ଅନୁଷ୍ଠାନ ପ୍ରତିଷ୍ଠା କରାଇଥିଲେ । ସେହି ସମୟରେ ତାଙ୍କ ଲିଖିତ ପ୍ରଥମ ଉପନ୍ୟାସ 'ଉଦ୍‌ଭ୍ରାନ୍ତ' ଉପନ୍ୟାସ ପ୍ରକାଶିତ ହୋଇଥିଲା । ବ୍ୟବସାୟିକ ରଙ୍ଗମଞ୍ଚରେ ମଞ୍ଚସ୍ଥ ତାଙ୍କ ଲିଖିତ ପ୍ରଥମ ନାଟକ 'ଧର୍ମପତ୍ନୀ' ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଦ୍ୱାରା ଏବଂ ପରେ ଶ୍ରୀ ନାୟକଙ୍କ ଲିଖିତ ନାଟକ 'ଜମିଦାର' ଏବଂ 'ଲାଲଗ୍ରୁକ୍' ୧୯୪୨ରେ ଅନ୍ନପୂର୍ଣ୍ଣାର ଭରତପେକ୍ଷାଳୟରେ ଅଭିନୀତ ହୋଇ ଉଚ୍ଚପ୍ରଶଂସା ଲାଭ କରିଥିଲା । ୧୯୮୫ ମସିହାରେ ଓଡ଼ିଶା ବିଚ୍ଛିନ୍ନାଞ୍ଚଳ ସିଂହଭୂମଠାରେ 'ମଞ୍ଚବନ୍ଦନା' ଅନୁଷ୍ଠାନ ପ୍ରତିଷ୍ଠା କରି ତାହାର

ମାଧ୍ୟମରେ ସେଠାରେ ନୃତ୍ୟ ସଙ୍ଗୀତ ଓ ନାଟ୍ୟକଳାର ପ୍ରସାର କରାଇଥିଲେ । ସେଠାରେ ସେ ସାହିତ୍ୟର ପ୍ରଚ୍ଛର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ନିମନ୍ତେ 'ବହ୍ନିଶିଖା ମୁଦ୍ରଣାଳୟ' ଏବଂ ତହିଁରୁ 'ବହ୍ନିଶିଖା' ସାପ୍ତାହିକୀ ସମ୍ବାଦପତ୍ର ମୁଦ୍ରିତ କରାଇଥିଲେ । ତାଙ୍କର ସାହିତ୍ୟ କୃତି ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀ ଶ୍ରୀ ନାୟକଙ୍କୁ ୧୯୭୬ ମସିହାରେ ସମ୍ମାନିତ କରିଥିଲେ । ଓଡ଼ିଆ ଭାଷାରେ ତାଙ୍କ ଲିଖିତ ଏବଂ ପ୍ରକାଶିତ ଏକଶହ ପଚିଶଟି ଗଜଲକୁ ନେଇ ପୁସ୍ତକ 'ଗଜଲଶ୍ରୀ' ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ରତ୍ନ । ଶିଳ୍ପୀଙ୍କ ସଙ୍ଗୀତ ରୂପକ 'ଆମର ଗାଁ' ୧୯୮୩ ରେ ଆକାଶବାଣୀ ପୁରସ୍କାର ଲାଭ କରିଥିଲା । ୧୯୫୬ ରେ ରାଉରକେଲାଠାରେ ତାଙ୍କ ପ୍ରଚେଷ୍ଟାରେ 'ରାଉରକେଲା କଲଚରାଲ୍ ଏକାଡେମୀ' ସ୍ଥାପିତ ହେବା ସହ ସେଠାରେ ଐତିହାସିକ ନାଟକ 'ବଳିଜଗବନ୍ଧୁ' ମଞ୍ଚସ୍ଥ ହୋଇଥିଲା । ଏହି ସମୟରେ ଇଂରାଜୀ ଭାଷାରେ 'ରାଉରକେଲା ପୋଷ୍ଟ' ଏବଂ ଓଡ଼ିଆରେ 'ଆଜିର ଡ଼ାକ' ରାଉରକେଲାରୁ ମୁଦ୍ରିତ ହୋଇ ବାହାରିଥିଲା ଶ୍ରୀ ନାୟକଙ୍କ ଏକକ ପ୍ରଚେଷ୍ଟାର ଫଳ ସ୍ୱରୂପ । ଏକାଧାରରେ ଜଣେ ନାଟ୍ୟକାର ଗୀତିକାର, କବି, ଔପନ୍ୟାସିକ ଏବଂ ସାଂସ୍କୃତିକ ସଙ୍ଗଠକ ଶ୍ରୀ ନାୟକ ନିଜ ଜୀବନରେ ବହୁସ୍ତରରେ ଅଜସ୍ର ସମ୍ମାନ ଲାଭ କରିଛନ୍ତି । ଉପନ୍ୟାସ 'ମୋ ସ୍ୱପ୍ନର ସହର' ନିମନ୍ତେ ୧୯୮୪ ମସିହାରେ ଶ୍ରୀ ନାୟକ ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିବା ସଙ୍ଗେ ସଙ୍ଗେ ୧୯୯୧ ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ତରଫରୁ ସମ୍ମାନିତ ହୋଇଅଛନ୍ତି । ଓଡ଼ିଶା ମାଟିର ଏହି ବରପୁତ୍ର ଚିରଦିନ ଓଡ଼ିଆ ମନରେ ଜାଗ୍ରତ ବାସ୍ତବ ରୂପେ ଚିରସ୍ଥାୟୀ ହୋଇ ରହିଥିବେ ।

●



## ଶ୍ରୀ ଲକ୍ଷ୍ମୀନାରାୟଣ ଆଗ୍ରୱାଲ

ଚଣ୍ଡୀପୁର

ଜନ୍ମ—୧୮୯୯, ଫେବୃୟାରୀ ୩

ଓଡ଼ିଆ ରଙ୍ଗମଞ୍ଚ ଇତିହାସର ଏକ ସ୍ମରଣୀୟ ନାମ ଶ୍ରୀ ଲକ୍ଷ୍ମୀନାରାୟଣ ଆଗ୍ରୱାଲ ୧୮୯୯ ମସିହା ଫେବୃୟାରୀ ମାସ ୩ ତାରିଖରେ ଗଞ୍ଜାମଠାରେ ଜନ୍ମଗ୍ରହଣ କରିଥିଲେ । ମାନ୍ଦ୍ରାଜ ସହରରୁ କଳାବିଦ୍ୟାରେ ଉଚ୍ଚଶିକ୍ଷା ଶେଷକରି ସେ କଳା ଶିକ୍ଷକ ରୂପେ ନିଜର ପେଷାଦାର ଜୀବନ ଆରମ୍ଭ କରିଥିଲେ । 'ରାଧାନାଥ ରଙ୍ଗମଞ୍ଚ' ଓ ତତ୍କାଳୀନ ଭ୍ରାମ୍ୟମାଣ ପେଷାଦାର ନାଟ୍ୟସଂସ୍ଥା 'କିଶୋର ଚନ୍ଦ୍ର ନାଟ୍ୟସଂଘ' ଆଦିରେ କଳା ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରିବା ପରେ ୧୯୩୭ ମସିହାଠାରୁ ସ୍ଥାୟୀ କଳା ନିର୍ଦ୍ଦେଶକ ରୂପେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍‌ରେ ଯୋଗଦାନ କରି ଅପୂର୍ବ ମଞ୍ଚମାୟା ଓ ଆଲୋକ ସମ୍ପାତ ଦ୍ୱାରା ନିଜକୁ ଜଣେ ବିଶିଷ୍ଟ ମଞ୍ଚକଳା ନିର୍ଦ୍ଦେଶକ ତଥା ତୂଳୀକାର ରୂପେ ପ୍ରତିଷ୍ଠା କରି ପାରିଥିଲେ । ସବୁ ମୁଖରେ ପରିଚିତ 'ପେଣ୍ଟର୍ ବାବୁ' ବା 'ଆଗ୍ରୱାଲ ମାଷ୍ଟ୍ରେ' ପରବର୍ତ୍ତୀ ଜୀବନରେ ରୂପଶ୍ରୀ, କଳାଶ୍ରୀ, ଏକାମ୍ର ଓ ଜନତା ରଙ୍ଗମଞ୍ଚରେ ନିଜର କଳା କୃତିତ୍ୱ ପ୍ରଦର୍ଶନ କରି ଦର୍ଶକ-ମାନଙ୍କୁ ବିମୋହିତ କରିଅଛନ୍ତି । କଳାକ୍ଷେତ୍ରରେ ନିଜର ଉତ୍କର୍ଷ ପାଇଁ ୧୯୬୨ ମସିହାରେ ଶିଳ୍ପୀ 'ମଞ୍ଚଶ୍ରୀ' ଉପାଧି ଲାଭ କରିବା ସହ ରାଜ୍ୟ ବାହାରର ଅନେକ ପ୍ରଦର୍ଶନୀରେ ତାଙ୍କର କଳାକୃତି ସବୁ ପୁରସ୍କୃତ ।

ମଞ୍ଚକଳା କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୯୦-୯୧ ବର୍ଷ ନିମନ୍ତେ ଏହି ଅସାମାନ୍ୟ ପ୍ରତିଭାସମ୍ପନ୍ନ ଶିଳ୍ପୀଙ୍କୁ ସମ୍ବର୍ଦ୍ଧନା ଜଣାଇବା ସହ ପୁରସ୍କୃତ କରିଅଛନ୍ତି । ଅଧୁନା ସେ କଟକ ସହରରେ ଅବସ୍ଥାନ କରୁଅଛନ୍ତି ।



## ଶ୍ରୀ ନିରଞ୍ଜନ ଶତପଥୀ

ଚଞ୍ଜାମ

ଜନ୍ମ—୧୯୩୦, ସେପ୍ଟେମ୍ବର ୧୧

ଓଡ଼ିଆ ରଙ୍ଗମଞ୍ଚର ଜଣେ କୃତୀ ଅଭିନେତା ରୂପେ ଶିଳ୍ପୀ ଶ୍ରୀ ନିରଞ୍ଜନ ଶତପଥୀ ସର୍ବଜନ ପରିଚିତ । ପିଲାଟି ଦିନରୁ ଜଣେ ସଫଳ ଅଭିନେତା ହେବାର ସ୍ୱପ୍ନ ତାଙ୍କୁ ଯଥାର୍ଥରେ ଜଣେ ଯଶସ୍ୱୀ ଅଭିନେତା ଓ ନିର୍ଦ୍ଦେଶକ ରୂପେ ଗଢ଼ି ତୋଳିବାରେ ସହାୟକ ହୋଇଥିଲା । ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍‌ର ପାଦ ପ୍ରଦୀପ ତଳେ ତାଙ୍କର ଶିଳ୍ପୀ ଜୀବନ ଆରମ୍ଭ ହୋଇଥିଲା । ପି. ଡବ୍ଲ୍ୟୁ. ଡି., ଗରିବ, ଲାଲସ୍ତ୍ରୁକ୍ ଓ ବକ୍‌ସି ଜଗବନ୍ଧୁ ନାଟକରେ ସଫଳ ଅଭିନୟ ପରେ ୧୯୬୦ ମସିହାରେ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍‌ରେ ଯୋଗଦେଇ ଜୀବନଜୁଆ ଓ ଘର ସଂସାର ନାଟକମାନଙ୍କରେ କୃତିତ୍ୱର ସହ ଅଭିନୟ ପ୍ରଦର୍ଶନ କରିଥିଲେ । ପରବର୍ତ୍ତୀ ଜୀବନରେ ଜନତା ରଙ୍ଗମଞ୍ଚ ଥିଲା ତାଙ୍କ ଶିଳ୍ପୀ ଜୀବନର ଯଥାର୍ଥ କର୍ମକ୍ଷେତ୍ର । ଦିଲ୍ଲୀଠାରେ ଅନୁଷ୍ଠିତ ସର୍ବଭାରତୀୟ ନାଟ୍ୟୋତ୍ସବରେ ଜନତା ରଙ୍ଗମଞ୍ଚ ପକ୍ଷରୁ ସେ ପରକଳମ, ଉଠାପାଟେଲି, ସବାକ ଓ ସାଧନା ନାଟକରେ ଅଭିନୟ କରି ଭୂୟସୀ ପ୍ରଶଂସା ଲାଭ କରିବା ସଙ୍ଗେ ସଙ୍ଗେ କ୍ରମାଗତ ଭାବେ ତିନିବର୍ଷ ଧରି ପୁରସ୍କୃତ ହୋଇଥିଲେ । ମଞ୍ଚ ନାଟକ ସହିତ ଶିଳ୍ପୀ ଅନେକ ଓଡ଼ିଆ କଥାଚିତ୍ରରେ ଅଭିନୟ କରି ପ୍ରସିଦ୍ଧିଲାଭ କରିଅଛନ୍ତି ।

ଓଡ଼ିଶାର ରଙ୍ଗମଞ୍ଚ କ୍ଷେତ୍ରରେ ତାଙ୍କର ଏହି ବିଶେଷ କୃତିତ୍ୱକୁ ଆଗରେ ରଖି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୯୦-୯୧ ବର୍ଷରେ ଏହି ପ୍ରନାମଧନ୍ୟ ଶିଳ୍ପୀଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।

# ଶ୍ରୀମତୀ କାନନବାଳା ଦେବୀ

ଗୋଡ଼ପଡ଼ା, ଖୋର୍ଦ୍ଧା, ପୁରୀ

ଜନ୍ମ—୧୯୨୦, ମାର୍ଚ୍ଚ ୧୦



ଓଡ଼ିଆ ରଙ୍ଗମଞ୍ଚ ଆନ୍ଦୋଳନର ପ୍ରାକ୍‌କାଳରେ ଯେଉଁ କେତେଜଣ ସାହସୀ ନାରୀ ଅଭିନେତ୍ରୀ ନିଜକୁ ଏହି ଆନ୍ଦୋଳନରେ ସାମିଲ କରି ଚିରସ୍ମରଣୀୟ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ଅନ୍ୟତମା ଶ୍ରୀମତୀ କାନନବାଳା ଦେବୀ ୧୯୨୦ ମସିହା ମାର୍ଚ୍ଚମାସ ୧୦ ତାରିଖରେ ପୁରୀଜିଲ୍ଲାର ଖୋର୍ଦ୍ଧା ନିକଟସ୍ଥ ଗୋଡ଼ପଡ଼ା ଗ୍ରାମରେ ଏକ ସମ୍ଭ୍ରାନ୍ତ ଦଳବେହେରା ପରିବାରରେ ଜନ୍ମଗ୍ରହଣ କରିଥିଲେ । ଶୋଚନୀୟ ଆର୍ଥିକ ପରିସ୍ଥିତି ହେତୁ ନିଜ ପରିବାରର ଭରଣପୋଷଣ ନିମନ୍ତେ ସେ ମାତ୍ର ୧୬ ବର୍ଷ ବୟସରେ ୧୯୩୬ ମସିହାରେ ଅନ୍ନପୂର୍ଣ୍ଣା ଥିଏଟର ଏ'ଗ୍ରୁପରେ ମାସିକ ଆଠଟଙ୍କା ଦରମାରେ ଅଭିନେତ୍ରୀ ଭାବରେ ଯୋଗଦାନ କରିଥିଲେ । ସେହି ସମୟରେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ଦାୟିତ୍ୱରେ ଥିବା ୰ ଶ୍ରୀ ଲିଙ୍ଗରାଜ ନନ୍ଦ ଏବଂ ୰ ବାଉରୀବନ୍ଧୁ ମହାନ୍ତିଙ୍କ ପ୍ରେରଣା ତାଙ୍କୁ ପରବର୍ତ୍ତୀ ଜୀବନରେ ଜଣେ ଉତ୍ତମ ଅଭିନେତ୍ରୀ ହେବାପାଇଁ ଉତ୍ସାହ ଯୋଗାଇଥିଲା । ଅଜସ୍ର ପ୍ରତିବନ୍ଧକ ମଧ୍ୟରେ ସେ ଜୀବନ ବ୍ୟାପୀ କଳାଚର୍ଚ୍ଚା କରି ଓଡ଼ିଆ ମଞ୍ଚ ଆନ୍ଦୋଳନକୁ ଚିରଂଜୀବୀ କରି ପାରିଛନ୍ତି । ତାଙ୍କ ଦ୍ୱାରା ଅଭିନୀତ ନାଟକ ବକ୍‌ସିଜଗବନ୍ଧୁ, କଳାପାହାଡ଼, ଲକ୍ଷହୀରା, ଜୟଦେବ, ଚଣ୍ଡାଳୁଣୀ, ବାଡ଼ୁଅଝିଅ, ମୁକ୍ତିଆ, ନୈରାଶ୍ୟର ସଂସାର, ବନ୍ଧୁମହାନ୍ତି, ପହିଲିରଜ, ଘରସଂସାର ଆଦି ଏକସମୟରେ ସାରା ରାଜ୍ୟରେ ଚହଳ ପକାଇଥିଲା । ଓଡ଼ିଆ ଚଳଚ୍ଚିତ୍ର ଜଗତରେ ଯୋଗଦାନ କରି ଶ୍ରୀମତୀ କାନନବାଳା ଦେବୀ ଘରସଂସାର, ଶ୍ରୀ ଲୋକନାଥ, ଏବଂ ତପସ୍ୟା ଚଳଚ୍ଚିତ୍ରରେ ଅଭିନୟ କରି ନିଜର ଅଭିନୟ କ୍ଷମତା ସଫଳଭାବେ ଉପସ୍ଥାପନ କରିପାରିଛନ୍ତି ।

ଓଡ଼ିଆ ନାଟ୍ୟ ଆନ୍ଦୋଳନକୁ ତାଙ୍କର ଜୀବନବ୍ୟାପୀ ସାଧନାରେ ଋଦ୍ଧିମନ୍ତ କରିଥିବା ଏହି ଅସାମାନ୍ୟା ଅଭିନେତ୍ରୀଙ୍କର କର୍ମକୁ ସ୍ୱୀକୃତି ଦେଇ ଓଡ଼ିଶା ସଙ୍ଗୀତନାଟକ ଏକାଡେ଼ମୀ ତାଙ୍କୁ ୧୯୯୦—୯୧ ବର୍ଷ ନିମନ୍ତେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଛନ୍ତି । ସମାଜର ସମସ୍ତ ରକ୍ଷଣଶୀଳତାର ବନ୍ଧନକୁ କାଟି ପବିତ୍ର କଳାଚର୍ଚ୍ଚାକୁ ଜୀବନର ବ୍ରତଭାବେ ଗ୍ରହଣ କରି ତହିଁରେ ସିଦ୍ଧିଲାଭ କରି ନିଜକୁ ତଥା ଓଡ଼ିଶା ରଙ୍ଗମଞ୍ଚକୁ ଗର୍ବିତ ଏବଂ ଗୌରବାନ୍ୱିତ କରିଥିବା ଏହି ଯଶସ୍ୱିନୀ ଅଭିନେତ୍ରୀଙ୍କୁ ରାଜ୍ୟବାସୀ ସର୍ବଦା ମନେ ରଖିବେ ।

●



## ୰ ଗୁରୁ ଭଗବତ ସ୍ୱାଇଁ
### ଡମ୍ବିରଶେଣା, ବ୍ରହ୍ମଗିରି, ପୁରୀ

ଜନ୍ମ—୧୮୮୫

ଓଡ଼ିଶାର ଗୋଟିପୁଅ ନୃତ୍ୟର ଗୁରୁ ସଦେ ସୁପରିଚିତ ୰ ଗୁରୁ ଭଗବତ ସ୍ୱାଇଁ ୧୮୮୫ ମସିହା ଅପ୍ରେଲ୍ ମାସରେ ପୁରୀଜିଲ୍ଲାର ବ୍ରହ୍ମଗିରି ଅନ୍ତର୍ଗତ ଡମ୍ବିରଶେଣା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିଲାଟି ଦିନରୁ ସଙ୍ଗୀତ ଗାନ କରିବା ତାଙ୍କର ପ୍ରଧାନ ସଉକ ଥିଲା । ତାଙ୍କ ପିତା ୰ ବାଲୁଙ୍କି ସ୍ୱାଇଁ ଜଣେ ବିଖ୍ୟାତ ମର୍ଦ୍ଦଳ ବାଦକ ଥିଲେ । ପିତାଙ୍କ ନିକଟରୁ ପ୍ରୋତ୍ସାହନ ଲଭକରି ୰ ଶ୍ରୀ ସ୍ୱାଇଁ ନିଜ ଗ୍ରାମର ପ୍ରତିଷ୍ଠିତ ଠାକୁର ଶ୍ରୀ ଶ୍ରୀ ବାଲୁଙ୍କେଶ୍ୱର ଦେବଙ୍କ ଗୋଟିପୁଅ ଆଖଡ଼ାରେ ଯୋଗଦେଇ ତତ୍କାଳୀନ ପ୍ରସିଦ୍ଧ ସଙ୍ଗୀତ ଗୁରୁ ୰ ଚନ୍ଦ୍ରଶେଖର ପଟ୍ଟନାୟକଙ୍କ ନିକଟରୁ ବେହେଲା ବାଦନ ଶିକ୍ଷା କରିଥିଲେ ।

ପରବର୍ତ୍ତୀ ସମୟରେ ଗୁରୁ ୰ ବାଞ୍ଛାନିଧି ପ୍ରଧାନ ଏବଂ ଗୁରୁ ୰ ସିଂହାରି ଶ୍ୟାମସୁନ୍ଦର କରଙ୍କ ନିକଟରୁ ଶାସ୍ତ୍ରୀୟ ଓଡ଼ିଶୀ ସଙ୍ଗୀତ ଶିକ୍ଷାଲାଭ କରିଥିଲେ । ସେହି ଗୋଟିପୁଅ ଦଳରେ ସେ ଆଜୀବନ ରହି ନିୟମିତ ଭାବରେ ନିଜେ ଗୀତ ଗାନ କରିବା ସହ ପିଲାମାନଙ୍କୁ ଗୀତ ଅଭ୍ୟାସ କରାଉଥିଲେ ଏବଂ ନୃତ୍ୟ ପରିବେଷଣ ସମୟରେ ନିଜେ ଆଖଡ଼ାରେ ବେହେଲା ବାଦନ କରୁଥିଲେ । ତାଙ୍କର ମୁଖ୍ୟ ଶିଷ୍ୟମାନଙ୍କ ମଧ୍ୟରେ ସୁପରିଚିତ ଗୁରୁ ଶ୍ରୀ ମହାଦେବ ରାଉତ୍, କଟି ସାହୁ, ବସନ୍ତ ସାହୁ ଏବଂ ଗୁରୁ ଗଙ୍ଗାଧର ପ୍ରଧାନ ଆଦିଙ୍କୁ ନେଇ ସେ ସମୟରେ ସେ ରାଜ୍ୟର ବହୁସ୍ଥାନରେ ଗୋଟିପୁଅ ନୃତ୍ୟ ପରିବେଷଣ କରାଇ ବହୁ ପ୍ରଶଂସା ଲାଭ କରିଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ସେ ଶ୍ରୀ ଶ୍ରୀ ବାଲୁଙ୍କେଶ୍ୱର ଦେବଙ୍କ ଯାନଯାତ୍ରା, ପଙ୍କପର୍ବାଣି ତଥା ପୁରୀର ମଠମାନଙ୍କରେ ଯାତ୍ରା ସମୟରେ ଗୋଟିପୁଅ ଦଳଙ୍କ ସହ ବେହେଲା ବାଦନ କରୁଥିଲେ । ଏକ ସମୟରେ ବେହେଲା ବଜାଇ ଗୀତ ଗାନ କରିବା ତାଙ୍କର ବିଶେଷତ୍ୱ ଥିଲା ।

ଓଡ଼ିଶାର ଗୋଟିପୁଅ ନୃତ୍ୟ କ୍ଷେତ୍ରରେ ତାଙ୍କର ଚିରସ୍ମରଣୀୟ ଅବଦାନ ନିମନ୍ତେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ସ୍ୱାଇଁଙ୍କୁ ୧୯୯୦—୯୧ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି । ତାଙ୍କର ତିରୋଭାବ ଚୈତ୍ର ଶୁକ୍ଳ ତ୍ରୟୋଦଶୀ ୧୯୯୧ ମସିହାରେ ଘଟିଥିଲେ ମଧ୍ୟ ତାଙ୍କର ସାଧକ ଜୀବନ ଆଗାମୀ ଦିନର କଳାକାରମାନଙ୍କ ନିମନ୍ତେ ଆଦର୍ଶ ହୋଇ ରହିବ ।

# ସ୍ୱର୍ଗତ ଧୀରେନ୍ ଦାଶ

## ଅନୁଗୁଳ, ଢେଙ୍କାନାଳ

(୧୯୨୭—୧୯୯୨)



ଓଡ଼ିଶାର କଳା, ସଂସ୍କୃତି ଏବଂ ନାଟ୍ୟ ଜଗତର ଅବିସ୍ମରଣୀୟ ପ୍ରତିଭା ସ୍ୱର୍ଗତ ଶ୍ରୀ ଧୀରେନ୍ ଦାଶ ୧୯୨୭ ମସିହା ନଭେମ୍ବର ମାସ ୨୪ ତାରିଖରେ ଢେଙ୍କାନାଳ ଜିଲ୍ଲା ଅନ୍ତର୍ଗତ ଅନୁଗୁଳଠାରେ ଜନ୍ମଗ୍ରହଣ କରିଥିଲେ । ସ୍କୁଲ ଏବଂ କଲେଜ ଜୀବନରେ ନୃତ୍ୟଶିଳ୍ପୀ, ନାଟ୍ୟକାର, ନିର୍ଦ୍ଦେଶକ ଏବଂ ମଞ୍ଚଶିଳ୍ପୀ ତଥା ଉତ୍ତମ ଖେଳାଳି ଭାବେ ପରିଚିତ ୬ ଦାଶ ପରବର୍ତ୍ତୀ ଜୀବନରେ ଓଡ଼ିଶାର ନାଟ୍ୟ ଆନ୍ଦୋଳନରେ ପ୍ରଧାନ ସୂତ୍ରଧର ଭାବେ ପରିଚିତ ହୋଇଥିଲେ । ଓଡ଼ିଶାର ନାଟ୍ୟ କ୍ଷେତ୍ରରେ ଜଣେ ସୃଜନଶୀଳ ନାଟ୍ୟଶିଳ୍ପୀ, ନିର୍ଦ୍ଦେଶକ ଏବଂ ଅଭିନବ ମଞ୍ଚକାର ଭାବରେ, ପ୍ରଖ୍ୟାତ ନାଟ୍ୟ ନିର୍ଦ୍ଦେଶକ ହବର୍ଟ ମାର୍ଶାଲଙ୍କ ଅଧ୍ୟକ୍ଷତାରେ ବମ୍ବେ ନାଟ୍ୟ ଏକାଡେମୀରୁ ଡିପ୍ଲୋମା ଗ୍ରହଣ କରି, ସେ ତାଙ୍କର କଳାମୟ ଜୀବନ ଆରମ୍ଭ କରିଥିଲେ ।

ଉତ୍କଳୀୟ ସଂସ୍କୃତିକୁ ୬ ଦାଶଙ୍କ ଅବଦାନ ତୁଳନାହୀନ । ବମ୍ବେରୁ ପ୍ରକାଶିତ ପ୍ରଥମ ଓଡ଼ିଆ ପତ୍ରିକା 'କୁଙ୍କୁମ'ର ସେ ଥିଲେ ପରିଚାଳନା ସମ୍ପାଦକ । ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ ପାଇଁ ଅନୁଷ୍ଠାନ ଗଠନ ଓ ମୟୂରଭଞ୍ଜ ତଥା ଢେଙ୍କାନାଳର ଛଉନୃତ୍ୟ ପାଇଁ ପୁନର୍ଗଠନ ସନ୍ଧାନରେ ୧୯୪୯ ମସିହାରେ ୬ ଦାଶଙ୍କ ନିବନ୍ଧ ତାଙ୍କର ମୌଳିକ ଚିନ୍ତାଧାରା ଓ ନାଟ୍ୟ ଚେତନାର ପରିଚୟ ଦିଏ ।

ଓଡ଼ିଶାର ପାରମ୍ପରିକ "ଯାତ୍ରା"ର ପୁନରୁଦ୍ଧାର ଓ ପୁନର୍ଜାଗରଣ ସୃଷ୍ଟି କରି ଗୀତିନାଟ୍ୟର ପୁନଃ ପ୍ରଚଳନ କରି ଗଣକବି ବୈଷ୍ଣବ ପାଣିଙ୍କ ଅମର ପ୍ରତିଭାକୁ ପ୍ରମୂର୍ତ୍ତି କରିଛନ୍ତି । ୬ ଦାଶଙ୍କର ଅସାଧାରଣ ମଞ୍ଚ ପରିକଳ୍ପନା ଓ ନାଟ୍ୟ ନିର୍ଦ୍ଦେଶନାର ସୁସ୍ପଷ୍ଟ ପରିଚୟ ପ୍ରତିବର୍ଷ ବାରବାଟୀ କିଲ୍ଲାଠାରେ ଆୟୋଜିତ ବାଲିଯାତ୍ରା କାଳର ସୁବିରାଟ ପ୍ରେକ୍ଷାଳୟରେ ମିଳେ । ନାଟ୍ୟ ପ୍ରୟୋଗର ପରିବେଷଣ ଶୈଳୀରେ ୬ ଦାଶଙ୍କ ଅଭିନବ ପରୀକ୍ଷାମାନ ସମଗ୍ର ଦେଶରେ ଅଦ୍ୱିତୀୟ ।

ଭୁବନେଶ୍ୱରସ୍ଥିତ ଉଦୟଗିରି ରାଣୀ ଗୁମ୍ଫାକୁ ଭରତ ମୁନି ପ୍ରଣୀତ ନାଟ୍ୟ ଶାସ୍ତ୍ରାନୁମୋଦିତ ଦେଶର ଏକମାତ୍ର ପ୍ରସିଦ୍ଧ ପ୍ରାଚୀନ ପ୍ରେକ୍ଷାଳୟ ବୋଲି ସେ ଆବିଷ୍କାର କରିବା ସଙ୍ଗେ ସଙ୍ଗେ ପୁରାତନ ଉତ୍କଳ ଇତିହାସର ଏକ ନୂତନ ତଥ୍ୟ ପ୍ରତିପାଦନ କରି, ଗୌରବମୟ ଉତ୍କଳୀୟ ନାଟ୍ୟ ସଂସ୍କୃତିର ପ୍ରାଚୀନତା ବିଷୟରେ ଆଲୋକପାତ କରିଅଛନ୍ତି ।

ଐତିହାସିକ ତଥ୍ୟସମ୍ବଳିତ "ବାଲିଯାତ୍ରା" ଗୀତିନାଟ୍ୟ ଇଂରାଜୀରେ ଗବେଷଣାମୂଳକ "Jatra the theatre", "Ideas and experiments in theatre", "Jatra—people's theatre of Orissa", ଇତ୍ୟାଦି ଲେଖକଙ୍କ ଗବେଷଣାତ୍ମକ ସୃଷ୍ଟି । ଓଡ଼ିଶାରେ "ଯାତ୍ରୀ ପ୍ରେକ୍ଷାଳୟ" ଗଠନ ହିଁ ଓଡ଼ିଶାର ନାଟ୍ୟ କ୍ଷେତ୍ରରେ ପ୍ରଗତି ଆଣିପାରିବ ବୋଲି ସେ ତାଙ୍କର ବାର୍ତ୍ତାରେ ବହୁବାର କହି ଆସିଛନ୍ତି ।

ବିଶ୍ୱର ବିଭିନ୍ନ ଦେଶ ବିଦେଶରେ ଉତ୍କଳୀୟ ଲୋକନୃତ୍ୟ ଓ ଲୋକ ସଂସ୍କୃତି ମଧ୍ୟରୁ ଦଣ୍ଡନାଟ, କୁଣ୍ଢେଇ ନାଚ, ଢେଙ୍କାନାଳ ମୟୂରଭଞ୍ଜ ଛଉ, ପାଇକ ନାଟ, ଧାଲି ଓ ପ୍ରହ୍ଲାଦ ନାଟକର ପ୍ରଚାର କରି ଅଗଣିତ ଲୁପ୍ତ କଳାଗୌରବକୁ ଜୀବନ୍ତ କରିଯାଇଛନ୍ତି । ୧୯୮୫ ମସିହାରେ ସେ ଭାରତ ସରକାରଙ୍କ ସାଂସ୍କୃତିକ ଦଳର ନେତୃତ୍ୱ ନେଇ ଫ୍ରାନସ୍ ଓ ମସ୍କୋ ଯାତ୍ରା କରିଥିଲେ । କଳା କ୍ଷେତ୍ରରେ ଅସାମାନ୍ୟ ଅବଦାନ ପାଇଁ ୧୯୮୩ରେ ଡେନମାର୍କର "Stanislavski Foundation" ପକ୍ଷରୁ ଆନ୍ତର୍ଜାତିକ ସମ୍ମାନ ଗ୍ରହଣ କରିବା ସହିତ ୧୯୮୭-୮୭ ମସିହାରେ ସେ "ଅନାମିକା"ର ଫେଲୋସିପ ଲାଭ କରିଥିଲେ । ଦୀର୍ଘଦିନ ଧରି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର "ସ୍ୱତନ୍ତ୍ର ଅଧିକାରୀ" ପଦବୀରେ କାର୍ଯ୍ୟ କରିବା ସହିତ ଜୀବନର ଶେଷ ପର୍ଯ୍ୟନ୍ତ ଏକାଡେମୀ କାର୍ଯ୍ୟକାରୀ ପରିଷଦର ସଦସ୍ୟ ରହି ସୁଚିନ୍ତିତ ମାର୍ଗଦର୍ଶନ ପ୍ରଦାନ କରି ଆସିଛନ୍ତି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ Institute of Oriental Theatre Art (IOTA) କଳା ଓ ସଂସ୍କୃତିର ଗବେଷଣା ଓ ପ୍ରଚାର ଦିଗରେ ଅବିରତ କର୍ମମୁଖର ରହି ଆସିଛି ।

ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ଓଡ଼ିଶା ନାଟ୍ୟ ଆନ୍ଦୋଳନର କର୍ଣ୍ଣଧାର ଏହି କୃତୀ ପୁରୁଷଙ୍କୁ ଚଳିତବର୍ଷ ନୂତନ ପ୍ରଚଳିତ ସର୍ବୋଚ୍ଚ 'ସଂସ୍କୃତି ସମ୍ମାନ'ରେ ଭୂଷିତ କରି ସମ୍ମାନିତ କରିଅଛନ୍ତି । ୧୯୯୨ ମସିହା ଜାନୁୟାରୀ ମାସ ୨୦ ତାରିଖ ଦିନ ଉତ୍କଳ ମାତାର କୃତୀ ସନ୍ତାନ ସବୁଦିନ ପାଇଁ କମ୍ପଦନ୍ତୀ ପୁରୁଷରେ ପରିଣତ ହୋଇଗଲେ । ତାଙ୍କର ମହାପ୍ରସ୍ଥାନରେ ଏ ରାଜ୍ୟର ସାଂସ୍କୃତିକ ଆନ୍ଦୋଳନର ନେତୃତ୍ୱରେ ଯେଉଁ ଶୂନ୍ୟତା ସୃଷ୍ଟି ହେଲା ତାହା ଆଉ ପୂରଣ ହେବାର ନୁହେଁ ।

●

# ଶ୍ରୀ ଯଦୁମଣି କାନୁନ୍‌ଗୋ

**ନଗସପୁର, କଟକ**

**ଜନ୍ମ—୧୯୧୬ ମସିହା, ଏପ୍ରିଲ ୧୯**



ଓଡ଼ିଶାର କଳା, ସାହିତ୍ୟ ଓ ସଂସ୍କୃତି ଜଗତର ଅନ୍ୟତମ କୃତୀସନ୍ତାନ ଶ୍ରୀ ଯଦୁମଣି କାନୁନ୍‌ଗୋ ୧୯୧୬ ମସିହା ଏପ୍ରିଲ୍ ମାସ ୧୯ ତାରିଖରେ କଟକ ଜିଲ୍ଲା ଅନ୍ତର୍ଗତ ନଗସପୁରଠାରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟ ଜୀବନରୁ ନାଟ୍ୟ ଜଗତ ପ୍ରତି ଆକୃଷ୍ଟ ହୋଇ ସେ ୬ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଆ ଥିଏଟର୍‌ରେ ଯୋଗଦାନ କରି, ରକ୍ତମାଟି ଏବଂ ଭାତ ନାଟକରେ ଅଂଶଗ୍ରହଣ କରି ନିଜର ନଟ ଜୀବନର ଅସ୍ତୁମାରମ୍ଭ କରିଥିଲେ । ରଙ୍ଗମଞ୍ଚର ସୀମିତ ଜୀବନରେ ସନ୍ତୁଷ୍ଟ ହୋଇ ନ ପାରି ସେ ମୂକ ଅଭିନୟ କଳାପ୍ରଦର୍ଶନର ମାଧ୍ୟମ ଅପେକ୍ଷା ଜଗତରେ ପ୍ରବେଶ କରି ତହିଁରେ ନିଜର ସମସ୍ତ ସୃଜନୀ ଶକ୍ତି ବିନିଯୋଗ କରିଥିଲେ । ତାଙ୍କର ସଠିକ ଦିଗ୍‌ଦର୍ଶନ ଲାଭ କରି ଅତୀତ ଦିନର ପ୍ରସିଦ୍ଧ ଗଣନାଟ୍ୟ ସଂସ୍ଥା ସାରଦା କଳାକୁଞ୍ଜ, ନଗସପୁର ତାଙ୍କ ରଚିତ ନାଟକ ବର୍ଗୀଉତ୍କଳ, ଅଶୋକ ଚକ୍ର, ଶକୁନିର ଚକ୍ରାନ୍ତ, ଶ୍ରୀକୃଷ୍ଣଙ୍କ ହସ, ଶ୍ୱେତବାଲି, ମା' ମାଟି ମମତା, ପତିତପାବନ, ଓ କାଳ ନାଗୁଣୀ ଆଦି ଅଭିନୀତ ହୋଇ ଓଡ଼ିଶାର ନାଟ୍ୟ ଜଗତରେ ଚହଳ ପକାଇଥିଲା ।

ଗଣନାଟ୍ୟସହ ବିଶେଷ ଭାବରେ ସଂପୃକ୍ତ ଥିଲେ ମଧ୍ୟ ତାଙ୍କର ସୁଦୂର ପ୍ରସାରୀ ପ୍ରତିଭା ତାଙ୍କୁ ସମୟକ୍ରମେ ଚଳଚ୍ଚିତ୍ର, ବେତାର ଏବଂ ଦୂରଦର୍ଶନ ମଧ୍ୟକୁ ଟାଣି ନେଇଥିଲା । 'ଲଳିତା' ଏବଂ 'ଶାନ୍ତି' ଚଳଚ୍ଚିତ୍ରରେ ନିଜର ଅଭିନୟପାଟବତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସେ ଦୂରଦର୍ଶନ ନାଟକ 'ଶୂନ୍ୟସ୍ଥାନ'ରେ ଅଭିନୟ କରି ବହୁ ପ୍ରଶଂସା ଲାଭ କରିଥିଲେ । ୧୯୪୮ ମସିହାରୁ ଆକାଶବାଣୀ କଟକ କେନ୍ଦ୍ରର କାର୍ଯ୍ୟକ୍ରମ 'ଶିଶୁସଂସାର'ରେ 'ଗୁରୁ' ଭାବରେ ଦୀର୍ଘକାଳ କାର୍ଯ୍ୟ କରିବା ସହ, 'ବେକାର' 'ଦାନଫୁଲ' 'ଶାନ୍ତି'

'ଗ୍ରେସବାଲ,' 'କାଳିଆ', 'ଉତ୍କଳରେ ବର୍ଗୀ' 'ମନ୍ତ୍ରସୂସୀ ମା' ଏବଂ ଶିଶୁନାଟକ 'ଜନକର ବଚ୍ଛର' ଆଦି ନାଟକ ସବୁର ସଫଳ ପ୍ରଯୋଜକ ଭାବରେ ସେ ମଧ୍ୟ ସୁପରିଚିତ ।

ଏହି ଅନନ୍ୟସାଧାରଣ ସାରସ୍ୱତ ସାଧକ ନିଜର କୃତିତ୍ୱ ନିମନ୍ତେ ୧୯୪୭ ମସିହାରେ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ କଲ୍ୟାଣ ଗୁପ୍ତଙ୍କ ନିକଟରୁ ଅଭିନୟ ପାଇଁ ପୁରସ୍କାର ଲାଭ କରିଥିବାବେଳେ ୧୯୮୩ ମସିହାରେ 'ଯଦୁମଣି ସାହିତ୍ୟ ସଂସଦ', ପୁରୀ କର୍ତ୍ତୃକ ସମ୍ମାନିତ ଏବଂ ୧୯୯୦ ମସିହାରେ 'ଉତ୍କଳ ଯାତ୍ରା ଶିଳ୍ପୀ ସଙ୍ଘ' ଅମରାବତୀ ଛତିଆ ଦ୍ୱାରା ସମ୍ମାନିତ ହୋଇଅଛନ୍ତି । ସମ୍ପ୍ରତି ନାଟ୍ୟକଳା ଜଗତକୁ ତାଙ୍କର ଅବଦାନକୁ ସ୍ମରଣ କରି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ କାନୁନ୍‌ଗୋଙ୍କୁ ୧୯୯୧-୯୨ ବର୍ଷ ନିମନ୍ତେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।

୧୯୪୭ରେ ଶ୍ରୀ କାନୁନ୍‌ଗୋଙ୍କ ରଚିତ ଏବଂ ପ୍ରକାଶିତ ତାଙ୍କର କବିତା ସଂକଳନ 'ଜୟଶଙ୍ଖ' ଏବଂ 'ମହାମାନବ ଚମ୍ପୂ' ତାଙ୍କ ସାରସ୍ୱତ ସାଧନାର ବାଣୀଭାର୍ଷ୍ୟ ରୂପେ ତାଙ୍କୁ ଚିର ଅମର କରି ରଖିବ ।

●

# ଶ୍ରୀ ନୀଳକଣ୍ଠ ମିଶ୍ର

## ପୁରୀ



ଜନ୍ମ — ୧୯୩୨, ନଭେମ୍ବର ୧୧

ଓଡ଼ିଶାର ପ୍ରସିଦ୍ଧ ନାଟ୍ୟକାରମାନଙ୍କ ମଧ୍ୟରେ ଅନ୍ୟତମ ଶ୍ରୀ ନୀଳକଣ୍ଠ ମିଶ୍ର ୧୯୩୨ ମସିହା ନଭେମ୍ବର ମାସ ୧୧ ତାରିଖରେ ପୁରୀ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ । ଶିକ୍ଷା ସମାପ୍ତି ପରେ ଶିକ୍ଷକତାକୁ ନିଜର ପେଶା ଭାବେ ଗ୍ରହଣ କରିଥିଲେ ମଧ୍ୟ ଏହି ବାଣୀପୁତ୍ର ଓଡ଼ିଶାର ନାଟ୍ୟକଳାର ବିକାଶ ନିମନ୍ତେ ନିଜର ଲେଖନୀଚାଳନାରୁ କେବେ-ହେଲେ ବିରତ ହୋଇନାହାନ୍ତି । ଦୀର୍ଘ ତେତିଶ ବର୍ଷର ଶିକ୍ଷକ ଜୀବନ ସହିତ ନାଟ୍ୟ ସାହିତ୍ୟର ବିକାଶ ଏବଂ ଅଭିବୃଦ୍ଧି ନିମନ୍ତେ ସେ ସ୍ୱୀୟ ସାଧନାସିକ୍ତ ଜୀବନକୁ ଉତ୍ସର୍ଗ କରି ଚାଲିଛନ୍ତି । ତାଙ୍କ ରଚିତ ପ୍ରସିଦ୍ଧ ନାଟକମାନଙ୍କ ମଧ୍ୟରେ 'ଝଡ଼ି ଜହ୍ନି' ଏବଂ 'ଅମୃତଲଗ୍ନ' ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍‌ର ଭିରି ପ୍ରେକ୍ଷାଳୟରେ ମଞ୍ଚସ୍ଥ ହେବା ସଙ୍ଗେ ସଙ୍ଗେ 'ଶପଥ' 'ପାଷାଣ' ଓ 'ଲୁହ ଝରେ' ଅନ୍ନପୂର୍ଣ୍ଣା ବି'ଗ୍ରୁପ, ଏବଂ କଲାଶ୍ରୀ ଥିଏଟରର ରଙ୍ଗମଞ୍ଚରେ ସଫଳତାର ସହ ମଞ୍ଚସ୍ଥ ହୋଇ ତାଙ୍କୁ ବହୁ ପ୍ରଶଂସାର ଅଧିକାରୀ କରାଇଛି । ତାଙ୍କର ଅନ୍ୟାନ୍ୟ ନାଟ୍ୟକୃତି 'ନିଶାନ୍ତର ଅନ୍ଧକାର', 'ତାମ୍ରଫଳକ', 'ଶେଷ କେଉଁଠି 'କାହାକୁ କରିବି ପର', 'ଏବେ ବି ସେଇ ଅନ୍ଧକାର', 'ବସନ୍ତ ଝଡ଼', 'ମରୁମନ୍ଦାକିନୀ' 'ମୁକୁଟ ମୁକ୍ତା', 'ପଲାଶରୁ ବି ରଙ୍ଗ ଝରେ', ଓ 'ସେ ବଂଶୀ ସେଇ ସ୍ୱନ', ଆଦି ବିଭିନ୍ନ ରୁଚିର ନାଟକ ଭାବରେ ଅନେକ ସୌଖୀନ ନାଟ୍ୟମଞ୍ଚରେ ମଞ୍ଚସ୍ଥ ହୋଇ ନାଟ୍ୟକାରଙ୍କୁ ବହୁ ସମ୍ମାନର ଅଧିକାରୀ କରିଛି ।

ସମ୍ପ୍ରତି ନାଟ୍ୟକାରଙ୍କ ରଚିତ ନାଟକ 'ଭୁସ୍ୱା' ରାଜ୍ୟ ସଙ୍ଗୀତ ନାଟକ ଏକାଡେମୀର ପ୍ରାନ୍ତୀୟ ନାଟକ ଉତ୍ସବର ଶ୍ରେଷ୍ଠ ପାଣ୍ଡୁଲିପି ଭାବେ ପୁରସ୍କୃତ ହୋଇଛି । ନାଟ୍ୟକାରଙ୍କ ରଚିତ 'ମହାଲକ୍ଷ୍ମୀପୂଜା' 'ପିଙ୍ଗଳାର ଅଭିସାର' ଏବଂ 'ସୁକନ୍ୟା' ଆଦି ଗୀତିନାଟ୍ୟ ଏବେ ବି ବହୁ ସୌଖୀନ ସଂସ୍ଥା ଦ୍ୱାରା ମୁକ୍ତ ଆକାଶ ତଳେ ମଞ୍ଚସ୍ଥ ହୋଇ ଏହି କୃତୀ ନାଟ୍ୟଶିଳ୍ପୀଙ୍କୁ ଅଭିନନ୍ଦିତ କରିଛି ।

ଓଡ଼ିଶାର ନାଟ୍ୟ ସାହିତ୍ୟକୁ ତାଙ୍କର ଏହି ଅନନ୍ୟ ଯୋଗଦାନକୁ ବିଚାରକୁ ନେଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୯୧-୯୨ ବର୍ଷରେ ନାଟ୍ୟକାର ଶ୍ରୀ ମିଶ୍ରଙ୍କୁ ସମ୍ମାନିତ ଏବଂ ପୁରସ୍କୃତ କରିଅଛନ୍ତି । ଆଗାମୀ ଦିନରେ ମଧ୍ୟ ତାଙ୍କ ବଳିଷ୍ଠ ଲେଖନୀ ଓଡ଼ିଶାର ନାଟ୍ୟ ଜଗତକୁ ଏମିତି ସମୃଦ୍ଧ କରି ଚାଲିଥିବ ଏ ବିଶ୍ୱାସ ରାଜ୍ୟବାସୀଙ୍କର ଅଛି ।

## ଶ୍ରୀମତୀ ଗ୍ଲୋରିଆ ମହାନ୍ତି

**ସୂତାହାଟ, କଟକ**

**ଜନ୍ମ— ୧୯୩୨, ଜୁନ୍ ୨୭**



ଓଡ଼ିଆ ରଙ୍ଗମଞ୍ଚର ଜଣେ ଉଚ୍ଚ ପ୍ରତିଭାସମ୍ପନ୍ନ ଅଭିନେତ୍ରୀ ରୂପେ ସୁପରିଚିତା ଶ୍ରୀମତୀ ଗ୍ଲୋରିଆ ମହାନ୍ତି ୧୯୩୨ ମସିହା ଜୁନ୍ ମାସ ୨୭ ତାରିଖ ଦିନ କଟକ ସହରସ୍ଥ ସୂତାହାଟଠାରେ ଏକ ରକ୍ଷଣଶୀଳ ଖ୍ରୀଷ୍ଟିଆନ ପରିବାରରେ ଜନ୍ମଗ୍ରହଣ କରିଥିଲେ । କଳାପ୍ରତି ନିଜର ଅନ୍ତରଙ୍ଗ ଆକର୍ଷଣ ହେତୁ ସମାଜର ରକ୍ଷଣଶୀଳତାର ସବୁ ବନ୍ଧନକୁ ଏଡ଼ାଇଦେଇ ସେ ୧୯୪୩ ମସିହାରେ ତାଙ୍କର ଅଭିନେତ୍ରୀ ଏବଂ ନୃତ୍ୟ ଶିଳ୍ପୀର ଜୀବନ ଆରମ୍ଭ କରିଥିଲେ । କଟକ ଜିଲ୍ଲାର ଟାଙ୍ଗୀଠାରେ ଥିବା ପ୍ରସିଦ୍ଧ ବଳଦେବଜୀଉ ରଙ୍ଗମଞ୍ଚରେ ସେ ତାଙ୍କର ପ୍ରଥମ ନୃତ୍ୟ ପ୍ରଦର୍ଶନ କରିଥିଲେ । ପରବର୍ତ୍ତୀ ସମୟରେ ୧୯୪୮ ଠାରୁ ସେ ଆକାଶବାଣୀ କଟକ କେନ୍ଦ୍ରରେ ଜଣେ ସ୍ୱୀକୃତ କଣ୍ଠଶିଳ୍ପୀ ଭାବେ ଯୋଗଦାନ କରି ତହିଁରେ ୧୯୬୭ ମସିହା ପର୍ଯ୍ୟନ୍ତ ବହୁ ସଙ୍ଗୀତ ବିଶେଷକରି ପଲ୍ଲୀଗୀତ ପରିବେଷଣ କରିଯାଇଛନ୍ତି । ୧୯୪୪ ରେ ତାଙ୍କର ପ୍ରଥମେ କଲମ୍ବିଆ ଏବଂ ପରେ ଏଚ୍. ଏମ୍. ଭି ରେକର୍ଡ କମ୍ପାନୀ ଦ୍ୱାରା ଅନେକ ପଲ୍ଲୀଗୀତ, ଭଜନ ଏବଂ ସୁଗମ ସଙ୍ଗୀତ ରେକର୍ଡ଼ କରାଯାଇଥିଲା । ୧୯୪୯ରେ ଓଡ଼ିଆ ଚଳଚ୍ଚିତ୍ର ସହ ଅଭିନେତ୍ରୀ ଭାବେ ସଂଶ୍ଳିଷ୍ଟ ରହି ସେ 'ଶ୍ରୀ ଜଗନ୍ନାଥ' ଲଳିତା, ଓ ପରେ ପରେ ମା, ଶୀତରାତି, ତଅପୋଇ, ଛମାଣ ଆଠଗୁଣ୍ଠ, ସୁବର୍ଣ୍ଣ ସୀତା, ଅପରିଚିତା ଓ ବସ୍ତ୍ରହରଣ ଆଦି ଅନ୍ୟୂନ ପଚିଶଗୋଟି ଚଳଚ୍ଚିତ୍ରରେ ଅଭିନୟ କରି ନିଜର ଅଭିନୟ-ଦକ୍ଷତାରେ ରାଜ୍ୟବାସୀଙ୍କ ମନ ମୋହି ପାରିଥିଲେ । ଅଧୁନା ଦୂରଦର୍ଶନ କାର୍ଯ୍ୟକ୍ରମରେ ଜଣେ ସ୍ୱୀକୃତ ଦୂରଦର୍ଶନ ଶିଳ୍ପୀଭାବରେ ସେ ଲଗ୍ନ, ଆହୁତି, ଘରେ ପରୀକ୍ଷାକରି ଦେଖନ୍ତୁ, ଶ୍ରାବଣୀ, ଦାସବାବୁଙ୍କ ପରିବାର ଓ ଜୟଦେବ ନାଟକରେ ଅଭିନୟ କରି ବହୁ ପ୍ରଶଂସାର ଅଧିକାରିଣୀ । ଅନେକ ଟେଲିଫିଲ୍ମ ଓ ଶିଶୁ ଚଳଚ୍ଚିତ୍ର ସହିତ ହିନ୍ଦି ଚଳଚ୍ଚିତ୍ର 'ଆଶ୍ରୟ' ଓ 'ସୋପାନ' ରେ ତାଙ୍କର ଅଭିନୟ ତାଙ୍କ ଅଭିନୟଦକ୍ଷତାର ପରିଚୟ ଦିଏ । ଚଳିତ

ବର୍ଷର ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବରେ ପୁରସ୍କୃତ ଓଡ଼ିଆ କଥାଚିତ୍ର 'ଆଦିମୀମାଂସା'ରେ ତାଙ୍କର ଅଭିନୟ ଜୀବନ୍ତ ଏବଂ ପ୍ରାଣସ୍ପର୍ଶୀ ।

ଏକାଧାରରେ ଅଭିନେତ୍ରୀ, ଗାୟିକା ଏବଂ ନୃତ୍ୟ ଶିଳ୍ପୀ ଶ୍ରୀମତୀ ମହାଶ୍ୱେତା କେବଳ ଓଡ଼ିଶାରେ ନୁହେଁ, କଲିକତା, ବମ୍ବେ, ଦିଲ୍ଲୀ ପ୍ରଭୃତି ସ୍ଥାନରେ ଓଡ଼ିଆ, ବଙ୍ଗଳା, ହିନ୍ଦି, ଉର୍ଦ୍ଦୁ ଏବଂ ଇଂରାଜୀ ଭାଷାରେ ଅଭିନୟ କରି ଉଚ୍ଚ ପ୍ରଶଂସିତା । ଏହି ବହୁ ପ୍ରତିଭାସମ୍ପନ୍ନା ଅଭିନେତ୍ରୀଙ୍କର ଓଡ଼ିଆ ରଙ୍ଗମଞ୍ଚ ଆନ୍ଦୋଳନକୁ ଦେଇଥିବା ବିଶେଷ ଅବଦାନ ନିମନ୍ତେ ୧୯୯୧—୯୨ ବର୍ଷରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରି ନିଜକୁ ଗୌରବାନ୍ୱିତ ମନେ କରିଅଛନ୍ତି ।

●



## ଶ୍ରୀ ଈଶ୍ୱର ଚନ୍ଦ୍ର ମହାନ୍ତି

ଗଞ୍ଜାମ

ଜନ୍ମ—୧୯୨୧, ନଭେମ୍ବର ୧

ଓଡ଼ିଆ ରଙ୍ଗମଞ୍ଚର ଜଣେ ପୁରାତନ ମଞ୍ଚଶିଳ୍ପୀ ରୂପେ ସୁପରିଚିତ ଶ୍ରୀ ଈଶ୍ୱର ଚନ୍ଦ୍ର ମହାନ୍ତି ୧୯୨୧ ମସିହା ନଭେମ୍ବର ମାସ ୧ ତାରିଖରେ ଗଞ୍ଜାମ ଜିଲ୍ଲାରେ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟ ଜୀବନରୁ ସଙ୍ଗୀତ ପ୍ରତି ତାଙ୍କର ଥିଲା ଅଗାଧ ସ୍ନେହ ଓ ମମତା । ନିଜର ସୁଲଳିତ କଣ୍ଠ ପାଇଁ ସେ ଗ୍ରାମ୍ୟ ଜୀବନରୁ ବହୁ ପ୍ରଶଂସାର ଅଧିକାରୀ ହୋଇ ପାରିଥିଲେ ।

ପାରିବାରିକ ଅଭାବ ଅନାଟନ ତାଙ୍କୁ ରାସସ୍ରଷ୍ଟା ସ୍ୱର୍ଗତ ପ୍ରଭୁପାଦ ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସଦଳରେ ଛନ୍ଦି ଦେଇଥିଲା । ରାସଦଳର ରଙ୍ଗଶାଳାରୁ ତାଙ୍କର କଳାମୟ ଜୀବନ ଚର୍ଯ୍ୟା ଓ ପ୍ରବଣତା ତାଙ୍କୁ ଅଦ୍ୟାବଧି ସେହି କଳା କଳେବର ମଧ୍ୟରେ ବାନ୍ଧି ରଖିପାରିଛି । ଶତ ଦାରିଦ୍ର୍ୟ ଧକ୍କା ଏବଂ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇ ମଧ୍ୟ, ରଙ୍ଗାଳୟର ଚଉହଦ୍ଦି ମଧ୍ୟରୁ ନିଜକୁ ସେ ବିଚ୍ୟୁତ କରିପାରି ନାହାନ୍ତି ।

ରଙ୍ଗମଞ୍ଚରେ ଅଭିନୟ କରିବାର ନିଶା ତାଙ୍କୁ ଅନ୍ୟୂନ ପଚିଶ ବର୍ଷ ଧରି ପାଗଳ କରି ରଖିଛି । ୧୯୪୧ ମସିହାରୁ ଅଦ୍ୟାବଧି ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ପାଦ ପ୍ରଦୀପ ତଳେ ତାଙ୍କର ବିଭିନ୍ନ ଧରଣର ଚରିତ୍ରାଭିନୟ ତାଙ୍କୁ ସମାଦୃତ କରିଛି । ପରିବାରର ଜଞ୍ଜାଳମୟ ଜୀବନ ଗାଥାକୁ ସେ କଳାତ୍ମକ ରୂପ ରୂପାନ୍ତରରେ ଗୀତମୟ କରି ତୋଳିଛନ୍ତି । ଅନ୍ନପୂର୍ଣ୍ଣାର 'ମାନଭଞ୍ଜନ' ଠାରୁ କଂସାକବାଟ, ବାଡ଼ୁଅ ଝିଅ ଓ ତୋଳା କନିଆଁ ଆଦି ସହ ଓଡ଼ିଆ ଚଳଚ୍ଚିତ୍ର ନୀଳମାଧବରେ ତାଙ୍କର ଅଭିନୟ ବେଶ୍ ପ୍ରାଣବନ୍ତ ।

ଓଡ଼ିଆ ରଙ୍ଗମଞ୍ଚ ଆନ୍ଦୋଳନକୁ ତାଙ୍କର ଏହି ଅବଦାନକୁ ସ୍ମରଣ କରି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ମହାନ୍ତିଙ୍କୁ ୧୯୯୧—୯୨ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।



# ଶ୍ରୀ ଦସ୍ୟାନିଧି ତ୍ରିପାଠୀ

## ପଦ୍ମପୁର, ବାଲେଶ୍ୱର

**ଜନ୍ମ--୧୯୧୪, ଫେବୃୟାରୀ ୧୦**

ଓଡ଼ିଶାର ଜଣେ କୃତବିଦ୍ୟ ଯନ୍ତ୍ରସଙ୍ଗୀତଜ୍ଞ (କ୍ଲାରିଓନେଟ୍) ଶ୍ରୀ ଦସ୍ୟାନିଧି ତ୍ରିପାଠୀ ୧୯୧୪ ମସିହା ଫେବୃୟାରୀ ମାସ ୧୦ ତାରିଖରେ ବାଲେଶ୍ୱର ଜିଲ୍ଲାର ପଦ୍ମପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ପନ୍ଦର ବର୍ଷ ବୟସରୁ ରଘୁନାଥଙ୍କର ଯାତ୍ରା ଦଳରେ ଯୋଗଦାନ କରି ନିଜର କଳାମୟ ଜୀବନ ଆରମ୍ଭ କରିଥିଲେ ଏବଂ ପରବର୍ତ୍ତୀ ସମୟରେ କଲିକତା ଆସି ବିଶିଷ୍ଟ କ୍ଲାରିଓନେଟ୍ ବାଦକ ୰ ଅଭୟକୁମାର ମଜୁମଦାରଙ୍କ ନିକଟରୁ କ୍ଲାରିନେଟ୍ ବାଦନର ବିଶେଷଶୈଳୀ ଶିକ୍ଷା ଲାଭ କରିଥିଲେ । କଲିକତାରୁ ଫେରିବା ପରେ ବିଭିନ୍ନ ଗଣନାଟ୍ୟ ଦଳରେ ଯୋଗଦାନ କରି ବାଦ୍ୟକାର ଭାବରେ ଉଚ୍ଚପ୍ରଶଂସିତ ହେବା ସଙ୍ଗେ ସଙ୍ଗେ ନୀଳଗିରି ରାଜଦରବାରରେ ସମ୍ମାନିତ ହୋଇଥିଲେ । ୧୯୪୬ ରେ ସେ ଅନ୍ନପୂର୍ଣ୍ଣା ବି' ଗ୍ରୁପରେ ବାଦ୍ୟକାର ଭାବରେ ଯୋଗଦାନ କରିବାର ଦୁଇବର୍ଷ ପରେ ୧୯୪୮ ରେ ମଞ୍ଚଗୁରୁ ଶ୍ରୀ କାର୍ତ୍ତିକ କୁମାର ଘୋଷଙ୍କ ସୁପାରିଶ ଲାଭକରି ଏଚ. ଏମ. ଭି ଏବଂ କଲମ୍ବିଆ ରେକର୍ଡ଼ କମ୍ପାନୀରେ ସହକାରୀ ଯନ୍ତ୍ରୀଭାବେ ଯୋଗଦାନ କରିବାର ସୁଯୋଗ ଲାଭ କରିଥିଲେ । ସେହି ସମୟରେ ସେ ତତ୍କାଳୀନ ବିଶିଷ୍ଟ ବଂଶୀବାଦକ ୰ ରାଜାବାବୁଙ୍କ ନିକଟରୁ ବଂଶୀବାଦନ ମଧ୍ୟ ଶିକ୍ଷା କରିଥିଲେ । ୧୯୫୫ ରେ ସେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍ ଥିଏଟର କମ୍ପାନୀରେ ଯୋଗଦାନ କରିଥିଲେ ।

୧୯୬୨ ରେ ସେ ଆକାଶବାଣୀ କଟକ କେନ୍ଦ୍ରରେ ଜଣେ ସ୍ୱୀକୃତ ଯନ୍ତ୍ରଶିଳ୍ପୀ ଭାବେ ଯୋଗଦାନ କରିଥିଲେ ।

ଏକକ କାର୍ଯ୍ୟକ୍ରମ ସହିତ କଟକ ଆକାଶବାଣୀର ସମସ୍ତ ଲୋକପ୍ରିୟ ଗୀତିନାଟ୍ୟର କ୍ଲାରିଓନେଟ୍ ବାଦ୍ୟକାର ଭାବେ ଶ୍ରୋତାମାନଙ୍କ ନିକଟରେ ଯଥେଷ୍ଟ ପ୍ରଶଂସାଭାଜନ ହେବା ସହିତ, ଓଡ଼ିଆ ଗୀତିନାଟ୍ୟ ପରଂପରାର ସୁମଧୁର ସ୍ୱରକାର ଏବଂ ପ୍ରସିଦ୍ଧ ସ୍ୱରଲହରୀର ସ୍ରଷ୍ଟା ଭାବରେ ଶିଳ୍ପୀ ଶ୍ରୀ ତ୍ରିପାଠୀ ଶ୍ରୋତା ଓ ଦର୍ଶକମାନଙ୍କ ମନ ମଧ୍ୟରେ ଚିର ଅମର ହୋଇ ରହିବେ । ଓଡ଼ିଶାର ସଙ୍ଗୀତ ଜଗତକୁ ତାଙ୍କର ଏତାଦୃଶ ମହନୀୟ ଅବଦାନ ନିମନ୍ତେ ଓଡ଼ିଶୀ ସଙ୍ଗୀତନାଟକ ଏକାଡେମୀ ଶ୍ରୀ ତ୍ରିପାଠୀଙ୍କୁ ୧୯୯୧–୯୨ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।



## ଶ୍ରୀ ପଦ୍ମଚରଣ ବେହେରା
### ପୋଲସରା

**ଜନ୍ମ—୧୯୩୨, ଫେବୃୟାରୀ ୧୫**

ଓଡ଼ିଶାର ଜଣେ ସଫଳ ଲୋକବାଦ୍ୟ ମୃଦଙ୍ଗର ବାଦ୍ୟକାର ରୂପେ ସୁପରିଚିତ, ଶ୍ରୀ ପଦ୍ମଚରଣ ବେହେରା ଗଞ୍ଜାମ ଜିଲ୍ଲାର କୋଦଳା ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ପୋଲସରା ଗ୍ରାମରେ ୧୯୩୨ ମସିହା ଫେବୃୟାରୀ ମାସ ୧୫ ତାରିଖରେ ସ୍ୱର୍ଗତ ମାଧୀ ବେହେରା ଏବଂ ଶ୍ରୀମତୀ ବେହେରାଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । ବାଦନ କଳା ପ୍ରତି ଅନୁରାଗ ତାଙ୍କର ସହଜାତ ପ୍ରବୃତ୍ତି ଥିଲା । ତାଙ୍କ ପିତା ଜଣେ ବିଶିଷ୍ଟ ମୃଦଙ୍ଗବାଦକ ଭାବରେ ରାଜଦରବାରରେ ବହୁ ସମ୍ମାନ ଲାଭ କରିଥିଲେ । ସାଧାରଣ ଭାବେ ଦେବପୂଜା ନିମନ୍ତେ ମନ୍ଦିରରେ ବାଦନ ନିମନ୍ତେ ତାଙ୍କୁ ବଂଶାନୁକ୍ରମିକ ଭାବେ ଏହି କଳା ଶିକ୍ଷା କରିବାକୁ ପଡ଼ିଥିଲେ ମଧ୍ୟ ନିଜର ସହଜାତ କଳାପ୍ରବଣତା ତାଙ୍କୁ ଏ କ୍ଷେତ୍ରରେ ଯଥେଷ୍ଟ ଆଗେଇ ନେଇ ପାରିଥିଲା ।

ସେ ନିଜର କୌଳିକ ବସ୍ୱନ ବୃତ୍ତି ସହିତ ପୋଲସରାସ୍ଥ ଶ୍ରୀରଘୁନାଥ ମନ୍ଦିରରେ ସେବକ ଭାବେ, ସବୁ ଯାନିଯାତ୍ରା କାଳରେ ଘଣ୍ଟ ବାଦ୍ୟର ତାଳେ ତାଳେ ମୃଦଙ୍ଗ ବାଦନ କରିଆସୁଛନ୍ତି । ମୃଦଙ୍ଗବାଦନର ବିଶେଷ ଶୈଳୀ ସେ ବାଦ୍ୟବିଶାରଦ ଅର୍ଜୁନ ରାଉତଙ୍କ ନିକଟରୁ ଶିକ୍ଷାଲାଭ କରିଥିଲେ । ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜଠାରେ ତତ୍କାଳୀନ ରାଷ୍ଟ୍ରପତି ସ୍ୱର୍ଗତ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ସ୍ୱାଗତ ସମୟରେ ଅପୂର୍ବ ମୃଦଙ୍ଗ ବାଦନ କରିବା ସହିତ ସ୍ୱର୍ଗତ ପଣ୍ଡିତ ନେହେରୁ, ସ୍ୱର୍ଗତ ଇନ୍ଦିରା ଗାନ୍ଧୀ, ସ୍ୱର୍ଗତ ରାଜୀବ ଗାନ୍ଧୀ ଏବଂ ମହାକାଶଯାତ୍ରୀ ସ୍ୱର୍ଗତ ୟୁରି ଗାଗାରିନ୍‌ଙ୍କ ଓଡ଼ିଶା ଆଗମନ ସମୟରେ ସ୍ୱାଗତ ଅଭିନନ୍ଦନ ଭାବରେ ଘଣ୍ଟ ମୃଦଙ୍ଗ ବାଦନ କରି ସେ ଉଚ୍ଚ ପ୍ରଶଂସା ଲାଭ କରିଥିଲେ ।

ବିଭିନ୍ନ ସମୟରେ ଆକାଶବାଣୀ, ଦୂରଦର୍ଶନର ବିଶେଷ ସାଂସ୍କୃତିକ ଉତ୍ସବ ସହିତ, ରାଜ୍ୟ ସରକାର ତଥା ସଙ୍ଗୀତ ନାଟକ ଏକାଡେମୀର ବିଭିନ୍ନ ଲୋକଉତ୍ସବ କାଳରେ

ଶିଳ୍ପୀ ବେହେରା ଅପୂର୍ବ ମୃଦଙ୍ଗ ବାଦନ କରି ସମସ୍ତଙ୍କୁ ଚମତ୍କୃତ କରିଆସିଛନ୍ତି । ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତ କଳାକାର ଭାବରେ ସେ ଆଜକୁ ଦୀର୍ଘ ୨୫ ବର୍ଷ ଧରି କାର୍ଯ୍ୟରତ ।

ରୁଷିଆରେ ଭାରତଉତ୍ସବ ସହିତ ୧୯୮୮ ସାଧାରଣତନ୍ତ୍ର ଦିବସର ରାଷ୍ଟ୍ରୀୟ ପ୍ୟାରେଡ୍‌ରେ ଏବଂ ୧୯୯୧ ରାଜ୍ୟସ୍ତରୀୟ ପାଇକ ଆଖଡ଼ା ଉତ୍ସବରେ ଶିଳ୍ପୀ ଓ ତାଙ୍କ ଦଳ ମାଙ୍ଗଳିକ ଘଣ୍ଟ ମୃଦଙ୍ଗ ପଟୁଆରରେ ଚିତ୍ତାକର୍ଷକ ବାଦ୍ୟବିଚକ୍ଷା ପ୍ରଦର୍ଶନ କରି ଶତମୁଖରେ ଉଚ୍ଚପ୍ରଶଂସିତ ।

ଲୋକବାଦନ କଳା ପ୍ରତି ତାଙ୍କର ଏତାଦୃଶ ବିଶେଷ ଅବଦାନକୁ ଆଗରେ ରଖି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀଯୁକ୍ତ ବେହେରାଙ୍କୁ ୧୯୯୧-୯୨ ବର୍ଷ ନିମନ୍ତେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।

●



## ଶ୍ରୀ ନିତାଇ ଚରଣ ସିହ୍ନା

### କଟକ ସଦର

### ଜନ୍ମ—୧୯୧୬, ଫେବୃୟାରୀ

ଓଡ଼ିଶାର କତିପୟ ଶାସ୍ତ୍ରୀୟ ସଙ୍ଗୀତଜ୍ଞମାନଙ୍କ ମଧ୍ୟରେ ଶ୍ରୀ ନିତାଇ ଚରଣ ସିହ୍ନା ଅନ୍ୟତମ । ଶ୍ରୀ ସିହ୍ନା ୧୯୧୬ ମସିହା ଫେବୃୟାରୀ ମାସରେ କଟକ ସହରରେ ଂ ଗୋପାଳ ଚରଣ ସିହ୍ନା ଏବଂ ଂ ସରୋଜିନୀ ସିହ୍ନାଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରି-ଥିଲେ । ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠରୁ ମାଟ୍ରିକ୍ ପାଶ୍ କରିବା ପରେ ସେ ରେଭେନ୍ସା ମହା ବିଦ୍ୟାଳୟରୁ ଆଇ. ଏ ଏବଂ ସ୍ନାତକ ଡିଗ୍ରୀ ହାସଲ କରିବା ପରେ ସଙ୍ଗୀତ ଶିକ୍ଷାରେ ନିମଗ୍ନ ରହି ପଢ଼ା ତ୍ୟାଗ କରିଥିଲେ । ସଙ୍ଗୀତ ଜୀବନର ପ୍ରାରମ୍ଭିକ ଶିକ୍ଷା ସେ ବାଲେଶ୍ୱରର ମୋତିଗଞ୍ଜଠାରେ ରହୁଥିବା ନିଜ ମାମୁ ପ୍ରସିଦ୍ଧ ଓସ୍ତାଦ ଂ ଗୋପାଳ ଚରଣ ଘୋଷଙ୍କ ନିକଟରୁ ଲାଭ କରିଥିଲେ । ପରବର୍ତ୍ତୀ ସମୟରେ ସେ ଂ ଗିରିଜା ବଲ୍ଲଭ ଚକ୍ରବର୍ତ୍ତୀ, ଂ ଗଫୁର ଖାଁ ସାହେବ, ଂ ଜମିରୁଦ୍ଦିନ୍ ଖାଁ ସାହେବ ଏବଂ ଂ କ୍ଷିତୀଶ ମୈତ୍ରଙ୍କ ନିକଟରୁ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିଥିଲେ । ଏତଦ୍ ବ୍ୟତୀତ ସେ ଲକ୍ଷ୍ନୌସ୍ଥିତ ସଂଗୀତ ବିଦ୍ୟାଳୟରୁ ମଧ୍ୟ ଶିକ୍ଷାଲାଭ କରି ନିଜକୁ ଜଣେ ପ୍ରତିଷ୍ଠିତ ଶାସ୍ତ୍ରୀୟ ସଙ୍ଗୀତଜ୍ଞ ଭାବରେ ପରିଚିତ କରାଇ ପାରିଥିଲେ । ଶାସ୍ତ୍ରୀୟ ସଂଗୀତର ପ୍ରଚାର ଏବଂ ପ୍ରସାର କ୍ଷେତ୍ରରେ ସେ ଅଦ୍ୟାବଧି କର୍ମତତ୍ପର । ଅଗଣିତ ଛାତ୍ରଛାତ୍ରୀମାନଙ୍କୁ ଶାସ୍ତ୍ରୀୟ ସଙ୍ଗୀତ ପ୍ରତି ଆକୃଷ୍ଟ କରି ସ୍ୱରସାଧନା, ସ୍ୱରବିସ୍ତାର, ଓ ହିନ୍ଦୁସ୍ଥାନୀ ଘରାନାର ବିଭିନ୍ନ ରାଗ ସଂପର୍କରେ ପରିଚିତ କରାଇ ସେ ଉତ୍ତରଦାୟାଦମାନଙ୍କୁ ଉପଯୁକ୍ତ ଭାବେ ଗଢ଼ି ତୋଳିବାର କଠିନ କର୍ମରେ ସର୍ବଦା ନିମଗ୍ନ । ଜଣେ ସଫଳ କୃତବିଦ୍ୟ ଶାସ୍ତ୍ରୀୟ ସଂଗୀତ ଗୁରୁ ଭାବରେ ସେ ବହୁ ସୁଖ୍ୟାତ ।

ସଂଗୀତ ମାଧ୍ୟମରେ ପ୍ରାଣରୂପକ ବ୍ରହ୍ମଙ୍କୁ ଉପଲବ୍ଧି କରିବା ହିଁ ତାଙ୍କ ମତରେ ପ୍ରକୃତ ସଙ୍ଗୀତ ସାଧନା । ସଙ୍ଗୀତ ଜୀବନକୁ ଶୃଙ୍ଖଳିତ କରିବା ସହିତ ବିଭୂଳଭାବରେ ନିମଗ୍ନ

ରହିବାର ଯୋଗକୁ ଅଭିମାନପର ଶତ୍ରୁ ନିକଟରେ ପହଞ୍ଚାଇପାରେ ବୋଲି ସେ କହନ୍ତି । ବିଭିନ୍ନ ସମୟରେ ଏହି ନୀରବ ସାଧନାସିଦ୍ଧ ଶିଳ୍ପୀଙ୍କୁ 'ସ୍ୱରଝଙ୍କାର' ଏବଂ 'ଉତ୍କଳ ପାଠକ ସଂସଦ' ସଂସ୍ଥା ତରଫରୁ ସମ୍ମାନିତ କରାଯିବା ସଙ୍ଗେ ସଙ୍ଗେ କଳାନିଧି ଉପାଧିରେ ଭୂଷିତ କରାଯାଇଛି ।

ସମ୍ପ୍ରତି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଶ୍ରୀ ସିଂହଙ୍କର ସଙ୍ଗୀତ ଜଗତକୁ ବିଶେଷ ଅବଦାନ ନିମନ୍ତେ ୧୯୯୧-୯୨ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରି-ଅଛନ୍ତି । ଉଦୀୟମାନ ଯୁବ ଶାସ୍ତ୍ରୀୟ କଳାକାରମାନଙ୍କ ନିମନ୍ତେ ସେ ଏକ ଜୀବନ୍ତ ପ୍ରେରଣାର ଉତ୍ସ କହିଲେ ଅତ୍ୟୁକ୍ତି ହେବନାହିଁ ।

●



## ଶ୍ରୀ ସୁଧାକର ସାହୁ

ଢେଙ୍କାନାଳ

ଜନ୍ମ—୧୯୪୦, ନଭେମ୍ବର ୭

ଓଡ଼ିଶୀ ନୃତ୍ୟଶୈଳୀର ଅନ୍ୟତମ ନୃତ୍ୟ ନିର୍ଦ୍ଦେଶକ ଭାବେ ସୁଖ୍ୟାତ ଗୁରୁ ଶ୍ରୀ ସୁଧାକର ସାହୁ ୧୯୪୦ ମସିହା ନଭେମ୍ବର ମାସ ୭ ତାରିଖରେ ଢେଙ୍କାନାଳ ଜିଲ୍ଲାରେ ଜନ୍ମ ଗ୍ରହଣ କରିଥିଲେ । ମାତ୍ର ସାତବର୍ଷ ବୟସରୁ ସେ ଗୁରୁ ଦୁର୍ଯ୍ୟୋଧନ ମହାନ୍ତି, ଶ୍ରୀ ଜୟରାମ କୁଣ୍ଡୁଙ୍କ ନିକଟରୁ ନୃତ୍ୟର ପ୍ରାରମ୍ଭିକ ଶିକ୍ଷା ଲାଭ କରିଥିଲେ । ପରବର୍ତ୍ତୀ ସମୟରେ ବାବାଜି ଦାସ, ପଦ୍ମନାଭ ଦାସ ଏବଂ ଗୁରୁ ମୋହନ ମହାପାତ୍ରଙ୍କ ନିକଟରୁ ଗୋଟିପୁଅ ନୃତ୍ୟଶୈଳୀରେ ବିଶେଷ ଶିକ୍ଷା ଗ୍ରହଣ କରିବା ପରେ ନିଜର ପେଷାଦାର ଜୀବନ ଆରମ୍ଭ କରିଥିଲେ । ୧୯୬୧ ମସିହାରେ ସେ ଅନ୍ନପୂର୍ଣ୍ଣା ବି' ଗ୍ରୁପ୍‌ରେ ନୃତ୍ୟ ଶିଳ୍ପୀ ଭାବେ ଯୋଗଦାନ କରି ନାଟକ 'ପହ୍ଲିରଜ' ରେ ଅପୂର୍ବ ସଫଳତାର ସହ ନୃତ୍ୟ ପ୍ରଦର୍ଶନ କରି ଲୋକଲୋଚନକୁ ଆସିଥିଲେ । ଦୁଇ ବର୍ଷ ପରେ ୧୯୬୩ ରେ ଜନତା ରଙ୍ଗମଞ୍ଚରେ ଯୋଗଦାନ କରି ବିଭିନ୍ନ ନାଟକରେ ନୃତ୍ୟ ପରିବେଷଣ କରି ଉଚ୍ଚପ୍ରଶଂସା ଲାଭ କରିଥିଲେ । ବିଶେଷ କରି ୧୯୬୩-୬୪ ମସିହାରେ ଦିଲ୍ଲୀଠାରେ ଅନୁଷ୍ଠିତ ନାଟକ ଉତ୍ସବରେ ଓଡ଼ିଶାର ପ୍ରସ୍ତୁତ ନାଟକ 'ପରକଲମ'ରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରି ଦର୍ଶକମାନଙ୍କର ଅକୁଣ୍ଠ ପ୍ରଶଂସାର ଅଧିକାରୀ ହୋଇଥିଲେ । ୧୯୬୪ ମସିହାରେ ଶ୍ରୀ ସାହୁ ସ୍ୱର୍ଗତ ଗୁରୁ ଦେବପ୍ରସାଦ ଦାସଙ୍କ ତତ୍ତ୍ୱାବଧାନରେ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ ଶିକ୍ଷା ଗ୍ରହଣ କରି ନିଜର ନୃତ୍ୟ ପରିବେଷଣ ଶୈଳୀକୁ ଅଧିକ ମାର୍ଜିତ ଏବଂ ରୁଚିସମ୍ପନ୍ନ କରି ପାରିଥିଲେ । ପରେ ସେ ୧୯୬୭ ମସିହାରେ ରାଜ୍ୟ ଏକାଡେମୀ ପକ୍ଷରୁ ପୁରୀଠାରେ ପ୍ରତିଷ୍ଠିତ ଓଡ଼ିଶୀ ଗବେଷଣା କେନ୍ଦ୍ର ମାଧ୍ୟମରେ ମଧ୍ୟ ଓଡ଼ିଶୀ ଶାସ୍ତ୍ରୀୟ ନୃତ୍ୟରେ ଅଧିକ ଶିକ୍ଷା ଲାଭ କରିଥିଲେ ।

ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ ସେ ଜଣେ ଓଡ଼ିଶୀ ନୃତ୍ୟଗୁରୁ ଭାବେ ସାରା ରାଜ୍ୟର ବହୁ ସାଂସ୍କୃତିକ ଶିକ୍ଷାକେନ୍ଦ୍ରରେ କାର୍ଯ୍ୟ କରି ଅଦ୍ୟାବଧି ଦୁଇଶହରୁ ଉର୍ଦ୍ଧ୍ୱ

ଛୁଟିଏ ଛୁଟିଏ ସୃଷ୍ଟି କରିବାରେ ସକ୍ଷମ ହୋଇଛନ୍ତି । ସେ କାର୍ଯ୍ୟ କରିଥିବା ନୃତ୍ୟାନୁଷ୍ଠାନ-ମାନଙ୍କ ମଧ୍ୟରେ ପୁରୀ କିଶୋର କ୍ଲବ, ସଙ୍ଗୀତ ପରିଷଦ ପୁରୀ, ବାରିପଦା କଳା ପରିଷଦ, ସମ୍ବଲପୁର କଳା ପରିଷଦ, ବାଲେଶ୍ୱର ନୃତ୍ୟ ସଙ୍ଗୀତ ମନ୍ଦିର ଆଦିର ନାମ ଉଲ୍ଲେଖ-ଯୋଗ୍ୟ । ସମ୍ପ୍ରତି ସେ କଳାବିକାଶ କେନ୍ଦ୍ର ଛତ୍ରପୁର ଠାରେ ନୃତ୍ୟ ଶିକ୍ଷକ ଭାବେ କାର୍ଯ୍ୟରତ । ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟର ଭଙ୍ଗୀ ବିଷୟରେ ଗବେଷଣା ପାଇଁ ଶ୍ରୀ ସାହୁଙ୍କୁ ୧୯୮୮ ମସିହାରେ କେନ୍ଦ୍ର ସରକାରଙ୍କ ମାନବ ସମ୍ବଳ ବିକାଶ ବିଭାଗ ତରଫରୁ ବୃତ୍ତି ପ୍ରଦାନ କରାଯାଇଥିଲା । ଜଣେ ପ୍ରତିଷ୍ଠିତ ଓଡ଼ିଶୀ ନୃତ୍ୟଗୁରୁ ରୂପେ କଟକର ଅନ୍ୟତମ ପ୍ରସିଦ୍ଧ ଅନୁଷ୍ଠାନ 'କଳିଙ୍ଗ ଭାରତୀ' ତରଫରୁ ୧୯୯୧ ମସିହାରେ ଶ୍ରୀ ସାହୁଙ୍କୁ 'ସଚ୍ଚିଦାନନ୍ଦ ପୁରସ୍କାର' ପ୍ରଦାନ କରାଯାଇଥିଲା । ତାଙ୍କ ସୃଷ୍ଟ ଅନେକ ନୃତ୍ୟ ଶିଳ୍ପୀଙ୍କ ମଧ୍ୟରେ ନୃତ୍ୟ ପ୍ରବୀଣା ବିଜୟଲକ୍ଷ୍ମୀ ମହାନ୍ତି, ନିତା ବିହିଦାର, ମହାମାୟା କର, ରୂପସିତା ତ୍ରିପାଠୀ ଆଦି ନୃତ୍ୟାଙ୍ଗନାମାନଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ତାଙ୍କର ଏତାଦୃଶ ଅବଦାନକୁ ସ୍ମରଣ କରି ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଶ୍ରୀ ସାହୁଙ୍କୁ ୧୯୯୧-୯୨ ବର୍ଷରେ ସମ୍ବର୍ଦ୍ଧିତ ଏବଂ ପୁରସ୍କୃତ କରିଅଛନ୍ତି ।

●



## ଶ୍ରୀମତୀ ଶ୍ୟାମାମଣି ଦେବୀ

**ସୁବର୍ଣ୍ଣପୁର, କଟକ**

**ଜନ୍ମ—୧୯୪୭, ଡିସେମ୍ବର ୨୧**

ଓଡ଼ିଶାର ସଂଗୀତପ୍ରେମୀ ରସିକଶ୍ରୋତା ମହଲରେ ଓଡ଼ିଶାର 'ଲତା ମଙ୍ଗେଶ୍‌କର' ଭାବରେ ସୁପରିଚିତା ଅନନ୍ୟସାଧାରଣ କଣ୍ଠଶିଳ୍ପୀ ଶ୍ରୀମତୀ ଶ୍ୟାମାମଣି ଦେବୀ ୧୯୪୭ ମସିହା ଡିସେମ୍ବର ମାସ ୨୧ ତାରିଖରେ କଟକ ଜିଲ୍ଲାର ସୁବର୍ଣ୍ଣପୁର ମୌଜାଠାରେ ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ୰ ରାଜେନ୍ଦ୍ର ମୋହନ ପଟ୍ଟନାୟକ ତାଙ୍କର ସଙ୍ଗୀତ ଶିକ୍ଷାରେ ପ୍ରଥମ ପ୍ରୋତ୍ସାହନକାରୀ ଥିଲେ ମଧ୍ୟ ତାଙ୍କର ପ୍ରଧାନ ପ୍ରୋତ୍ସାହନକାରୀ ଥିଲେ ତାଙ୍କ ବଡ଼ବାପା ୰ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଏବଂ ଅଜା ରାୟବାହାଦୁର ଭିକାରୀ ଚରଣ ପଟ୍ଟନାୟକ ।

ବିଧିବଦ୍ଧ ସଙ୍ଗୀତ ଶିକ୍ଷା ଆରମ୍ଭ ହେବା ପୂର୍ବରୁ ୧୯୫୪ ମସିହାର ଶିଶୁ କଣ୍ଠଶିଳ୍ପୀ 'ଶ୍ୟାମା' ୧୯୫୭ ମସିହାରେ ଆକାଶବାଣୀ କଟକ କେନ୍ଦ୍ରର କଣ୍ଠଶିଳ୍ପୀ ଭାବେ ସ୍ୱୀକୃତ ହେଲେ । ଆକାଶବାଣୀର ସ୍ୱୀକୃତି ତାଙ୍କର ସଙ୍ଗୀତ ଶିକ୍ଷା ନିଶାକୁ ପ୍ରଶମିତ ନ କରି ଅଧିକ ବଢ଼ାଇଦେଲା । ୰ ସିଂହାରୀ ଶ୍ୟାମସୁନ୍ଦର କର, ସଙ୍ଗୀତ-ସୁଧାକର ବାଳକୃଷ୍ଣ ଦାଶ ଏବଂ ପରେ ନେସନାଲ୍ ମିଉଜିକ୍ ଆସୋସିଏସନରେ ଓସ୍ତାଦ୍ ୰ କୁଣ୍ଡଳାଦି ନାରାୟଣ ରାଓଙ୍କ ନିକଟରୁ ଯଥାକ୍ରମେ ଓଡ଼ିଶୀ ଶାସ୍ତ୍ରୀୟ ଏବଂ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କଲେ । ଏହି ସମୟରେ ସେ ଓଡ଼ିଶୀ ବିଶାରଦ (B. Mus) ଏବଂ ସଙ୍ଗୀତ ଅଲଙ୍କାର (M. Mus) ଶାସ୍ତ୍ରୀୟ ସଙ୍ଗୀତ, ଉପାଧି ଲାଭ କଲେ । ଜ୍ଞାନ-ପିପାସୁର ଜ୍ଞାନ ତୃଷ୍ଣା କେବେହେଲେ ଶେଷ ନ ହେବା ପରି ଏହି ଉପାଧିରେ ଅସନ୍ତୁଷ୍ଟା ଶ୍ରୀମତୀ ଶ୍ୟାମାମଣି ଏକାଡେମୀ ଅଫ୍ ଇଣ୍ଡିଆନ୍ ମିଉଜିକ୍ ମହାବିଦ୍ୟାଳୟ ବମ୍ବେଠାରେ ଉଚ୍ଚତର ସଙ୍ଗୀତ ଶିକ୍ଷା ନିମନ୍ତେ ଯୋଗଦାନ କରି ପ୍ରଫେସର ଭି. ଆର୍. ନବ୍‌ରଙ୍ଗ ଏବଂ ପ୍ରୋ.ବି.ଆର. ଦେଓଧରଙ୍କ ନିକଟରୁ ସ୍ୱରସାଧନର ପ୍ରଣାଳୀ ଶିକ୍ଷା କରିବା ସଙ୍ଗେ ସଙ୍ଗେ

ପ୍ରସିଦ୍ଧ ଶାସ୍ତ୍ରୀୟ ସଙ୍ଗୀତ ଶିଳ୍ପୀ ଶ୍ରୀମତୀ ଲକ୍ଷ୍ମୀ ଶଙ୍କରଙ୍କ ନିକଟରୁ 'ଠୁମ୍‌ରୀ' ଶାସ୍ତ୍ରୀୟ ଗାୟନ ଶିକ୍ଷା କରି ନିଜର ଶିଳ୍ପୀ ଜୀବନକୁ ପ୍ରତିଷ୍ଠିତ କରିଥିଲେ ।

୧୯୬୮ ମସିହାରେ ତତ୍କାଳୀନ ରାଷ୍ଟ୍ରପତି ସ୍ୱ ଡଃ ରାଜେନ୍ଦ୍ର ପ୍ରସାଦ ଶ୍ୟାମାମଣିଙ୍କ ଗୀତ ଶୁଣି ମୁଗ୍‌ଧ ହୋଇ ଯାଇଥିଲେ । ରାଜ୍ୟ ବାହାରେ ଦିଲ୍ଲୀ, କଲିକତା, ବମ୍ବେ, ମାଡ୍ରାସ, ପାଟନା, ତ୍ରିଭେନ୍ଦ୍ରମ, ଗୁଆହାଟୀ, କାନପୁର, ମଦୁରାଇ ଆଦି ଏବଂ ଆହୁରି ଅନେକ ସହରରେ ଓଡ଼ିଶୀ ସଙ୍ଗୀତ ପରିବେଷଣ କରି ଶିଳ୍ପୀ ବହୁ ପ୍ରଶଂସିତା । ନଅଟି ଭାଷାରେ ସଙ୍ଗୀତ ପରିବେଷଣ କରିପାରୁଥିବା ଏହି ଶିଳ୍ପୀ ଆଜିକୁ ଦୀର୍ଘ ପଚିଶ ବର୍ଷ ଧରି ଓଡ଼ିଶୀ, ଚଂପୂ, ଛାନ୍ଦ, ଜଣାଣ, ଆଧୁନିକ ଏବଂ ପଲ୍ଲୀ ଗୀତ ତଥା ଗଜଲ ରାଜ୍ୟ ମଧ୍ୟରେ ଓ ରାଜ୍ୟ ବାହାରେ ଗାନ କରି ବହୁ ମାନପତ୍ର ଏବଂ ଉପାଧି ଲାଭ କରି ଅଛନ୍ତି । ଓଡ଼ିଶାର ନିଜସ୍ୱ ଓଡ଼ିଶୀ ଗାୟନଶୈଳୀର ସ୍ୱାତନ୍ତ୍ର୍ୟ ଲକ୍ଷ୍ୟ କରିବା ଦିଗରେ ସତତ ଚେଷ୍ଟିତ ଏହି ମହାନ୍ କଳାକାର ଓଡ଼ିଶାର ଜଗନ୍ନାଥ ସଂସ୍କୃତିର ମାନ ଓ ଟେକ ରଖିବା ପାଇଁ ନିଜସ୍ୱ ପ୍ରଚେଷ୍ଟାରେ, ଓଡ଼ିଶା ସଂଗୀତ ନାଟକ ଏକାଡେମୀ ପ୍ରଚଳିତ ସ୍ୱର-ଲିପି ଅନୁଯାୟୀ, ଶ୍ରୀଜଗନ୍ନାଥ ଇଲେକ୍‌ଟ୍ରୋନିକ୍‌ସ ଜରିଆରେ ଓଡ଼ିଶୀ ଛାନ୍ଦ ଏବଂ ଚମ୍ପୂର କ୍ୟାସେଟ୍ ପ୍ରସ୍ତୁତ କରିଅଛନ୍ତି । ଏହା ନିଶ୍ଚିତ ଭାବରେ ଓଡ଼ିଶାର ରସିକ ସଙ୍ଗୀତ ପିପାସୁମାନଙ୍କ ନିମନ୍ତେ ଆନନ୍ଦର କଥା । ଏହି କ୍ୟାସେଟ୍ ଶିଳ୍ପୀଙ୍କର ଲଳିତ କଣ୍ଠ ସମ୍ଭାରରେ ରସାଣିତ ଏବଂ ଏହା ପ୍ରତ୍ୟହ ଶ୍ରୀ ଜୀଉଙ୍କ ସେବାଲାଗି ହେବାର ଜଣାଯାଏ । ଓଡ଼ିଶୀ ସଙ୍ଗୀତକୁ ବିଶ୍ୱରେ ପରିଚିତ କରାଇବାରେ ସେ ଯେଉଁ ଅଗ୍ରଣୀ ଭୂମିକା ଗ୍ରହଣ କରି ଚାଲିଛନ୍ତି, ତାହା ସ୍ମରଣ କରି ଓଡ଼ିଶୀ ସଙ୍ଗୀତ ନାଟକ ଏକାଡେମୀ ୧୯୯୧-୯୨ ବର୍ଷରେ ତାଙ୍କୁ ଉପାଧି ପ୍ରଦାନ କରି ସମ୍ମାନିତ କରିଅଛନ୍ତି । ସମ୍ପ୍ରତି ସେ କଟକର ସବ ପୁରାତନ ସାଂସ୍କୃତିକ ଅନୁଷ୍ଠାନ କଳାବିକାଶ କେନ୍ଦ୍ରରେ ଅଧ୍ୟକ୍ଷା ଭାବରେ ଅବସ୍ଥାପିତ ।

●

# ଶ୍ରୀମତୀ ଲୀଳା ଦୁଲାଲୀ

## ପାରଳାଖେମୁଣ୍ଡି, ଗଞ୍ଜାମ

ଜନ୍ମ—୧୯୩୮, ଅଗଷ୍ଟ ୧୪



ଓଡ଼ିଶା ନାଟ୍ୟ ଜଗତର ଅନ୍ୟତମା କୃତବିଦ୍ୟ ଅଭିନେତ୍ରୀ ଶ୍ରୀମତୀ ଲୀଳା ଦୁଲାଲୀ ୧୯୩୮ ମସିହା ଅଗଷ୍ଟ ମାସ ୧୪ ତାରିଖରେ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ଠାରେ ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କର ନାମ ଥିଲ ୰ ବିନାୟକ ଚୌଧୁରୀ ଏବଂ ମାତାଙ୍କ ନାମ ସାରଆମଣି ଚୌଧୁରୀ । ତାଙ୍କର ପିତା ଜଣେ ଏସ୍.ଡ଼ି.ଓ ଥିବାରୁ ସେ ପିତାଙ୍କ ସହ ରାଜ୍ୟର ବହୁ ସ୍ଥାନ ଭ୍ରମଣ କରିଥିଲେ । ତାଙ୍କର ପରିବାରରେ ଅନେକ କଳାକାର ଥିଲେ ଏବଂ ଏହି ସହଜାତ କଳାପ୍ରୀତି ତାଙ୍କୁ ରଙ୍ଗମଞ୍ଚକୁ ଟାଣି ନେଇଥିଲ । ୧୯୫୦ ମସିହାରେ ସେ ହଷ୍ଟେଲ୍‌ରେ ରହି ରେଭେନ୍‌ସା ବାଳିକା ବିଦ୍ୟାଳୟରେ ପଢ଼ୁଥିବାବେଳେ ଅନ୍ନପୂର୍ଣ୍ଣା ବି'ଗ୍ରୁପ୍‌ରେ ଅଭିନୟ କରିବା ନିମନ୍ତେ ଯୋଗଦାନ କରିଥିଲେ । ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କ ରଚିତ ନାଟକ 'ଘର ସଂସାର'ରେ ମୁଖ୍ୟ ନାରୀ ଚରିତ୍ରରେ ବାସ୍ତବ ହୃଦୟସ୍ପର୍ଶୀ ଅଭିନୟ କରି ସେ ତାଙ୍କର କଳାକାର ଜୀବନ ଆରମ୍ଭ କରିଥିଲେ ମଧ୍ୟ ସେହି ପ୍ରଥମ ଅଭିନୟ ତାଙ୍କ ଅଭିନୟ ଜୀବନର ଏକ ଦୃଢ଼ ମାଇଲ୍ ଖମ୍ବ ଭାବେ ସ୍ୱୀକୃତ । 'ଅମଡ଼ାବାଟ' ନାଟକରେ ତାଙ୍କର ଅଭିନୟରେ ପ୍ରଭାବିତ ହୋଇ ୰ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କୁ ବିଷୁବମିଳନ ଅବସରରେ ପୁରସ୍କୃତ କରିଥିଲେ ଶ୍ରେଷ୍ଠ ଅଭିନେତ୍ରୀ ଭାବେ । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅନେକ ନାଟକରେ ପ୍ରାଣବନ୍ତ ଅଭିନୟ କରି ଅଜସ୍ର ପ୍ରଶଂସା ଲାଭ କରିବା ପରେ, ଶ୍ରୀମତୀ ଲୀଳା ଦୁଲାଲୀ ଚଳଚ୍ଚିତ୍ର ଜଗତରେ ପାଦ ଦେଲେ ୧୯୫୬ରେ ଗୌର ଘୋଷଙ୍କ ପ୍ରଯୋଜିତ ଚଳଚ୍ଚିତ୍ର 'ଭାଇଭାଇ'ରେ ପାର୍ଶ୍ୱନାୟିକା ଭାବେ ଅଭିନୟ କରି । ପରେ ସେ ଓଡ଼ିଆ ଚଳଚ୍ଚିତ୍ର 'ମାଣିକଯୋଡ଼ି', 'ସାଧନା', 'ପୂଜା', ଗୌରୀ', 'ନବଜନ୍ମ' ଆଦିରେ ଅଭିନୟ କରିବା ସଙ୍ଗେ ସଙ୍ଗେ ୧୯୬୧ରେ 'ନୂଆବୋଉ' ଚଳଚ୍ଚିତ୍ରରେ ଅଭିନୟ କରି ଭାରତର ରାଷ୍ଟ୍ରପତିଙ୍କ ନିକଟରୁ ପୁରସ୍କାର ଲାଭ କରିଥିଲେ ।

ବାଲ୍ୟକାଳରୁ ଚଳଚ୍ଚିତ୍ରରେ ଅଭିନୟ କରିବାର ସ୍ୱପ୍ନ ନେଇ, ନିଜର ଅଦମ୍ୟ ମନୋବଳ, ନିଷ୍ଠା ଓ ସାଧନା ବଳରେ ସେଇ ସମ୍ଭାବନାକୁ ସତ୍ୟରେ ପରିଣତ କରିଥିବା ଏହି ଶିଳ୍ପୀଙ୍କର ସାଧନାମୟ ଜୀବନକୁ ସ୍ୱୀକୃତି ଦେଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୧୯୯୧-୯୨ ବର୍ଷରେ ତାଙ୍କୁ ଉପାୟନ ପ୍ରଦାନ କରି ସମ୍ମାନିତ କରିଅଛନ୍ତି । ସଂପ୍ରତି ୧୯୭୦ ମସିହାଠାରୁ ଶ୍ରୀମତୀ ଲୀଳାଦୁଲାଲୀ ଭାରତ ସରକାରଙ୍କର ସଙ୍ଗୀତ ନାଟକ ଏକାଡେମୀର ଭୁବନେଶ୍ୱର ଶାଖାରେ ଅବସ୍ଥାପିତା ।

●



## ସ୍ୱର୍ଗତ ଗଣେଶ୍ୱର ରଥ

ପୁରୀ

ଜନ୍ମ—୧୯୦୯, ଫେବୃୟାରୀ, ୫

ଓଡ଼ିଆ ରଙ୍ଗମଞ୍ଚର ଜଣେ ସ୍ୱନାମଧନ୍ୟ ବର୍ଷୀୟାନ୍ କଳାକାର ଭାବରେ ସୁପରିଚିତ ୰ ଶ୍ରୀ ଗଣେଶ୍ୱର ରଥ ୧୯୦୯ ମସିହା ଫେବୃୟାରୀ ମାସ ୫ ତାରିଖରେ ପୁରୀଠାରେ ଜନ୍ମଗ୍ରହଣ କରିଥିଲେ । ପିଲା ଦିନରୁ ଯାତ୍ରା ଦେଖିବା ତାଙ୍କର ଏକ ନିଶା ଥିଲା । ଭର୍ଣ୍ଣାକୁଲର ଶ୍ରେଣୀରୁ ପାଠ ଛାଡ଼ି ପୁରୀର ସଂସ୍କୃତ ବିଦ୍ୟାପୀଠରେ ଅଧ୍ୟୟନ କରୁଥିବା ସମୟରେ ସେ ଗୋସ୍ୱାମୀ ୰ ମୋହନ ସୁନ୍ଦର ଦେବଙ୍କ ରାସଲୀଳା ଦଳରେ ଯୋଗଦାନ କରି ତାଙ୍କର ଅଭିନୟ ଜୀବନ ଆରମ୍ଭ କରିଥିଲେ । ଜଣେ ହାସ୍ୟ ଅଭିନେତା ଭାବରେ ରାସଦଳରେ ତାଙ୍କର କୃତି ଓ କରଣି ଦର୍ଶକଙ୍କୁ ବେଶ୍ ଆକୃଷ୍ଟ କରି ପାରିଥିଲା । ଏହି ସମୟରେ ଗୋସ୍ୱାମୀଙ୍କ ପ୍ରଯୋଜିତ 'ସୀତାବିବାହ' ଓଡ଼ିଆ ଚଳଚ୍ଚିତ୍ରରେ ଏକ ବିଦୂଷକ ଭୂମିକାରେ ଅଭିନୟ କରି ସେ ବହୁ ପ୍ରଶଂସିତ ହୋଇଥିଲେ ।

ପରବର୍ତ୍ତୀ ସମୟରେ ଏହି ରାସ ଦଳର ବିଲୟ ଘଟିବା ପରେ ସେ ଗଞ୍ଜାମ ଜିଲ୍ଲାର ବହୁ ଗଣନାଟ୍ୟ ଦଳରେ ଯୋଗଦାନ କରିଥିଲେ ମଧ୍ୟ କେଉଁଠି ଅଧିକ ଦିନ ରହିପାରି ନଥିଲେ । ଶେଷରେ ଅନ୍ନପୂର୍ଣ୍ଣା ଏ' ଗ୍ରୁପ୍‌ରେ ଯୋଗଦାନ କରି ତହିଁରେ ମଞ୍ଚସ୍ଥ ବହୁ ନାଟକରେ ଅଂଶ ଗ୍ରହଣ କରି ନିଜକୁ ଜଣେ ଅସାମାନ୍ୟ ମଞ୍ଚଶିଳ୍ପୀରୂପେ ପ୍ରତିଷ୍ଠିତ କରି ପାରିଥିଲେ । ସେ ଅଭିନୟ କରିଥିବା 'ଭକ୍ତର ଭଗବାନ' ନାଟକରେ ସୁଦାମା, 'ଜୟଦେବ' ରେ କାପାଳିକ 'ଶକ୍ତଧର' ରେ ଶକ୍ତଧର, 'ହରିଶ୍ଚନ୍ଦ୍ର'ରେ ବିଶ୍ୱାମିତ୍ର, ଲକ୍ଷ୍ୟଭେଦ ରେ ଆଦିତ୍ୟସେନ, ବିଲ୍ୱମଙ୍ଗଳରେ ବଣିକ, କଳାପାହାଡ଼ରେ ମୁକୁନ୍ଦଦେବ କୋଣାର୍କରେ ନରସିଂହ ଦେବ, ବକ୍‌ସି ଜଗବନ୍ଧୁରେ ମୁକୁନ୍ଦଦେବ, ମୀରକାଶିମ୍ ଆଦି ତାଙ୍କ ଅଭିନୟ ପ୍ରତିଭାର ଏକ ଏକ ଜ୍ୱଳନ୍ତ ନିଦର୍ଶନ । ଏତଦ୍‌ବ୍ୟତୀତ ନାଟକ ଆଲିବାବା, ଜୟମାଳି ପି. ଡବ୍ଲ୍ୟୁ. ଡ଼ି, କଂସା କବାଟ, ତରଣୀସେନ, ସୀତା ବିବାହ, ବାଲ୍ୟଲୀଳା, କଂସ ଓ ମଥୁରା ମଙ୍ଗଳ ଆଦି ନାଟକରେ ବିଭିନ୍ନ ଭୂମିକାରେ ଅଂଶ ଗ୍ରହଣ କରି ସେ ବହୁ ପ୍ରଶଂସିତ ।

ଓଡ଼ିଆ କଥାଚିତ୍ର ମମତା ରେ ଯେ ତାଙ୍କର ବ୍ୟଙ୍ଗ ବକ୍ର ପ୍ରଭାବ ଅଭିନୟ ଦେଖିଛୁ, ସେଥିରୁ ମୂଲ୍ୟାୟନ କରିହୁଏ ସେ ପ୍ରତିଭାଙ୍କର । ଦୀର୍ଘ ପଞ୍ଚାବନ ବର୍ଷରୁ ଊର୍ଦ୍ଧ୍ୱ ସମସ୍ତ ଅଭିନୟ ଜଗତରେ ରହି ସେ ଆଜି ଓଡ଼ିଶା ନାଟ୍ୟ ଇତିହାସର ସ୍ମୃତି ଓ ଗୌରବ ।

ଓଡ଼ିଶାର ନାଟ୍ୟ ଆନ୍ଦୋଳନ ପ୍ରତି ତାଙ୍କର ବିଶେଷ ଯୋଗଦାନକୁ ଦୃଷ୍ଟିରେ ରଖି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ୬ ରଥଙ୍କୁ ଉପାଧି ପ୍ରଦାନକରି ସମ୍ମାନିତ କରିଅଛନ୍ତି । ସତେ ଯେପରି ଏହି ସମ୍ମାନ ପ୍ରାପ୍ତିକୁ ଅପେକ୍ଷା କରିଥିଲେ ସେ । ଉପାଧି ପ୍ରାପ୍ତିର ପରଦିନ ୨୮ ମାର୍ଚ୍ଚ ୧୯୯୨ ମସିହାରେ ସେ ତୃପ୍ତ ପ୍ରାଣରେ ଏ ମରଧାମ ତ୍ୟାଗ କଲେ । ତାଙ୍କର ଅମର ଆତ୍ମା ଆଗାମୀ କଳାକାରମାନଙ୍କୁ ପ୍ରେରଣା ଯୋଗାଇ ଚାଲିବ ଏହା ନିଃସନ୍ଦେହ ।

●



# ଶ୍ରୀ ରାମଚନ୍ଦ୍ର ଦୀକ୍ଷିତ୍

## ହରଚଣ୍ଡୀ ସାହି, ପୁରୀ

### ଜନ୍ମ—୧୯୧୨, ଜାନୁୟାରୀ ୭

ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଶ୍ରୀରାମଲୀଳା ଉଆଣ କ୍ରମରେ ଅନୁଷ୍ଠିତ ପାରମ୍ପରିକ ସାହି ଯାତ୍ରାର ଜଣେ କୃତବିଦ୍ୟ ନାଗାନୃତ୍ୟ ଶିଳ୍ପୀ ଭାବରେ ସୁପରିଚିତ ଶ୍ରୀ ରାମଚନ୍ଦ୍ର ଦୀକ୍ଷିତ ୧୯୧୨ ମସିହା ଜାନୁୟାରୀ ମାସ ୭ ତାରିଖରେ ପୁରୀ ସହରର ହରଚଣ୍ଡୀ ସାହିରେ ଶ୍ରୀମହାପ୍ରଭୁଙ୍କ ସେବାୟତ କୁଳରେ କଣ୍ଢୁରୀ ଚରଣ ଦୀକ୍ଷିତଙ୍କ ପୁତ୍ର ରୂପେ ଭୂମିଷ୍ଠ ହୋଇଥିଲେ ।

ବାଲ୍ୟଶିକ୍ଷା ଚାଟଶାଳୀ ଠାରୁ ହିଁ ଶେଷକରି ଶ୍ରୀ ଦୀକ୍ଷିତ ଶ୍ରୀଜୀଉଙ୍କର ସେବକ ଭାବେ ନିଜକୁ ପ୍ରସ୍ତୁତ କରିବା କ୍ରମରେ ସ୍ଥାନୀୟ ଧ୍ୱଜାଗଡ଼ ଜାଗାଘରେ ଯୋଗଦାନ କରି ଶରୀର ଚର୍ଚ୍ଚା କରିବା ସହ ବୀରବାଦ୍ୟର ତାଳେତାଳେ ତାଣ୍ଡବ ନୃତ୍ୟଶୈଳୀ ଶିକ୍ଷା କରିଥିଲେ । ନାଗାନୃତ୍ୟ ଭାବେ ପରିଚିତ ଏହି ସାହିନୃତ୍ୟକୁ ସାହିଯାତ୍ରା, ଚନ୍ଦନଯାତ୍ରା ଆଦି ବିଭିନ୍ନ ପର୍ବୁଆରର ମେଳାରେ, ପ୍ରଦର୍ଶନ କରି ଶ୍ରୀ ଦୀକ୍ଷିତ ବହୁ ପ୍ରଶଂସା ଲାଭ କରି-ଅଛନ୍ତି । ହରଚଣ୍ଡୀ ସାହିର ପର୍ଣ୍ଣୁରାମ ପ୍ରସ୍ତାବନା କାଳରେ ଅନୁଷ୍ଠିତ ସାହି ଯାତ୍ରାରେ ବାଲିସାହି ହଉଁସ ଦାଣ୍ଡ ରୋଷଣୀ ଆଲୋକରେ ଝଲସି ଉଠିଲାବେଳେ ଶିଳ୍ପୀଙ୍କର ନାଗା ମୁକୁଟ ସହ ପଲସି ଆସିବାର ପାହୁଲ ବାଦୀ ସାହିକୁ ଚମତ୍କୃତ କରି ତୋଳିଛି । ଏକା-ଧାରରେ ସେ ଜଣେ ଅଭିନେତା, ଲୋକନୃତ୍ୟ ଶିଳ୍ପୀ ଏବଂ ମଲ୍ଲଯୁଦ୍ଧ ବିଶାରଦ ଭାବରେ ପ୍ରତିଷ୍ଠିତ । ଶ୍ରୀକ୍ଷେତ୍ରର ଜାଗାଘରେ ଅଗଣିତ ଯୁବ ପ୍ରତିଭାଙ୍କୁ ଅନେକ ସମର କ୍ରୀଡ଼ା-କୌଶଳ ଓ ଶାରୀରିକ ତାଲିମ କାର୍ଯ୍ୟକ୍ରମ ଶିକ୍ଷା ପ୍ରଦାନ କରି ଓସ୍ତାଦ୍ ରାମିନୀ ଦୀକ୍ଷିତ୍ ବେଶ୍ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତାଙ୍କ କ୍ରୀଡ଼ାଙ୍ଗନରୁ ତାଲିମ ଗ୍ରହଣ କରି ଆଜି ବହୁ ତରୁଣ ପ୍ରତିଭା ମାଟିକୁସ୍ତି ଓ ସାହି ଯାତ୍ରାର ନାଗା ଓ ମେଢ଼ନୃତ୍ୟ ପ୍ରଦର୍ଶନ କ୍ଷେତ୍ରରେ କ୍ରମାଗତ ଭାବେ ପ୍ରଶଂସାଭାଜନ ହୋଇ ଆସୁଛନ୍ତି ।

ଓଡ଼ିଶାର ଅବକ୍ଷୟମାଣ ସାହିଯାତ୍ରାକୁ ବଞ୍ଚାଇ ରଖିବାରେ ତାଙ୍କର ବିଶେଷ ଭୂମିକାକୁ ସ୍ୱୀକୃତି ଦେଇ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ୧୯୯୧-୯୨ ବର୍ଷରେ ଏହି ବିଶେଷ ପ୍ରତିଭାସମ୍ପନ୍ନ ଶିଳ୍ପୀଙ୍କୁ ଉପାସ୍ୱନ ପ୍ରଦାନ କରି ସମ୍ମାନିତ କରିଅଛନ୍ତି ।

●



## ଶ୍ରୀ ରଘୁନାଥ ନନ୍ଦ

**ଦାଣ୍ଡିକିଆ, ପୁରୀ**

**ଜନ୍ମ—୧୯୨୦, ଅଗଷ୍ଟ ୧୨**

ଓଡ଼ିଶାର ଜଣେ ସୁନାମଧନ୍ୟ କଣ୍ଠଶିଳ୍ପୀ ଭାବରେ ସୁପରିଚିତ ଶ୍ରୀ ରଘୁନାଥ ନନ୍ଦ ୧୯୨୦ ମସିହା ଅଗଷ୍ଟ ମାସ ୧୨ ତାରିଖରେ ପୁରୀ ଜିଲ୍ଲାର ଝଣ୍ଡିଗିରି ନିକଟସ୍ଥ ଦାଣ୍ଡିକିଆ ଗ୍ରାମରେ ସ୍ୱ. ଗୋବିନ୍ଦ ଚନ୍ଦ୍ର ନନ୍ଦଙ୍କ ପୁତ୍ର ରୂପେ ଜନ୍ମ ଗ୍ରହଣ କରିଥିଲେ । ମାତ୍ର ସାତବର୍ଷ ବୟସରୁ ସେ ଗୀତ ବୋଲିବା ଆରମ୍ଭ କରିଥିଲେ । ସଙ୍ଗୀତ ଜୀବନର ପ୍ରାରମ୍ଭିକ ଶିକ୍ଷା ସେ ନିଜ ପିତାଙ୍କ ନିକଟରୁ ଶିକ୍ଷା କରିଥିଲେ । ପରେ ସେ ଗୋସ୍ୱାମୀ ସ୍ୱ. ମୋହନ ସୁନ୍ଦର ଦେବଙ୍କ ରାସ ଦଳରେ ଯୋଗଦାନ କରି ତହିଁରେ ଲଳିତା ଭୂମିକାରେ ଅଭିନୟ କରି ବହୁ ଉପଢ଼ୌକନ ଏବଂ ପ୍ରଶଂସା ଲାଭ କରିଥିଲେ । ବାଲ୍ୟ ଜୀବନରୁ ଓଡ଼ିଶୀ, ଛାନ୍ଦ ଆଦି ଶିକ୍ଷା କରି ପୁରୀ ସଙ୍ଗୀତ ସମ୍ମିଳନୀରେ ବହୁବାର ପୁରସ୍କୃତ ହୋଇଥିଲେ । ପରବର୍ତ୍ତୀ ସମୟରେ ସେ ସ୍ୱ. ଗୋବିନ୍ଦ ସୂରଦେଓଙ୍କ ରାସ ଦଳରେ ମଧ୍ୟ ଯୋଗଦାନ କରିଥିଲେ ।

ଏକ ସ୍ଥାୟୀ ରଙ୍ଗମଞ୍ଚ ସ୍ଥାପନର ଲକ୍ଷ୍ୟ ନେଇ ସେ ଜରିପଡ଼ାର ତତ୍କାଳୀନ ଜମିଦାର ସ୍ୱ. ରଘୁନାଥ ରାୟଙ୍କ ସହାୟତାରେ ଜରିପଡ଼ାଠାରେ ଏକ ରଙ୍ଗମଞ୍ଚ ପ୍ରତିଷ୍ଠା କରାଇ ତହିଁରେ ବହୁ ନାଟକ ମଞ୍ଚସ୍ଥ କରାଇଥିଲେ । ପରବର୍ତ୍ତୀ ସମୟରେ ସେ କଟକର କଳାବିକାଶ କେନ୍ଦ୍ରରେ ଯୋଗଦାନ କରି ସେଥିରେ ପ୍ରାୟ ୧୫ବର୍ଷ ଶିକ୍ଷକତା କରିଥିଲେ । ଏହି ସମୟ ମଧ୍ୟରେ ସେ ଓଡ଼ିଶୀ ଏବଂ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତରେ ଉପାଧି ପ୍ରାପ୍ତ ହୋଇଥିଲେ । କଳାବିକାଶ କେନ୍ଦ୍ରରେ କାର୍ଯ୍ୟରତ ଥିବା ସମୟରେ ବିଭିନ୍ନ ସାଂସ୍କୃତିକ ଦଳର ନେତୃତ୍ୱ ନେଇ ବମ୍ବେ, କଲିକତା, ଆସାମ, ରାଜସ୍ଥାନ ଆଦି ରାଜ୍ୟରେ ନୃତ୍ୟ ସଙ୍ଗୀତ ପରିବେଷଣ କରି ସେ ବହୁ ପ୍ରଶଂସା ଲାଭ କରିଅଛନ୍ତି ।

ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତ କଣ୍ଠଶିଳ୍ପୀ ଭାବେ ସେ ଦୀର୍ଘ ସମୟ ଧରି ଓଡ଼ିଶୀ, ଚମ୍ପୂ, ଭଜନ, ଛାନ୍ଦ ଆଦି ନିଜର ସ୍ୱଭାବସୁଲଭ ଲଳିତ କଣ୍ଠରେ ଗାନ

କରି ଓଡ଼ିଶାର ଶ୍ରୋତାମାନଙ୍କ ଶ୍ରୁତିପଟରେ ଅମର ହୋଇ ରହିଛନ୍ତି । ଦୂରଦର୍ଶନରେ ସାମୟିକ ଭାବେ ସଙ୍ଗୀତ ପରିବେଷଣ କରିବାରେ ସେ ଅନ୍ୟତମ ଶ୍ରେଷ୍ଠ ଗାୟକ ।

ସଙ୍ଗୀତ ଜଗତ ପ୍ରତି ତାଙ୍କର ଏତାଦୃଶ ଅବଦାନ ହେତୁ କଟକର 'କଳିଙ୍ଗ ଭାରତୀ' ଅନୁଷ୍ଠାନ ତରଫରୁ ତାଙ୍କୁ ସମ୍ମାନିତ କରାଯିବା ସହ ଚଳିତ ବର୍ଷ ୧୯୯୧-୯୨ ରେ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ପକ୍ଷରୁ ଶ୍ରୀ ନନ୍ଦଙ୍କୁ ଉପଢୌକନ ପ୍ରଦାନ କରାଯାଇ ସମ୍ମାନିତ କରାଯାଇଛି ।